# ଅନାମ

( ଉପନ୍ୟାସ )

**ଡକ୍ଟର ଗୋପୀନାଥ ମହାନ୍ତି** ଏମ୍. ଏ., ଡି.ଲିଟ୍ (ଏଚ୍. ସି.)

( ପଦ୍ମଭୂଷଣ, ଭାରତୀୟ ପ୍ରଥମ ସାହିତ୍ୟ ଏକାଡ଼େମୀ
ପୁରସ୍କାର ପ୍ରାପ୍ତ, ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ )



**ଅନାମ**—ଲେଖକ : ଡକ୍ଟର ଗୋପୀନାଥ ମହାନ୍ତି, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨, ପ୍ରଥମ ପ୍ରକାଶ : ୧୯୯୩, ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ, ମୁଦ୍ରଣ : ଲିପିକାର, ଝାଞ୍ଜିରିମଙ୍ଗଳା, କଟକ-୯ ।



ANAM—Author Dr. Gopinath Mohanty, Publisher : Sahadev Pradhan, Friends' Publishers, Binodbehari, Cuttack-753002. Orissa [India], First Edition : 1993, Cover-Design : Asit Mukherjee, Printed at : Lipikar, Jhanjirimangala, Cuttack-9

Second Edition : 1998

PRICE : Rs. 45.

ଅନ୍ଧାରି, ଖାଲି ମୁଣ୍ଡା ମୁଣ୍ଡା, ମୈଞ୍ଚା ମୈଞ୍ଚା ଅନ୍ଧାର । ପାଟି ବନ୍ଦ, କିଏ ଯେପରି ପାଟି ଚପିଦେଉଛି । ସଂସାର ପ୍ରତି, ଜୀବନ ପ୍ରତି ବିରକ୍ତି, ତଥାପି ପ୍ରାଣେ ଭୟ, ଅଜଣା ଭୟ, ସେହି ଭୟ ହିଁ ପ୍ରାଣର ସ୍ପନ୍ଦନ, ତା ତଳେ ରହିଛି ଆଶା, ସକାଳ ପାହିବ, ଆସିବ ଅଭ୍ୟୁଦୟ, ଅନ୍ୟସ୍ଥାନ, ଅନ୍ୟ ଜୀବନ । ଠାକୁରମାର ବାଡ଼ି ଠୁକେଇ ଠୁକେଇ ଚଲାବାଟରେ ଗଡ଼ପଡ଼ିଲେ ରାଜରାଜ ଦେବ, ଅଜଏ ଗଡ଼ ପଛରେ ପଡ଼ିରହିଲା ।

ଅବଶ୍ୟ କେହି ଜାଣନ୍ତିନାହିଁ ତା ନାଁ ଅଜଏ ଗଡ଼, ସେମାନେ ଜାଣନ୍ତି ସେ ପାହାଡ଼ 'କଟିଂଯୋରୁ', ଆଗେ ବି ଜାଣିଥିଲେ, ଏବେ ବି ସେଇ ନାଁ । ଯେମିତି ଭୁବନେଶ୍ୱର । ଯେମିତି ଦିଲ୍ଲୀ । ସେଠି କେଉଁଠି କେତେବେଳେ କେଉଁ ରାଜବଂଶ ରାଜୁତି କଲାବେଳେ କେଉଁପଟେ କେଉଁଠି କଅଣ କରିଥିଲା, ସେଠି କିଏ ଥିଲା କିଏ ମନେରଖିଛି ? ସେମାନେ ନିଜ ଧନ୍ଦାରେ ମାତିବା ଲୋକ, ବେଶି ଭାଗ ଚାଷୀ, ଯାହାର ନିଜ ଜମି, କିଏ ପରର ଭଡ଼େ, ଆଉ କିଏ ଅନ୍ୟବୃତ୍ତି କରେ,—ଅନ୍ୟ-ମାନଙ୍କର କୌଣସି କାମରେ ଲାଗିବାଭଳି ଜିନିଷ ଗଢ଼ିବା କି ମୂଲ ଖଟିବା, ତା ବଦଳରେ ପରିବାର ପୋଷିବାକୁ ଜିନିଷ କି ସମ୍ବଳ ଯୋଗାଡ଼ କରିବା । ସଂସାରରେ ଜନ୍ମହୋଇ ନିଜକୁ ଓ କୁଟୁମ୍ବକୁ ପୋଷିବା ପାଇଁ ଜୀବନଯାକ ସେମାନେ ନାଳ-ଖାଲ, ମନ ସେଇଠି, ତା ବାହାରକୁ ମନଟା କେତେବେଳେ ଚହଲିଗଲେ ବି ପୁଣି ସେଠିକି ଲେଉଟିଆସେ । ଏମିତି ପୁରୁଷକୁ ପୁରୁଷ ।

କେହି ଜାଣନ୍ତି ନାହିଁ ତାଙ୍କ ନାଁ ଥିଲା ରାଜରାଜ ଦେବ । ଖାଲି ଜାଣନ୍ତି କେଉଁ ରାଜା ଥିଲେ । ଏମିତି କେତେ ତ ରଜା, ଗୋଟାଏ ଗଲେ ଆଉ ଗୋଟାଏ । ଯାହା ନାଁ ମନେରଖିଥାଉ ସେହି ଲୋକ, ଯେ ରାଜାଠୁଁ ତମ୍ବାପଟିଆ ସନନ୍ଦ ସହିତ କେଉଁ ଜମିଖଣ୍ଡିକ ପାଇଥିଲା, ନାଁ ମନେରଖନ୍ତି ପୁରୋହିତ, ଯେ ରଜାଙ୍କ ପିତୃପିତାମହଙ୍କ ନାଁ ଡାକ ଡାକ ପିଣ୍ଡ ସଜାନ୍ତି, ଚାଷୀ କାରିଗର ମୂଲିଆ ମଲାମୁଣ୍ଡିଆଙ୍କର ତହିଁରେ କିଛି ସମ୍ବନ୍ଧ ନଥାଏ । କେହି ଜାଣନ୍ତି, ସେମାନେ ରଜା ନୁହନ୍ତି, ରଜା ହେବେ ନାହିଁ ।

ପୁରୁଣା କିମ୍ବଦନ୍ତୀ କି ଇତିହାସ ଲୋକତୁଣ୍ଡରେ କିଛି ରହିଯାଇଛି ସତ; କିନ୍ତୁ ତାକୁ ଭାବି ଭବିଷ୍ୟତ ପାଇଁ ସେମାନେ ସ୍ୱପ୍ନ ଦେଖନ୍ତି ନାହିଁ । ଶୁଣିଛନ୍ତି, ମାହାପୁରୁ କନ୍ଧକୁ ହିଁ ରଜା କଲା, ରଜା-କନ୍ଧର ସାନଭାଇ; କିନ୍ତୁ ବଡ଼ଭାଇ ଘୋଡ଼ାରେ ବସିବ ବୋଲି ଗୁଟ ଭାଙ୍ଗିବାକୁ ଗଲା, ସାନଭାଇ ଘୋଡ଼ା ପିଠିରେ ଚଢ଼ିବସି ଚାଲିଗଲା, ସେହିଦିନୁ ସେ ହେଲା ରଜା । ରଜା ତାଙ୍କ ଉପରେ ରାଜୁତି କରିବ, ତାଙ୍କଠୁଁ ବେଢ଼

ଖଟଣି କି ଧନ ଆଦାୟ କରନେବ—ଏଥିପାଇଁ ନ୍ୟାୟଗତ ଅଧିକାର ତା'ର ନାହିଁ, ସେମାନେ ଭାବନ୍ତି; କିନ୍ତୁ ମାଗଣ ହେଲେ ଦେବାକୁ ପଡ଼ିବ, ନଦେଇ ଚାରା ନାହିଁ, ଏପରି ଭାବିବା ବି ଅଭ୍ୟାସ ହୋଇଯାଇଛି । ରାଜୁତିକୁ ଆପତ୍ତି କରି ବେଣ୍ଟା ମୂଳେଇବା ସେମାନେ ଲୋଡ଼ନ୍ତି ନାହିଁ । ଖାଲି, ବେଳେବେଳେ ଗୋଟାଏ ରଜାକୁ ପଟ ଦେଇ କେତେବେଳେ ଆଉ ଗୋଟାଏ ରଜା ସଙ୍ଗରେ ସେମାନେ ଯୁଝିଛନ୍ତି । ଆଉ, ସେମାନେ ବୁଝନ୍ତି, ବଳ ଅଛି ବୋଲି ରଜା, ବଳ ଥିବାଯାକେ ରଜା, ବଳ ଗଲେ ଗଲା ।

ଚାଷୀ ବଡ଼ଭାଇଙ୍କ ଶତାକାଟି ଗାଦିମାଡ଼ି ବସିବା କାହାଣୀ ଛଡ଼ା ଆଉ ଗୋଟିଏ କାହାଣୀ ବି କହି ମନେପକାନ୍ତି । ସେ ଏଇ ଅଞ୍ଚଳଟି ରାଜ୍ୟର ପୂର୍ବ ଇତିହାସ । ରାଜ୍ୟ କହିଲେ ସେମାନେ ଭାବନ୍ତି ନାହିଁ ବିଶାଳ ଭାରତବର୍ଷ, କି ଓଡ଼ିଶା, କି କେଉଁ ଜିଲ୍ଲା କି ସବ୍‌ଡିଭିଜନ କି ଥାନା । ଖାଲି ଆକାଶଫୁଟା ମହାବଳୀ ପର୍ବତମାନଙ୍କ ଘେର ଭିତରେ ଅରଏ ଆନ, ବୁଢ଼ାଏ ତା ସୀମା ସରହଦ ପିଲାମାନଙ୍କୁ ଦେଖାଇ ଦିଅନ୍ତି । ସେ ଅରଣ୍ୟ ଭିତରେ ସାନବଡ଼ ହୋଇ କେତେ ପାହାଡ଼, ଡିପ, ଡାଲୁ, ଝୋଲ, ଖାଲ, ତାହାର ଭିତରେ ସାନ ସାନ ଗାଁ, ସେଠି ସେମାନେ ରହନ୍ତି, ଉତ୍ତରପଟେ ସବୁଠୁ ଉଚ୍ଚ ହୋଇ ମୁଣ୍ଡ ଟେକିଛି 'କଟିଂସୋରୁ' ପର୍ବତ, ଅଗନାଗ୍ନି ବନସ୍ତ ।

ସେହି ପୂର୍ବ ଇତିହାସ କହେ—ସେ କେଉଁ ହଜିଲା ଅମଳ କଥା । ତା ଆଗରୁ କିଏ ରଜା ଥିଲେ ଜଣା ନାହିଁ, ସେତେବେଳକୁ ଯେ ଥିଲା ସେ ଅତ୍ୟାଚାରୀ, ବିଶେଷରେ ତା କର୍ମଚାରୀମାନେ, ଖାଲି ଅନ୍ୟାୟ ଲୁଣ୍ଠନରେ ମାତିଥାନ୍ତି, ମଣିଷଙ୍କୁ ଛେଳି କରିଥାନ୍ତି, ଦୈବଯୋଗକୁ ବାଘକୁ ଫାଗ ପରି କୁଆଡ଼ୁ ପଦାକୁ ଆସିଲେ ତାଙ୍କଠୁଁ ବାଟମାରଣା କରିବାଭଳି ଜୁରିଆ ଦଳ, ତାଙ୍କ ବଳବହପ ଧନ ଉଜାଡ଼ିଦେଲେ, ପୁଣି କୁଆଡ଼େ ଚାଲିଗଲେ, ରଜା ହୀନବଳ ହେଲା, ରଇତ ଅମାନିଆ ହେଲେ, ରଜା ରାଜୁତି ଗୋଟେଇ ପୋଟେଇ ରାଜ୍ୟ ଛାଡ଼ି ପଳେଇଲା ।

ସେତିକିବେଳେ ରାଜ୍ୟଯାକର ମଣିଷ ରୁଣ୍ଡ ହୋଇ ବିଚାରିଲେ,—ରାଜ୍ୟକୁ କିଏ ଚଳେଇବ ? କନ୍ଧ ହିଁ ତହିଁରୁ ବାରପଣ, ଆଉ ଚାରିପଣ ନାନା ଜାତି ମିଶାମିଶି, କନ୍ଧ ନହେଲେ ବି କନ୍ଧପରି ଚଳଣି । ଗାଁ ଗାଁକେ ଥାନ୍ତି ଗାଁ ମୁଣ୍ଡିଆଳ, ସମସ୍ତେ କନ୍ଧ, ଗାଁଯାକର ମୁରବି, ସେମାନେ ବାଛିଦେଲେ ଆପଣା ଭିତରୁ ଆଠ ଜଣଙ୍କୁ । ରାଜ୍ୟ ହେଲା ସବୁ ପ୍ରଜାଙ୍କର, ତାଙ୍କର ମୁରବି ଆଠଜଣ କନ୍ଧ ମୁଣ୍ଡିଆଳ । ସେମାନେ ସିଂହାସନରେ ବସାଇଲେ ନାଲିକନା ଗୁଡ଼ାଇ ଗୋଟିଏ ଗୋଲ ପଥରକୁ । କହିଲେ—"ପଥର ଯେମିତି ଠାକୁର ହୋଇ ପୂଜା ପାଏ, ଏ ପଥର ସେମିତି ରଜା ହୋଇ ପୂଜାପାଇବ । ଦେବତା ଯେମିତି ଲୋଡ଼େ ଯେ ସେବାକାରୀ ସବୁ ଭକ୍ତଙ୍କର ସବୁ ଭଲ ହେଉ ଏ ରଜା-ପଥର ଯେମିତି ଲୋଡ଼ିବ ସବୁ ପ୍ରଜାଙ୍କର ମଙ୍ଗଳ ହେଉ, ସମସ୍ତେ

ସତରେ ନ୍ୟାୟରେ ଚଳନ୍ତୁ, କନ୍ଧସାହରେ ପରସ୍ପରକୁ ସାହାଯ୍ୟ କରି ବାଣ୍ଟିକୁଣ୍ଟି ଖାଇ ଚଳନ୍ତୁ, ଖଟି ଖାଉନ୍ତୁ । କେହି କାହାରିକି କଷ୍ଟ ଦେଉନ, ଅନ୍ୟାୟ ନକରୁ, ପରର ସ୍ତ୍ରୀକୁ, ପରର ଜିନିଷକୁ ଆଖି ନପକାଉ, ଅସତ ନହେଉ, ଅନ୍ୟାୟ ନକରୁ । ରଜାର ଯେମିତି ପାଇକ ଥା'ନ୍ତି ଏ ପାଟ-ପଥର ପାଖେ ଥାଉ ଏ ପାଟଖଣ୍ଡା, ରଜା ତରଫରୁ ସେବାକାଣ୍ଡ ପାଜ ମନ୍ତ୍ରୀ ପରି ହୋଇ କାମ କରିବେ ଏ ଆଠଜଣ ସାଉଁତା, ସେମାନେ ପଦବୀ ପାଇଲେ 'ମୁଣ୍ଡାମାଝି' ବୋଲି, ତହିଁରୁ ଜଣେ ମଲେ, ହଜିଲେ ଗାଁସାକର ମୁଣ୍ଡିଆଲମାନେ ବୁଣ୍ଡି ପୁଣି ଲୋକ ବାଛିଦେବେ ।''

ସୃଷ୍ଟିଧରି ସେମିତି ବିଚାର କନ୍ଧ-ରଇତ-ରଜୁଡି କାହିଁ କେତେ ବର୍ଷ । ପଥର-ରଜା କଥା କହନାହିଁ, ପାଟଖଣ୍ଡା କେବେ କାହା ଉପରକୁ ଉଠା ବି ହୋଇ-ନାହିଁ, ଦହେଁ ଖଟୁଲିରେ ଥାଇ ସିଂହାସନରେ ବସି ପୂଜା ପାଉଥାନ୍ତି । ଆଠଜଣ ମୁଣ୍ଡାମାଝି ସବୁ ଗାଁର ମୁଣ୍ଡିଆଲଙ୍କ ପରାମର୍ଶ ମାଗି ରାଜ୍ୟ ପାଳୁଥାନ୍ତି, କେବେ କିଛି ଅକଟେ ନାହିଁ ଅଟକିଯାଏ ନାହିଁ ।

ତା'ର କାରଣ ବୋଧହୁଏ ଆଉ କିଛି ନୁହେଁ, ପଦା ରାଇଜର ପାଠୁଆ ବୁଧିଆ ଲୋକେ ଅନୁମାନ କରୁଥିଲେ ସେଠି ସେପରି ଚଳୁଥିଲା ସେ କନ୍ଧଲୋକେ ନିରକ୍ଷର ଉଦାସିଆ ସରଳିଆ ଆଉ ଓଲୁ ବୋଲି । ଧନକୁ ଲୋଭ ନାହିଁ, କ୍ଷମତା ମୋହ କ'ଣ ଜାଣନ୍ତି ନାହିଁ, ସାଇତିବାକୁ ବୁଦ୍ଧି ନାହିଁ, ପେଟକୁ ଗଣ୍ଡିଏ ଖାଇଲେ ଚଳିଲା, ପଇସା ଚହ୍ନନ୍ତି ନାହିଁ, ଦାମୀ ଭୋଗବିଳାସର ସ୍ୱପ୍ନ ବି ଦେଖିନାହାନ୍ତି, "ମଣିଷ ନୁହନ୍ତି ସେ' ଗୋଡ଼ିଆ ପଶୁ ।'' ଖିଆ ଚଢ଼ିଥିଲେ କେହି କେହି ହୁଡ଼ାହୁଡ଼ି ପିଟାପିଟି ହୁଅନ୍ତି ନିଶ୍ଚୟ, ଥଣ୍ଡା ହେଲେ ପୁଣି ପୁରୁଣା ବନ୍ଧୁତା, ଛଳ ନାହିଁ କି ଅକସ ନାହିଁ । ପର ଅଧିକାର ଉପରେ ଆକ୍ରମଣ କରନ୍ତି ନାହିଁ । ମିଛ ଫନ୍ଦି "ଆସେ ନାହିଁ, ସେତେ ବୁଦ୍ଧି ନାହିଁ ।'' ଲେଖା ଆଇନ୍ ନାହିଁ ସତ; କିନ୍ତୁ କନ୍ଧସାହରେ ନ୍ୟାୟ କ'ଣ, ଅନ୍ୟାୟ କ'ଣ ସମସ୍ତେ ଜାଣନ୍ତି, ମାନି ଚଳନ୍ତି । ଗାଁ ଭଲମନ୍ଦ ସମସ୍ତେ ବସି ବିଚାର କରନ୍ତି, ରାଜ୍ୟ ଭଲମନ୍ଦ ଗାଁ ମୁଣ୍ଡିଆଲମାନେ ଏକାଠି ବସି ବିଚାର କରନ୍ତି, ସେହି ନିଷ୍ପତ୍ତି ଅନୁସାରେ ଆଠଜଣ ମୁଣ୍ଡାମାଝି ଲୋକଙ୍କୁ ଭେଳାଇ କାମ କରନ୍ତି । ତାଙ୍କର କିଛି ଆଉ ସରସା ବିଚାର ଥିଲେ ଗାଁ ମୁଣ୍ଡିଆଲମାନେ ଶୁଣିଲେ ରାଜିହୁଅନ୍ତି । ପଦା ରାଇଜର ଲୋକେ ଦେଖନ୍ତି ଆଉ ଭାବନ୍ତି—"ସବୁଠୁ ଆଶ୍ଚର୍ଯ୍ୟ ପ୍ରକାରେ ଓଲୁ ଗାଁ-ମୁଣ୍ଡିଆଲ ଆଉ ମୁଣ୍ଡାମାଝିମାନେ, ବେଶି ସେହି ମୁଣ୍ଡାମାଝିମାନେ—ଲୋକେ ସେମାନଙ୍କୁ ଏମିତି ମାନନ୍ତି ଯେ ସତେ ଅବା ସେମାନେ ତାରିଲେ ତାରିବେ ମାରିଲେ ମାରିବେ ଯାହାକୁ ଇଚ୍ଛା ତାକୁ, ଲୋକେ କହନ୍ତି 'ଏଇ ଆମର ରଜା, ଏଇ ଆମର ମୁଣ୍ଡାମାଝି', ଅଥଚ ଦେଖ ସେ ଲୋକଙ୍କୁ, ଦିନରାତି ବୁଲିବୁଲି ରାଜ୍ୟସାକ ଲୋକଙ୍କ ପାଇଁ ଗଧ ଖଟଣି ଖଟୁଥିବେ, ନିଜ ପାଇଁ କିଛି

ନାହିଁ, ଓଲଟି ସେମାନେ ରାଜ୍ୟ ଭିତରେ ସତେ ଯେମିତି ସମସ୍ତିଙ୍କଠୁଁ ଗରିବ, କାରଣ ଆଉ ସମସ୍ତିଙ୍କ ଖବର ବୁଝି ବୁଝି ତାଙ୍କର ନିଜ କଥି କେତେବେଳେ ପଡ଼ିଆ ପଡ଼େ, କେତେବେଳେ ଅଧେ ଅଧେ ତାସ ଉଜୁଡ଼ିଯାଏ । ଦୟା ପାଇ ଯାଚି ଯାଚି ଲୋକେ ମୁଠିଏ କି ମଣିଏ ଦେଲେ ନେବାକୁ ତାଙ୍କର କେତେ ଯେ ଆପତ୍ତି ! ଛି ଛି, କି ଘର କରିବେ ସେ କିଛି ! କି ରାଜ୍ୟ ଚଳେଇବେ !"

କୌଣସି ବଳୁଆ ରଜା ପକ୍ଷରେ ଆକ୍ରମଣ ଚଳାଇଦେଇ ସେ ରାଜ୍ୟ ଖଣ୍ଡି ଦଖଲ କରିବା ବୋଧହୁଏ କଷ୍ଟକର ହୋଇ ନଥାନ୍ତା, କେମିତି ଯେ କିଛି ନହେଲା କିଛି କାଳ ବିତିଗଲା, ଆଶ୍ଚର୍ଯ୍ୟ ଲାଗେ । ଏପରି ହୋଇପାରେ—ସେଠିକି ଦୁର୍ଗମ ବାଟ, ମଝିରେ ଛେକିଛନ୍ତି ପାହାଡ଼ ବନନ୍ତ ନଈ ନାଳ, ସେ ରାଜ୍ୟ ବି ସେଇଆ, ଦୂରରେ ରହି ଅମଲ କରିହେବ ନାହିଁ । ପଦା ଲୋକ କହନ୍ତି ସେମାନେ ବି ସେ ରାଜ୍ୟର କାହାଣୀ ଶୁଣିଛନ୍ତି, ବାହାର ଦେଶର ରଜାମାନେ ଜାଣି ଜାଣି ସେଠିକି ପଶୁନଥିଲେ, ମିଳିବ ତ ଯାହା ! ଖାଲି ପଥର, ଜଙ୍ଗଲ, ଧୂଆଁ ମାଣ୍ଡିଆ ଦାନ୍ତ । କିନ୍ତୁ ଗୋଟାଏ ଦେଶର ରଜା ସେ ରାଜ୍ୟ ଦଖଲ କଲେ ଅନ୍ୟ ଦେଶର ରଜା ଭାବିବ ଯେ ସେ ଜଣକ ରାଜଚକ୍ରବର୍ତ୍ତୀ ହେବାକୁ ମନ ବଳାଇଲାଣି, ସେଇଥିପାଇଁ ସେ ଓଲଟି ଆକ୍ରମଣ କରିବ ତାକୁ, ଫଳରେ ଯେ ବଣୁଆ ପ୍ରଜା ବଣର ଜୀବ ପାହାଡ଼ର ଧୂଆଁ ଆଉ ଜଡ଼ାକୁ ଆପଣା ଦଖଲରେ ଗଣିବା କରିବାକୁ ମନ ବଳାଇଥିଲା ସେ ଘାଣ୍ଟି ହେବ ମହା ଧ୍ୱଂସକାରୀ ଲଢ଼େଇରେ । ସେହି ନା ଜଣା-ନାହିଁ ଅନ୍ଧାରି କନ୍ଦରାଇଜ ବାହାରେ ଥା'ନ୍ତି ପରାକ୍ରମୀ ରାଜ୍ୟ ଓ ରାଜାମାନେ, ପରସ୍ପରଙ୍କ ବଳ କଷାକଷି ହୋଇ ପରସ୍ପରଙ୍କ ଉପରେ ମାନ ଯୁଦ୍ଧରୁ ନିବୃତ୍ତ ହୋଇ ରହନ୍ତି, ସମସ୍ତିଙ୍କୁ ବଳିଯିବା ଭଳି ଜଣେ କେହି ନଥାନ୍ତି, ତେଣୁ ଶାନ୍ତି ଥାଏ । ସେମାନେ ସମସ୍ତେ ଅବା ସେ ଅନ୍ଧାର ବଣପାହାଡ଼ ଅଗରକୁ ଯାଚି ପାନ୍ତିରୁ ପୋଛିଦେଇଥିଲେ, ଯମ ଅଇଁଠା ହୋଇ ସେ ତା'ର ସ୍ୱାଧୀନ ହୋଇ ପଡ଼ିରହିଥିଲା ।

କିନ୍ତୁ କିଛି ସେପରି ଭାବୁ ନଥିଲେ । ଭାବୁଥିଲେ, ସେମାନେ ସତରେ ଚଳିବା ଲୋକ, ସତରେ ଥିଲେ କାହା ଅନିଷ୍ଟ ନକଲେ କେହି ଶତ୍ରୁ ହେବେ ନାହିଁ । ପୁଣି ଭାବୁଥିଲେ, ଅନ୍ତତଃ ଟୋକାଏ ଭାବୁଥିଲେ,—ସେମାନେ ବଳୁଆ ମଣିଷ, ଛେଚ୍ଚା ପିଠା, ପଥର ପରି ଦେହ, କାହାର ବହପ ଅଛି ଯେ ତାଙ୍କ ରାଇଜ ଉପରେ ବାଦ ସାଧିବ ?

କେତେ ପୁରୁଷ ବିତିଗଲା କେଜାଣି, ଅଲେଖା ଇତିହାସ କହେ—ଲୁଆଡ଼ୁ ବୁଲିବୁଲି ଆସିଲେ କେଉଁ ରାଜ୍ୟରୁ ତଡ଼ା ଖାଇଥିବା ମା'ଟିଏ, କାଖରେ ଛୁଆଟିଏ, ତା ସଙ୍ଗରେ ଚନ୍ଦ୍ରବର୍ଣ୍ଣର ପୁଅ, ଧଳା ଗୋରା, ଖଣ୍ଡା ନାକ, ସୁନ୍ଦର ଆଖି, ଅତି ସୁନ୍ଦର ଚେହେରା ମା'ଙ୍କୁ କ'ଣ ବେଶ-ଧରିଆଏ, ଅବସ୍ଥା ନଥାଏ । କହିଲା ସେ କେଉଁ ଦେଶର ରାଣୀ, ଶତ୍ରୁ

ରାଜା ତା ରାଜ୍ୟ ଆକ୍ରମଣ କଲା, ଯୁଦ୍ଧରେ ତା ସୈନ୍ୟ ମଲେ, ରାଜା ମଲା, ପୁଅଟିର ଜୀବନ ବଞ୍ଚାଇବାକୁ ସେ ତାକୁ ଘେନି ପଳାଇଆସିଲା । "ଶରଣ ପଶୁଛି, ଆଶ୍ରୟ ଦିଅ ହେ ଦସ୍ୟୁଙ୍କ କନ୍ଧ !" ସେ କହିଲା । ମୁଣ୍ଡାମାଝି ବବନ ତାକୁ ଘରେ ଆଶ୍ରାଦେଲା, ଅଳ୍ପଦିନ ପରେ ମା' ମରିଗଲା, ବବନର ସ୍ତ୍ରୀ ପୁଲ୍‌ମେଁ ପିଲାଟିକୁ ପୋଷିଲା ପାଳିଲା, ତା ନାଁ ଦେଲେ ଲେଞ୍ଜୁ ଅର୍ଥାତ୍ ଚନ୍ଦ୍ର ।

ଲେଞ୍ଜୁ ହୃଷ୍ଟପୁଷ୍ଟ ହୋଇ ବଢ଼ିଉଠିଲା, କାହୁଁ କାହୁଁ ତା'ର ବୁଦ୍ଧି ଓ ଗୁଣ ବିକଶିଲା । ଟୋକାଦଳ ଭିତରେ ଆପେ ଆପେ ସେ ଗୋଟିଏ ନେତା, ସେ ନିଜେ ଖେଳ କସରତ୍ କରେ, 'ଠେଙ୍ଗା, ଧନୁ, ବର୍ଛି, ଖଣ୍ଡା ସବୁ ବିଦ୍ୟାରେ ସେ ଆଉ-ମାନଙ୍କୁ ବଳି । ମିଛିମିଛିକିଆ ଲଢ଼େଇ ଖେଳ ଖେଳେ, ଫନ୍ଦିଫିକର କରି ଶତ୍ରୁକୁ କାବୁ କରିବା ବାଗ ଅଭ୍ୟାସ କରେ, ବତାଏ । ରାଜ୍ୟ କଥାରେ ତା'ର ନୂଆ ନୂଆ ବୁଦ୍ଧି । ସେ କହେ ଆମେ କାହିଁକି ଦେଶଟାଯାକ ଗରିବ ହୋଇ ପଡ଼ିଥିବା ? ଆମେ ବାହାର କରିବା ନୂଆ ନୂଆ ଧନ୍ଦା, ପଦାରୁ ଜିନିଷ କିଣିବା, ପଦାକୁ ବିକିବା, ଦଳବଳ ଗଢ଼ିବା, ଆମୁକୁ ବି ପଦାଲୋକ ଡରିବେ—କେତେ କଥା । ବୁଢ଼ାମାନେ ତା'ର କେତେକଥା ପସନ୍ଦ କରନ୍ତି ନାହିଁ, ମନରେ ସନ୍ଦେହ ହୁଏ—"ପୁରୁଣା ରୀତି ଏ ଲୁହେଁ, ଏଥିରେ ବିପଦ ଥିବ ।" କିନ୍ତୁ ଗାଁ ଗାଁକେ କେତେ କେତେ ଟୋକା ତା କଥାକୁ ଗିଳି ପକାଉଥିଲେ, ବିଶେଷତଃ ଯେଉଁମାନେ ତା ସଙ୍ଗେ ଏକାଠି ବଳ ସାଧୁଥିଲେ । କ୍ରମେ ସମସ୍ତେ ଭାବିଲେ, ଲେଞ୍ଜୁକୁ ମୁଣ୍ଡାମାଝି କରିଦେଲେ କାମରେ ଆସନ୍ତା, ତା'ର ସମୁଦାୟ ପରାମର୍ଶ ସେମାନେ ଗ୍ରହଣ ନକରନ୍ତୁ, କିଛି ତ ଗ୍ରହଣ କରିହେବ । ପୁଣି, ଲୋକଙ୍କୁ କେଳେଇ ମଡେଇ କାମ ରୁଳେଇ ନେବାକୁ ଆଉ ଏଡ଼େ ପାରଙ୍ଗମ କିଏ ? ଯୋଗ ପଡ଼ିଲା, ସବୁଠୁ ବୁଢ଼ା ଦାନୁ ମୁଣ୍ଡାମାଝି 'ଲୁଣ କିଣି ଗଲା' ଅର୍ଥାତ୍ ମରିଗଲା; ଗାଁ ମୁଣ୍ଡିଆଳମାନେ ଲେଞ୍ଜୁକୁ ତା ବଦଳରେ ମୁଣ୍ଡାମାଝି କଲେ ।

ଆଗ ସାତବର୍ଷ ସବୁ ଠିକ୍ ଚାଲିଲା । କିନ୍ତୁ ଲେଞ୍ଜୁ ତା'ର ଭିତରେ ଭିତରେ ଦଳବଳ ବଢ଼ାଉଥାଏ । ବେଶି ନୂଆକାମ ନହେଉ ପଛେ କିଛି, ସେମାନେ କହି-ବୁଲୁଥାନ୍ତି—"ଆମେ ଆହୁରି ଖଟିବା, ଆହୁରି ବୁଦ୍ଧି ଲଗାଇବା, ଆମ ରାଜ୍ୟ ବଦଳିଯିବ, ଆମ ରାଜ୍ୟ ସୁନା ହୋଇଯିବ ।"

ସେଇଠୁ ହଠାତ୍ ଦିନେ, ସକାଳ ପାହିଲା ବେଳକୁ କନ୍ଧରାଜ୍ୟରେ ହୁଲସ୍ତୁଲ କାଣ୍ଡ । ଆଉ ସାତଜଣ ମୁଣ୍ଡାମାଝିଙ୍କୁ ଲେଞ୍ଜୁର ଲୋକେ ବନ୍ଦୀ କରିଛନ୍ତି । ସବୁ ଗାଁରୁ ବାହାରି ଆସି ଅସ୍ତ୍ରଶସ୍ତ୍ର ଧରି ସେମାନେ ସିଂହାସନ ପାଖେ ରୁଣ୍ଡହେଲେ । ଲେଞ୍ଜୁ ସିଂହାସନ ପାଖକୁ ଗଲା, ପୂଜା ପାଉଥିବା ପଥରକୁ ସେଠୁ ଫୋପାଡ଼ିଦେଲା, ଘାଟଖଣ୍ଡା ଧରି ସିଂହାସନରେ ବସିଲା । ସମସ୍ତେ କହିଲେ, "ଲେଞ୍ଜୁ ଆମର ରଜା ।"

ଆଗ ସେ ଘୋଷଣାକଲ, "ସାତଜଣଯାକ ବୁଢ଼ା ମୁଣ୍ଡାମାଝି ଆମ ରାଜ୍ୟର ଶତ୍ରୁ, ସେମାନେ ଆମ ରାଜ୍ୟ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିଲେ, ତାଙ୍କର ପାଇଁ ଆମେ ହୋଇଥିଲୁ ରାଜ୍ୟଯାକ ଲୋକ ଗରିବ, ଅରକ୍ଷିତ, କିଛି ଭଲକାମ କରେଇ ଦେଉନଥିଲେ । ଏଥର ଦେଖ ଗୁଞ୍ଜିନାଲ ଉପରେ ଇନ୍ଦ୍ରମୁଣ୍ଡା ବନ୍ଧାହେବ । କେତେ ଜମିରେ ପାଣି ମାଡ଼ିବ, କେତେ ପାଚିବ ସମସ୍ତେ ଦେଖିବ । ତାଙ୍କୁ ଶାସ୍ତି ଦେଲି, ଏ ରାଜ୍ୟ ବାହାରକୁ ତଡ଼ିଦିଆଯିବ, ପୁଣି ଲେଉଟିଲେ ମୁଣ୍ଡକାଟ ।"

ତା ଦଳର ସମସ୍ତେ ଖଣ୍ଡା ଟେକି ପାଟିକଲେ, "ସେଇଆ ସେଇଆ", ପୁଣି ଆଉରି ଗୋଟାଏ ଘୋଷଣା—"ଶୁଣ, ଆଜିଠୁଁ ମୁଁ ରଜା । ଆଉ ମୁଣ୍ଡାମାଝି ରଖାଯିବେ ନାହିଁ । ରାଇଜ ଚଳେଇବା ରଜାର କାମ, ସେଥିରେ ଯେ ତା' ମନକୁ ପାଟି ଫିଟେଇବ ତାକୁ ଶାସ୍ତି ଦିଆଯିବ । କାହାଠୁ କି ପରାମର୍ଶ ନେବି, କାହାକୁ କି ଦାୟିତ୍ୱ ଅର୍ପିବି ମୁଁ ଜାଣେ । ମୁଁ ତୁମକୁ ପାଳିବି, ତୁମେ ମତେ ମାନିବ । ମୁଁ ମୋ ପ୍ରାଣପଣେ ତୁମ ହାତରେ ଏମିତି କାମ କରେଇବି ଯେମିତି ତୁମ ସମସ୍ତିଙ୍କ ପେଟ ପୂରିବ, ତୁମେ ଧନୀ ହେବ, ରାଜ୍ୟକୁ ଏମିତି ଜଗିବି ଯେମିତି କେହି ଏ ରାଜ୍ୟକୁ ଆକ୍ରମଣ କରିବ ନାହିଁ, ତୁମେ ସୁଖରେ ରହିବ ।"

ଶଲୁଆ ଉଭାକଲି ପରି ତା' ଦଳର ସମସ୍ତେ ତାକୁ ସମର୍ଥନ କରି ରଡ଼ିଗୁଡ଼ିଲେ । କହିଲେ, "ଯେ ଏଥିକି ଆପତ୍ତି କରିବ, ପଦେହେଲେ ପାଟି ଫିଟେଇବ, ଆମେ ତାକୁ ଧରି ଆଣିବୁ ।"

ଲେଙ୍ଗୁ କହିଲା, "ଠିକ୍, ଆପତ୍ତି କରି ପଦେ କହିଲେ ଶାସ୍ତି । କାହାକୁ କଇଦ, କାହାକୁ ଦେଶାନ୍ତର, କାହାକୁ ମୁଣ୍ଡକାଟ ।"

ବାଣ୍ଡିଆ ଚହଲିଗଲା । କନ୍ଧ କହିଲେ, "ଆମେ କାହିଁକି ଆପତ୍ତି କରିବା ଆଉ ଶାସ୍ତି ଭୋଗିବା ? ଆମର ସବୁଦିନେ ଯେଉଁ କାମ ଆଜି ବି ସେଇଆ, ସେହି ପୋଡ଼ୁଚାଷ, ଚାଷ, ଶିକାର, ଆଉ ଆଉ ଧନ୍ଦା । ଚାଲ କାମକୁ ।"

କନ୍ଧ ରଜୁଡ଼ି ଉଇତ ରଜୁଡ଼ି ସରିଗଲା ।

ସେଉଠୁ କ'ଣ ହେଲା ? କନ୍ଧ ରଜାକୁ ତଡ଼ିବାକୁ ମେଳି କଲେ କି ନାହିଁ ? ତୁଣ୍ଡ ଇତିହାସ ସେ ବିଷୟରେ ନୀରବ । ଗଡ଼ିଚାଲିଲେ ରଜା ପରେ ରଜା, ରାଜବଂଶ ଉପରୁ ରାଜବଂଶ । କନ୍ଧ ଖାଲି ଜାଣେ, ରଜା ବୋଲି ଜଣେ କିଏ ଥିବ, ରଜା କାମ ରଜାର, କନ୍ଧ କାମ କନ୍ଧର । ସେ ଜାଣେ ତା କ୍ଷେତର ପାଚିରୁ, ତା ଝୋଲଧନରୁ ଭାଗେ ଯିବ ରଜା ଆଉ ତା ଚାକରମାନଙ୍କ ଅମାରକୁ । ଯାଉଥିଲା, ଯିବ । ଆଉ ବି ସେ ଜାଣେ, ନିଜ ଦୁଃଖକଷ୍ଟ ପଛକୁ ପକାଇ ନିଜ ଧନ୍ଦା ଉଜାଡ଼ି ତାଙ୍କର ବରଗାରେ

କେତେବେଳେ ତାକୁ କେଉଁ କାମ କରିବାକୁ ପଡ଼ିବ, ଧରି ଚୁଁ ନାହିଁ, ଆଉ କେତେ-ବେଳେ ତାଙ୍କରି ଭିତରୁ କିଏ ତାଙ୍କୁ ଧରିନେଇ କି ଦଣ୍ଡ ଦେବ, କାହିଁକି ବୋଲି ସେ ପାଟି ଫିଟେଇ ପାରିବ ନାହିଁ, ତାକୁ ବି ସେ ସନ୍ଦେହ, ଭାବେ, "ବାଘ ଧରିପକାଇଲେ ଆଉ ଗୁରୁ କ'ଣ ? କପାଳରେ ଥିଲେ ଧରେ ।" ତଥାପି କିଏ କେତେବେଳେ ମୁହଁ ଖୋଲନ୍ତି, ହାତ ଗୋଡ଼ ଘୁଞ୍ଚନ୍ତି, ଆଡୁରି ଦଣ୍ଡଭୋଗନ୍ତି, କିଏ ବା ମରନ୍ତି । ସାଧାରଣ ମଣିଷ ସେ ସବୁକଥା ଭାବନ୍ତି ନାହିଁ ।

ସେମାନେ ଜାଣନ୍ତି, ମଣିଷ ହୋଇ ଜନ୍ମହେଲେ କେତେ କଥା ତ କରିହୁଏ ନାହିଁ, ପାହାଡ଼ ଟେକି ହେବ ନାହିଁ, ଆକାଶରେ ଚଢ଼େଇ ପରି ଉଡ଼ିହେବ ନାହିଁ, ରୋଗ ଦୁର୍ଦ୍ଦିନ ମୃତ୍ୟୁକୁ ରୋକିହେବ ନାହିଁ, କରିହେବ ନାହିଁ ଅସଂଖ୍ୟ କଥା । ତା ସଙ୍ଗରେ ଆଉ ଦରିଟା ନାହିଁ ନାହିଁ ମିଶିଗଲେ ବଳକା ବା କ'ଣ ?

ରଜା ପରେ ରଜା, ସେମିତି ଥିଲା ଏ ଜଣକ ଯେ ଘୋର ଅନ୍ଧାରରେ ଅଦୃଶ୍ୟ ହୋଇଗଲା । ସେମାନେ ତା ନାଁ ଜାଣନ୍ତି ନାହିଁ । ଜାଣନ୍ତି ଯେ କେଉଁ ଚନ୍ଦ୍ରବଂଶ-ଗଙ୍ଗବଂଶର । ଯେମିତି କଳ୍ପମାନଙ୍କର ନାନା ବଂଶ, ପ୍ରାନ୍ତା, ଟାଂଗାରାଙ୍ଗା, ସାଗ୍ଜା, କେତେ କ'ଣ । ସବୁ ରଜାପରି ଟୋକାବେଳେ ତା'ର ବି କେତେ ଅଦୋହଦର କାହାଣୀ; କିନ୍ତୁ ପଛକୁ ସେସବୁ ନଥିଲା, ବୁଆପିଲା ନଥିଲେ, ଖରଜାକୁ ଖର ଭଲପାଏ, କୁଆଡ଼େ ବାହାରେ ନାହିଁ, କାହା ସଙ୍ଗେ ଲାଗେ ନାହିଁ, ଘରେ ଥାଏ, ଯେ ଆଇଲେ ମିଠାକଥା କହେ, ଯାହା ପାରେ ଦିଏ । ଖରଜା ବେମାର ଥିଲା, ମରିଗଲା । ତା ମନ ପିତା ପଡ଼ିଗଲା । ପଦାର କାମ ବୁଝୁ ନଥିଲା, ଘରେ ଧନ ନଥିଲା, ଚାକର-ମାନେ ମାନୁ ନଥିଲେ, ଖାଲି—ଚଳିଯାଉଥିଲା । ଖରଜା ମଲାରୁ ମନ ଦୁଃଖରେ ସେ ନଅର ଛାଡ଼ି ରାଜ୍ୟ ଛାଡ଼ି ଚାଲିଗଲା । ସେଇଆ ତ କହି କହି ଗଲା ବାଟେ ବାଟେ, ସକାଳ ପାହିଲାରୁ କେତେ ଗାଁରେ କନ୍ଧମାନେ ଯେତେବେଳେ ରଜାବୋଲି ଚହ୍ନିଲେ, ପାଖକୁ ଆସିଲେ, ମକାନ୍‌ଗୁଡ଼ି ଗାଁରେ ଦେଇଗଲା ତା ଛତ୍ର, ଗିର୍ଲିରେ ଦେଲା ତା ଖଣ୍ଡା, ରୁଗୁଡ଼ୁବାଇରେ ଦେଲା ତା' ମୁଦ, ଏମିତି କେତେ ଗାଁରେ କେତେ ଜିନିଷ ଦେଇଗଲା । ଦେହେ ଦେହେ ଲୁଗାପିନ୍ଧି ଘୃଦର ଓଡ଼ି ହୋଇ ଚାଲିଗଲା ।

କହିଦେଇ ଗଲା, "ତୁମ ରାଜ୍ୟ ତୁମେ ସମ୍ଭାଳ, ପାଳ ।"

ସେମାନେ ଜାଣିଲେ ନାହିଁ, ରାଜରାଜ ଦେବ ଚାଲିଗଲା ବାଘିଦାଜ କଟିଂଶୋଷୁ ପର୍ବତ ଉପରେ ଅନେ‌ଏ ଗଡ଼ ବସ୍ତିରେ କେତେ କ'ଣ ଘଟିଗଲା । କେମିତି କେମିତି ଖବର ବ୍ୟାପିଗଲା ଯେ 'ରାଜା ରାଜ୍ୟଗ୍ରଷ୍ଟ ଚାଲିଯାଇଛନ୍ତି, ତାଙ୍କୁ ଦେଖିଥିବା ଜନ କେତେଜଣ ମୁଣ୍ଡେ ବେଲ ସରକ ଆସି ଗଡ଼ରେ କହିଦେଇଗଲେ । ସେଉଠୁ ଦେଖାଗଲା ଗଡ଼ର ଚାକର ଚାକରାଣୀ ଯେ ଯାହା ପାରୁଛି ଲୁଟିନେଇ ଖସି ପଳାଇ-ଯାଉଛି । ସଞ୍ଜହେଲା, ନଅରରେ ଦୀପ ଜଳିଲା ନାହିଁ, ସବୁ ଶୂନ୍‌ଶାନ୍ । ରାତି ଅନ୍ଧାର ହେଲା, ଅନ୍ଧାରରେ କୋଡ଼, ଶାବଲ, ଗଇଁତି ନେଇ ଜଳିଲା ମଶାଲ ଓ ଝକମକ ନେଇ ପଲପଲ ଲୋକ ଆସିଲେ ପୁରୁଣା ଘରୁ ଧନ ସମ୍ପତ୍ତି ଦରାଣ୍ଡି ଖୋଳତାଡ଼ ନେଇ-ଯିବାକୁ । ସେହି ଅନ୍ଧାରରେ ପିଟାପିଟି ଛଡ଼ାଛଡ଼ି ହେଲେ, କଏ କେତେ ଖଣ୍ଡିଆ ଖାବଡ଼ା ହୋଇ ପଳାଇଲେ, ଆରଦିନ ସକାଳକୁ ସବୁ ଫାଙ୍କା, ସ୍ଥାନେ ସ୍ଥାନେ ଭଙ୍ଗାରୁଜା, ହାଉଁ ହାଉଁ ଘର, ସ୍ଥାନେ ସ୍ଥାନେ ଗାତ, ଆଠ ଦଶଟା ମୁର୍ଦ୍ଦାର ଗନ୍ଧୁଛି । ଉଠାଇ ନେବାକୁ ମଣିଷ ନାହାନ୍ତି ।

ଆଉ ନଅର ନୁହେଁ, ଦୂରରୁ ଦେଖିଲେ ଲାଗୁଥାଏ ସେ ଗୋଟାଏ ଜଅଳା ଭସ୍ମ । ଗଡ଼ରେ ଖେଳିଗଲା କୋଳୁଆଭୟ, ଆଗ ଭଳି ସବୁ ଅଛି, ତଥାପି ସବୁ ଘରେ ଗୋଟାଏ ଅଜଣା ଆଶଙ୍କା, ଯେପରି ଅଡ଼ୁକରା ହୋଇ କେଉଁ ଅଜଣା ବିପଦ ହଠାତ୍ କେତେ-ବେଳେ ଆଁ କରି ତେଉଁପଡ଼ିବ । ଜଣକରି ଗୁଜନଆଁ ଆଉ ଜଣକୁ ବି ବାଇ କରୁଥାଏ, କ୍ରମେ ଦେଖାଗଲା, ବେଳେ ବେଳେ ଗଡ଼ ଭିତରୁ ପାହାଡ଼ ଡାଲ୍‌ଏ ଡାଲ୍‌ଏ ତଳକୁ, ତଳକୁ ଧାର ଲାଗିଯାଉଛି, ଜନପଥଥ ମୁଣ୍ଡେଇ ଲୋକେ ଚାଲିଯାଉଛନ୍ତି କେଉଁ ଦୂରରେ ଆପଣା ଭାଷ ଗାଁରେ କ ବନ୍ଧୁଘରେ ରହିବେ । ଅଳ୍ପଦିନେ ଗଡ଼ ଭିତରେ ଲାଗିଗଲା ଦଳ ଦଳ ହୋଇ ଗୃହଦଳ ପାଇକଙ୍କ ଭିତରେ ପ୍ରବଳ ହଣାହଣି, ସମସ୍ତିଙ୍କ ତୁଣ୍ଡରେ ସେହି ଏକା ରଡ଼ି—"ରାଜ୍ୟ ଆମର ।"

"ରାଜ୍ୟ ଆମର ।"

ଶେଷରେ ରଘୁ ଦଳପତି ଜିତିଲା, ବାଉଣି ଜଣ ଡେଣ୍ଡା ଡେଣ୍ଡା ଖଣ୍ଡାଧରା ପାଇକଙ୍କୁ ସଙ୍ଗରେ ନେଇ କନ୍ଧ ଗାଁମାନଙ୍କରେ ବୁଲି ବୁଲି ଶୁଣାଇ ଦେଇଗଲା,

"ମୁଁ ରାଜା ହେଲି । ନାଗବଂଶର ଚକ୍ରବର୍ତ୍ତୀ ରଘୁନାଥ ଜଗଦେବ ସିଂହଦେବ, ଏ ରାଜ୍ୟ ମୋର ହେଇଗଲା । ଗାଁ ଗାଁକେ ମୁଣ୍ଡିଆଲମାନଙ୍କୁ ମୁଁ ବାଣ୍ଟିବି ଶିରପା । ତେମେ ମୋ ଆଜ୍ଞମାନ ଚଳିବ, ବେଠି ବେଗାରି ଦେବ, ଝଜଣା ଦେବ, ଯାହା ଆଜ୍ଞା

ଦେଉଥିବି ତା କରୁଥିବି, ନହେଲେ ଜମି ଛଡ଼େଇନେବ, ଘର ଜାଳଦେବ, ମଣିଷ ହାଣିପକାଇବ ।''

କନ୍ଧ ଶୁଣିଲେ, କିଛି କହିଲେ ନାହିଁ । ତୁନିତାନି କଥା ଫେଲିଗଲା ।

ପାଞ୍ଚଦିନ ତଳ ଗୁଡ଼ିଲେଉଟାବେଳେ ଗଦରଗୁଡ଼ା ଗାଁ ପାଖେ ରଘୁ ଦଲପତି ତା'ର ବାଇଶଜଣିଆ ଥାଟ ଚଳାଇ ବାଟ ଚାଲୁଥାଏ, ସଂକୀର୍ଣ୍ଣ ବାଟ, ଦୁ'କଡ଼େ ପାହାଡ଼ କାନ୍ଥ, ହଠାତ୍ ଦୁ'କରୁ ଧନୁଶର ମାଡ଼ହେଲା, ରଘୁ ଦଲପତି ଟଳିପଡ଼ିଲା, ମଲେ ଆହୁରି ଆଠଜଣ, କଳାକଳା ବୋବାଳି ଗୁଡ଼ା ଦୁ' ପାହାଡ଼ରୁ ଦେଢ଼ଶହ କନ୍ଧ ଗଡ଼ିପଡ଼ିଲେ, ହାତରେ ଧନୁ, ଟାଙ୍ଗିଆ, ବର୍ଛା, ଖଣ୍ଡା । ଆପଣା ଆପଣା ହତିଆର ଫୋପାଡ଼ିଦେଇ ''ରକ୍ଷାକର ! ରକ୍ଷାକର !'' ଡାକ ଗୁଡ଼ା ବାକି ଚଉଦଜଣ ଭେଣ୍ଡିଆ ଭୂଇଁରେ ଲମ୍ବ ଲମ୍ବ ପଡ଼ିଗଲେ, କାନ୍ଦି କାନ୍ଦି କହିଲେ, ''ଆମର କିଛି ଦୋଷ ନାହିଁ । ସେ ରଘୁ ଦଲପତି ଡରେଇ ହରେଇ ଆମ୍ଭକୁ ସଙ୍ଗରେ ଆଣିଥିଲା ।''

କନ୍ଧମାନେ ସେମାନଙ୍କୁ ଗୋଇଠା ମାରି ମାରି ଗଡ଼େଇ ଦେଇଗଲେ । ରାଗ ଶାନ୍ତ ହେଲା, କହିଲେ, ''ଏଥର ଛାଡ଼ିଦେଲୁଁ । ପୁଣି ରଜା ହେବାକୁ ମନକଲେ ଜୀବନରୁ ମାରିବୁଁ । ରଜା ତ ଗଲା ଆଉ କି ରଜା ? ରଜା କହିଦେଇଯାଇଛି 'ତୁମ ରାଜ୍ୟ ତୁମେ ସମ୍ଭାଳ, ପାଳ ।' ଆମେ ବୁଝିବୁଁ ।''

ଶ୍ରାବଣ ମାସ । ଆକାଶରେ ସୂର୍ଯ୍ୟ ଦେଖାନାହିଁ, ଘନଘୋର ମେଘ ଅନ୍ଧାରରେ ଦୁଇ ସପ୍ତାହ କଟିଯାଇଥାଏ, ରାଉ ରାଉ ବରଷା, ବଣ ପାହାଡ଼ ହାଉଳି ଖାଉଥାଏ, ଘାଉଁ ଘାଉଁ ପବନ, କେତେବେଳେ ଝିପିଝିପି ବରଷା । ଝୋଲା-ନଈରେ ମୁଣ୍ଡପୂରା ସୁଅ ଗର୍ଜି ଗର୍ଜି ଧାଉଁଥାଏ, ପାହାଡ଼ମାନଙ୍କରୁ ଧାର ନିଗୁଡ଼ୁଥାଏ । ବଣ ଭର୍ତ୍ତି, ଘାସ ଭର୍ତ୍ତି, ଟାଙ୍ଗରା ପଦାରେ ବି ଅଣ୍ଟାଏ ଉଞ୍ଚ ବଣ । ଫସଲ ବଢ଼ୁଥାଏ, ଲଟା ଫସଲରେ ଫୁଲ ଫୁଟୁଥାଏ । କିନ୍ତୁ ଯେଉଁ ଆଡ଼କୁ ଚାହିଁଲେ ସଙ୍କୁଚିତ ଦୃଷ୍ଟିବଳୟ, ଗୋଳେଇ ହୋଇ ଭିଡ଼ି ରହିଛି ଯେଉଁ ତା' ଉପରେ ତା' ଉପରେ ହୋଇ ବମାନ ପରି ପାହାଡ଼ମାନ, ମେଘ ଛାଇଁହୋଇ ସେ ଆହୁରି ଉଚ୍ଚ ଦିଶୁଛି, ଆକାଶ ପାହାଡ଼ ମେଘରେ ମିଶିଛି, ଲାଗୁଛି ମଣିଷ ପଡ଼ିଛି ଅବାଧ୍ୟ ଯନ୍ତ୍ରା ଭିତରେ, ଆଉ ଯାହ ନାହିଁ ।

କିନ୍ତୁ ମଣିଷ ହଟିନଥିଲେ । ଦେହରେ କୁସୁମ ଫଳର ତେଲ ବୋଳିହୋଇ ପଣ-ପିନ୍ଧେଇ ବର୍ଷାତି ଛାଇଁହୋଇ ପତ୍ର ଛତା ଧରି ସେମାନେ ନିତିଦିନ ପରି ସକାଳୁ

ଯାଇ ସନ୍ତରେ ଫେରୁଥିଲେ, ପର୍ବତ ଚଢ଼ୁଥିଲେ, ମାଗୁଣିକ ଝୋଲ-ନଈରେ ପଶୁଥିଲେ, ପାହାଡ଼ ଉପରେ ଥିବା ପାହାଡ଼ ଢାଲୁରେ ଥିବା ତଳେ ଥିବା କ୍ଷେତରେ ଝଡ଼ ବର୍ଷାରେ କାମ କରୁଥିଲେ । ନାନା କାମ—ଫସଲ କ୍ଷେତରୁ ଅଗଣ୍ଡୁ ବଛାବଛି, କ୍ଷେତରେ ପାଣି ଜମିଲେ ପାଣି କାଟିଦେବା, ମାଟି ଭସାଇ ନେଉଥିଲେ ପର୍ବତ ଢାଲୁରେ ପଥର ହୁଡ଼ଦେବା, ବର୍ଷା ଊଣା ହେଲେ ପର୍ବତ କ୍ଷେତକୁ ହାତରେ କୋଡ଼୍‌କ ମାର ମାର ଖୋଳିବା ଇତ୍ୟାଦି । ସନ୍ତରୁ ଲେଉଟିଆସି ଧୂଆଁ ଭର୍ତ୍ତି କୁଡ଼ିଆ ଘରେ ନିଆଁ ପାଖେ ହୁଁମ୍‌ ଆସନ୍‌, ହୁଁମ୍‌ ମାଣ୍ଡିଆମଦ, ସୁଆଁମଦ, ମହୁଲମଦ, ଧୂଆଁପତ୍ର ପିକା, ବଇଁଶୀ ଫୁଙ୍କା, ମୁଖ-ବୀଣା ବାଜା, ସଙ୍ଗୀତ ଆଉ ଗପ ।

ଘରେ ଘରେ ଗାଏଁ ଗାଏଁ ପଡ଼ୁଥିଲା ରାଜ୍ୟର ସମାଚାର କଥା । ସତେଯେମିତି କେଉଁ ଆଦିମ କାଳରେ ଏକା କୁମ୍ଭାର-ଚକରେ ଗଢ଼ା ସମସ୍ତେ, ସବୁଠି ସେହି ଏକା ଦୃଷ୍ଟିଭଙ୍ଗୀ, ଏକା ବିଚାର ।

"ଝଟି ଖାଇବା ଲୋକ ଆମେ, ବାଣ୍ଟି ଖାଇବା ଲୋକ, ଆଉ କଏ ଆଣି ଅଜାଡ଼ିଦେବ ସେକଥା ନୁହେଁ । ପୋଡ଼ିଚ ମାହାପ୍ରଭୁ, ରକ୍ଷା କରୁଚନ୍ତି ଧର୍ମୁ, ଧର୍ତ୍ତିନୀ, ଆଉ ତାଙ୍କ ତଳିଆ ଦେବତାମାନେ । ଘରର କଳି ଘରେ ତୁଟିବ, ଗାର କଳି ଗା ଲୋକେ ତୁଟେଇବେ, ଗାଁ ଗା ଭିତରେ କଳି ଲାଗିଲେ ଆଉ ଦୁଇ ତିନି ଗା ବଡ଼-ବଡ଼ମାନେ ଏକାଠି ହୋଇ ତୁଟେଇବେ । ତେବେ ସମସ୍ତିଙ୍କ ଉପରେ ବଡ଼ ହୋଇ କଏ ଜଣେ ରହିବା ଦରକାର । ଆଗେ ଥିଲେ ରଜା, ମନଇଚ୍ଛା ଲୁଟୁଥିଲେ, ପିଟୁଥିଲେ, କଏ ଅବା ପୁଅପରି ପାଳୁଥିଲେ । ଭଲ ହ'ନ୍ତୁ ମନ୍ଦ ହ'ନ୍ତୁ, ସମସ୍ତେ ମାନିଲାଭଳି ଥିଲେ ତ ଜଣେ, ତାଙ୍କ କଥା ଉପରେ ଆଉ କଥା ନଥିଲା । ନିଜ କାମ ଭୁଲନ୍ତୁ ନ ଭୁଲନ୍ତୁ, ରାଜ୍ୟସାକର ସମସ୍ତିଙ୍କ ହାଲଚାଲ ବୁଝି ବ୍ୟବସ୍ଥା କରିବାକୁ ଥିଲେ ତ ଜଣେ । ଆମେ ଆମର ଥିଲୁଁ . ସେ ତାଙ୍କର ଥିଲେ, ଆମଠୁ ନନେଇ ଆମକୁ ନଝଟେଇ ନିଜ ଧନ କ ନିଜ ପରିଶ୍ରମରେ କେବେ ଆମର ସମସ୍ତିଙ୍କର କିଛି ଉପକାର କରୁଥିଲେ ଏପରି ଶୁଣାନାହିଁ, ତେବେ ବି ସୁଦ୍ଧା, ସମସ୍ତିଙ୍କ କାମ ପାଇଁ ଜଣେ ମାର୍ଫତ୍‌ଦାର୍ ଥିଲେ । ଭଲ ହେଲା, ରଜାପଦ ଗଲା, ଏବେ ଆମେ ସମସ୍ତେ ରଜା । କିନ୍ତୁ ଯେଉଁ କାମ ପାଇଁ ରଜା ଦରକାର ଥିଲା,—ନକରୁଥାଉ ସେ କାମ ସେ,—ସେ କାମ ଏବେ ଆମେ କରିବୁଁ, ତା'ର ଉପାୟ ଦରକାର ।

ବୁଢ଼ା-ବୁଢ଼ାଙ୍କଠୁଁ ଶୁଣିଥାଇଁ, ସେ କାମ ବି ଆମଲୋକ କରୁଥିଲେ ଯୁଗ ଯୁଗ ଯାକେ । ଗାଁରେ ମାନିଛୁଁ ଗାଁ ମୁଣ୍ଡିଆଳ 'ସାଓଁତା'କୁ । ଆଗରୁ ସେ ପଦବୀ ଅଛି, ଆମ ବୁଢ଼ା-ବୁଢ଼ାମାନେ ବାଛୁଥିଲେ, ସେ ନପାରିଲେ ସମସ୍ତେ ମିଶି ଅନ୍ୟ 'ସାଓଁତା' ବସାଉଁ । ସେ ଯୁଗରେ ସେମିତି, ରଜା ଚାଲିଗଲେ, ସବୁ ସାଓଁତା ଏକାଠି ହୋଇ ନିଜ ମଣ୍ଡଳରୁ ବାଛିଦେଲେ ଆଠଜଣ 'ମୁଣ୍ଡାମାଝି', ସେହିମାନେ ଏ ରାଜ୍ୟ

ଚଳୋଉଥିଲେ । ସବୁ ସାଓଁତାଙ୍କ ପରାମର୍ଶ ନଅନ୍ତି । ସାଓଁତାମାନେ ସବୁ ରଇତଙ୍କ ପରାମର୍ଶ ନଅନ୍ତି । ବିପଦ ପଡ଼ିଲେ ଠିଆହୁଅନ୍ତି ସବୁ କନ୍ଧ ।

ଟିକଏ ବର୍ଷାଟା କମୁ, ଦୁ'ଦିନ ଛାଡ଼ିଯାଉ, ନଥିବ ଏ ସବୁଦିନେ, ସେଉଠୁ ଦେଖିବ ସେଇଆ ହେବ । ଆମ ଲୋକ ସେଇଆ କରିବେ ।'' ମଝିରେ ବର୍ଷା ଛାଡ଼ିଗଲା, ଶ୍ରାବଣ ସରି ସରନ୍ତି, ଆକାଶରେ ଝଟକଲା ସତେ ଅବା ଅଶିଣର ନେଲି, ଜଙ୍ଗଲ ଭର୍ତ୍ତି ବନସ୍ତ ପାହାଡ଼ ଫସଲଭର୍ତ୍ତି କ୍ଷେତର ଛିନଛିନଆ ସାଗୁଆ ଶୁଆ-ପକ୍ଷିରେ ଉପରେ ଝଲଝଲ ଖରାରେ କଏ ଯେପରି ଚକଣ ଲେପିଦେଇଥାଏ । ଗଦରଗୁଡ଼ା ଗାଁ ପାଖେ, ଯେଉଁଠି ଫର୍ଲାଙ୍ଗେ ପର୍ବତ ସନ୍ଧି ବାଟରେ ରମୁ ଦଳପତି ମରିଥିଲା, ତାକୁ ଟପିଲେ ପଡ଼ିବ ଗୋଟିଏ ଓସାର ଖୋଲ, ଘେରକରେ ଗୋଲ ହୋଇ ସାନ ସାନ ପାହାଡ଼, ପଶ୍ଚିମ-ପଟେ ଅଳ୍ପ ଉଚ୍ଚ, ତା ସେପାଖେ ଗଦରଗୁଡ଼ା ଗାଁ ବସ୍ତି । ଖୋଲ ଭିତରେ ହାତୀ ପିଠିରେ ହାତୀପରି ଯୋଡ଼ାଏ ଉଚ୍ଚ କଳା କଳା ପଥର ଠିଆହୋଇଛି, ଦୁ'ପଖେ ଦୁ'ଟା ଝଙ୍କା ବରଗଛ ଛତା ଟେକିଛି, ପଥର ଉପରକୁ ବି ଓହଳ ଝୁଲେଇଛି ! ତଳେ ଫରଚ୍ଛ ସାଉଁଳା ପଥର ଚଟାଣ, ତା ଉପରେ ତିନି ଆଙ୍ଗୁଳ ମାଟି ଉପରେ ଛିନଛିନଆ ସାଗୁଆ ହୋଇ ଏକପ୍ରକାର ସରୁ ସରୁ ଘାସର ଗାଲିଚ୍ଚ, ଦୁ' ପାଖରୁ ବଡ଼ ବଡ଼ ଗଛଲଗି ଛୁଇଁଛୁଇଁଆ ଥଳ, ଦକ୍ଷିଣପଟେ ପଥୁରିଆ ଝରଣାଟିଏ, ତା ସେକରେ ପାହାଡ଼ ।

ମୁଣ୍ଡ ଉପରେ ସୂର୍ଯ୍ୟ ଥାଏ ।

ଖୋଲ ଭିତରେ ପାଖରୁ ଦୂରରୁ ମଣିଷ ଜକାଜକ ।

ଅନାଏ ଗଡ଼ ରାଜ୍ୟସାକର ଗାଁର ସବୁ ସାଓଁତାମାନେ ଯୋଡ଼ାହାତୀ-ପଥର ସାମ୍ନାରେ ଘାସ ଗାଲିଚ୍ଚ ଉପରେ ବସିପଡ଼ିଲେ । ଆଠକୋଡ଼ି ମୂଳ-ଗାଁର ସାଓଁତା, ପୁଣି ତାଙ୍କ ସଙ୍ଗରେ ଅଛନ୍ତି କେତେ କେତେ ନୂଆ ଗାଁର ସାଓଁତା । ଆଠକୋଡ଼ି ମୂଳ ଗାଁର ଲୋକ, ପ୍ରତି ଗାଁର କେତେ ସାନ ସାନ ଗୁଡ଼ା ଅଛି, ସେଠିକାର, କେତେ ନୂଆ ଗାଁର । କେଉଁ ଗାଁରେ ପାଠିଏ ଘର, କେଉଁଠି ବା ଦୁ'ଘର ତିନିଘର ।

ଘରେ, ବାଟରେ ଯେମାନେ କଥାଭାଷା ହୋଇଥିଲେ, ସେଠି ବି କଥାଭାଷା ହେଲେ । ସମସ୍ତେ ଜାଣନ୍ତି, ରାଜ୍ୟ ଚଳାଇବାକୁ ଆଜ ଏଠ ଗୋଟାଏ ନିଷ୍ପତ୍ତି ହେବ, ଦାୟୀ ରହିବେ ପ୍ରତ୍ୟେକେ, ପୁଣି ଗାଁର ମୁଣ୍ଡିଆଳମାନେ, ସମସ୍ତିଙ୍କ ଉପରେ ବଡ଼କରି ବାଛିବେ ଆଠଜଣ 'ମୁଣ୍ଡାମାଝି', ତାଙ୍କର ହାତରେ ସବୁ କ୍ଷମତା ରହିବ । ସେମାନେ ହେବେ ସବୁଠୁ ବଡ଼, ସମସ୍ତେ ତାଙ୍କୁ ମାନିବେ, ସେ ସମସ୍ତଙ୍କ ଖବର ବୁଝିବେ । ବସି ବସି କଥାଭାଷା ଚାଲିଥାଏ, ଜଣେ ଅଧବୁଢ଼ା ଦେବତା-ପୂଜକ ଟିଲ୍କି ଜାନି ହାତୀ ଉପରେ ଚଢ଼ିଗଲା, ସିଧା ଠିଆହେଲା, ବସ୍ତ୍ରପରି କଳନା ନାହିଁ, ପାଞ୍ଚକୋଡ଼ି ଟପିବଣି,

ଅଲ୍ପ ହଳଦିଆ ଧଳାବାଳ, ଆଖିପତା ଧଳା, ନଶ ଦାଢ଼ି ବି ହଳଦିଆ-ଧଳା, ସରୁଆ ଗୋଡ଼ ଡେଙ୍ଗାଲୋକ, ଅଲ୍ପ ନଇଁଛି, ସମସ୍ତେ ଯାହା ଭାବୁଥିଲେ ସେହି କଥା ସେ ବୁଝେଇ କହିଲା । କହିଲା, "ରାଜ୍ୟଯାକର ଲୋକ ଆସିଛ, ବାଛ ମୁଣ୍ଡିମାଝି ଆଠଜଣ । କିଏ ହବ ସେ ସେପାଖରେ ସେଠି ଅଲଗା ହୋଇ ଠିଆହୁଅ, ମୁଁ ଓହ୍ଲେଇ ଯାଉଛି, ଏଇ ହାତିପଥର ଉପରେ ଠିଆହୁଅ, ଯେତେଜଣ ବାହାରଆସିବେ ତହିଁରୁ ଆଠଜଣ ବଛା ହେବେ ।"

"ଆଗ ତୁ ହ ମୁଣ୍ଡିମାଝି ଅଜା", ଜଣେ କିଏ କହିଲା, ସମସ୍ତେ ସେଇଆ ହୋ' ଧରିଲେ ।

ଟିଲ୍‌କ ଜାନି କହିଲା, "ତୁମେ କହୁଛ, ମୁଁ ହଁ ଭରିଥାନ୍ତି, ହେଲେ ମୋର ଆଉ ସେ ବୟସ ନାହିଁରେ ବାପା । ରଜାପୁଅ ରଜା ହେଲେ ହୁଏ ଆଗ ପରକୁ ଝୁଣି ନିଜେ ଭୋଗ କରିବ ବୋଲି, ସେ ଗୋଟାଏ ବାଘ, ନିଜେ ଖାଇବ, ଧରି ଧରି ଖାଇବ, ତା' ତଳରେ ସମସ୍ତେ ହାତଗୋଡ଼ ଜାକି ବସିବେ, ତୁଣ୍ଡ ନାହିଁ, ମୁଣ୍ଡ ନାହିଁ, ଅନ୍ୟ ବାଘ ପଶିବ ନାହିଁ । ସେମିତ ଶାନ୍ତି ସେ ଦେଶକୁ ଦିଏ । ଉଇତ ପିଲା ମୁଣ୍ଡିମାଝି ହେଲେ କରିବ ତାର ଠିକ୍ ଓଲଟା କାମ, ନିଜ ଭୋଗ, ନିଜ ଲାଭ, ନିଜ ସୁଖ ସବୁ ଭୁଲିଯିବ, ତା କ୍ଷେତରେ ବୁଦା ଲଟା ବଢୁଥିବ, ସେ ଧାଉଁଥିବ ଗାଁକୁ ଗାଁ, ଘରକୁ ଘର, ସମସ୍ତିଙ୍କର କ'ଣ ହିତ ହେବ ସେଇଆ କରି କରି । ତା ନକରି ରଜାପରି ହେଲେ ସେଇଟା ହେବ ଡାଁଗର୍, ଫନ୍ଦିକାରି (ଠକ, ଅସତ୍ତା) ଲୋକଙ୍କୁ ଜାଳିବ କଷ୍ଟଦେବ, ନିଜେ ଭୋଗ କରିବ, ବଳଥିଲାଯାକେ ଜିଇଁବ ଜିଣୁ ; ମରିବ ତ ଦିନେ, ମଲେ କାଳକାଳକୁ ତା ନାଁରେ ଲୋକ ଛେପ ପକାଇବେ, ସେମିତ ସେକାଳର ବୁଢ଼ା ବୁଢ଼ାମାନେ କହୁଥିଲେ ଲୋକ୍ଙ୍କୁ ମୁଣ୍ଡିମାଝି କଥା । ଧିକ୍ ତା ଜନ୍ମ ! କାହୁଁ ମୋ ବୁଢ଼ା ହାଡ଼ରେ ବଳ ଅଛି ତୁମ ରାଜ୍ୟଯାକ ଲୋକଙ୍କର ସେବା କରିବାକୁ ?"

"ତୁ ହେଲେ ବାଛି ଦେ ଅଜା, କିଏ ହେବ ସେ ?"

"ଆଗ ଲୋକ ନିଜେ ନିଜକୁ ଏ କାମ ପାଇଁ ବାଛନ୍ତି । ଘରୁ ଖାଇ ଘୋଡ଼ା-ଆଗରେ ଡେଇଁଲା କାମ ସେ, ନିଜର କ୍ଷତି ହେବ, ରାଇଜଯାକର ହିତ ହେବ, ସେଇଥିପାଇଁ । ଯେ ଆସିବ, ଭୁଲିଯାଅ ତମର ପେଟ ଅଛି, ପିଲାଛୁଆ ଅଛନ୍ତି, ଘରକାମ, କ୍ଷେତକାମ ଅଛି, ତାକୁ ସମ୍ଭାଳିବା ତୁମ କାମ ନୁହେଁ, ରାଜ୍ୟ ଭାଇମାନେ ସମ୍ଭାଳିବେ ତ ସମ୍ଭାଳିବେ ନହେଲେ ସେ ପୋଡ଼ିଯାଉ । ଆଗ ଏଇଆ ଭାବି ମନ ଥିରକର । ସେଉଠୁ ଭାବ, ଏଡ଼େ ବଡ଼ ଦାୟିତ୍ୱ ତୁଲେଇବା ପାଇଁ ତମ ଦେହରେ ବଳ ଅଛି ? ମୁଣ୍ଡରେ ବୁଦ୍ଧି ଅଛି ? ପାରିବ ? ଭାବିଚିନ୍ତି ଆସ । ଏଇଆ କହିବାର ଥିଲା ମୋର ।" ଚାରିଆଡ଼ୁ ଶୁଭୁଥାଏ, "ଠିକ୍—ଠିକ୍—ଠିକ୍" ବୁଢ଼ା ଓହ୍ଲେଇ ପଡ଼ିଲା ।

ଗାଁ ମୁଣ୍ଡିଆଳମାନଙ୍କ ଗହଳରେ ବକର ବକର ଲାଗିଥାଏ । "ତୁମେ ଯାଅ ।" "ତୁମେ ଯାଅ ।" "ତୁମେ ଯାଅ ।" ସେ ତାକୁ ଫୁସୁଲାଉଛି, ସେ ସ୍ୱାକୁ ଫୁସୁଲାଉଛି, କାଳେ ପଦାକୁ ବାହାରିବାକୁ କେହି ଆଗଭର ନୁହେଁ, ବେଶି କୁହା'ପୋଛା କଲେ ବୁଝାଇ କହୁଛନ୍ତି "ମତେ ଯେଉଁ କାମ ଦେବ କରିବ ଯେ ମୋଠୁଁ ବଳ ପାରିବାର ଲୋକ କ'ଣ ଆଉ କେହି ନାହାନ୍ତି ?" ଆଲୋଚନା ପଡ଼ୁଥାଏ—ଅମୁକ ଲୋକ ଖୁବ୍ ସାହସୀ, ବାଘ ସଙ୍ଗେ ଲଢ଼ିଛି । ଅମୁକ ଅମୁକ ଲୋକ ବହୁତ ଗାଁ ବୁଲିଛନ୍ତି, ବହୁତ ବହୁତ ଗାଁର ଖବର ରଖନ୍ତି । ନୂଆ ଗାଁ ବସେଇବାକୁ, ଭଲ ଚାଷ ହେବ ପର୍ବତରେ, ଏପରି ନୂଆ ଜମି ବାଛିବାକୁ ଅମୁକ ଲୋକ ଖୁବ୍ ବିଚକ୍ଷଣ । ଅମୁକ ଅମୁକ ଲୋକଙ୍କର ବୁଦ୍ଧି ଖୁବ୍ ସରସ, ଭଲ ପରାମର୍ଶ ଦିଅନ୍ତି, ବହୁତ ଦୂରକୁ ଦେଖି ବିବେଚନା ବିଚାର କରନ୍ତି । କେତେଜଣ ମୁଣ୍ଡିଆଳଙ୍କ ବିଷୟରେ ବହୁତ କାହାଣୀ କୁହାହୋଇ ଉଚ୍ଚ ପ୍ରଶଂସା କରାଯାଉଥାଏ । ସେମାନେ ମୁଣ୍ଡକୁ ତଳକୁ ପୋତିଥାନ୍ତି । ଏତେ କଥାଭାଷା ପରେ ତଥାପି କେହି ବାହାରିଲେ ନାହିଁ । ତା'ପରେ ଦେଖାଗଲା, ବାଛି ବାଛି ଜଣ ଜଣକୁ ଅନେକ ଲୋକ ଟେକାଟେକ ବୁହାବୋହି କରି ଅଲଗା କରି ପଦାରେ ଠିଆକଲେ । ସେମାନେ ଚାଲିଆସିବାକୁ ଉଦ୍ୟମ କରିବାରୁ ହସି ହସି ଅଟକାଇ ରଖିଲେ । ଟେକି ଟେକି ଏମିତି ଆଠଜଣଙ୍କୁ ଠୁଳ କଲେ । ତାଙ୍କୁ ମୋହିଁ ଧାଡ଼ି ହୋଇ ସବୁ ଗାଁ ମୁଣ୍ଡିଆଳ ଠିଆହେଲେ । ନାଁ ଡାକି ଡାକି ପ୍ରଥମ ମୁଣ୍ଡିଆଳ ସେହି ଆଠଜଣଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲେ,

"ଏଇ ଆଠଜଣଙ୍କୁ ଆମେ ମୁଣ୍ଡାମାଝି କଲୁଁ, ଏଇମାନେ ଆମ ରାଜ୍ୟକୁ ଶାସନ କରିବେ ।"

ପ୍ରତି ମୁଣ୍ଡିଆଳ ସେହିମାନଙ୍କ ଆଡ଼କୁ ହାତ ଦେଖାଇ କହିଲେ, "ଆମର ରାଜା, ଏଇ ଆଠ ଆମ ମୁଣ୍ଡାମାଝି ।"

ସେମାନଙ୍କୁ କୁହାଗଲା, "ଏଥର ଯୋଡ଼ାହାତି-ପଥର ଉପରେ ଧାଡ଼ି ହୋଇ ଠିଆହୁଅ, ଉପରେ ଅଛି ବରଗଛର ଛାଇ, ଶପଥ କର, ଏ ରାଜ୍ୟକୁ ପାଳିବ, ରଇତଙ୍କୁ ପୁଅପରି ଦେଖିବ, ଆଉ ଯାହା କହିବାର କହ ।"

ସେହି ଆଠଜଣ ଯୋଡ଼ାହାତି-ପଥର ଉପରେ ଚଢ଼ି ଠିଆହେଲେ । ବୁଢ଼ା-ବୁଢ଼ା ଜାନିମାନେ ଆସିଲେ, ତାଙ୍କ ମୁଣ୍ଡରେ ଖଣ୍ଡେ ଖଣ୍ଡେ ନାଲି କପଡ଼ା ବାନ୍ଧିଦେଲେ, ହାତରେ ଧରାଇଦେଲେ ଖଣ୍ଡା, ସେମାନଙ୍କ ଚିବୁକ ଅଣ୍ଟାଳି ଆଣି ନିଜ ହାତକୁ ଓଠରେ ଲଗାଇଲେ, ଓହ୍ଲେଇଗଲେ ।

ଗମ୍ଭୀର ହୋଇ ଆଠଜଣ ମୁଣ୍ଡାମାଝି ଠିଆହୋଇରହିଲେ—ବନ୍ଧରି ଗାଁର ଟାଙ୍ଗାରାଙ୍ଗା ଗୋଚର ରାହୁଂଗା ପଟୁ ମାଝି, ଗିଲଂକୁପୁଡ଼ାର ଜୀଟାଙ୍ଗା ଗୋଚର

ତାଙ୍କ ମାଝି, ବାଡ଼ପାଙ୍ଗାର ଗୁଲୁଙ୍କା ଗୋଷ୍ଠର ଦଶାଙ୍ଗା ସାଓଁତା, ମାଢିଗୁଡ଼ାର ବ୍ରେକ୍‌ଓ୍ୱେଡ଼େକା ଗୋଷ୍ଠର ଟାଂଗ୍ରା ମାଝି, ଗୁଡ଼ୁଡ଼ୁ ଗାଁର କୋଟଡ଼ଗଣ୍ଡା ଗୋଷ୍ଠର ଉକ୍‌ଡ଼ୁକୁଡ଼ି ସାଓଁତା, ନୁଣ୍ଡୁଗୁଡ଼ା ଗାଁର ନୁଣ୍ଡୁକା ଗୋଷ୍ଠର ରୁମୁଡ଼ ମାଝି, ମାଝିଗୁଡ଼ା ଗାଁର ପ୍ରୋଟିଂଗା ଗୋଷ୍ଠର ସିଡ଼ସା ମାଝି ଓ ଗାଡ଼ଡ଼େଂପାଙ୍କା ଗାଁର ଗୋରେସିଙ୍ଗା ଗୋଷ୍ଠର ଡଟିପ୍ ମାଝି ।

ସିହଙ୍ଗା ପ୍ରାୟ ଛ' ଫୁଟ୍ ଡେଙ୍ଗା, ହଳଦିଆ ଗୋରି, ଓସାର କାନ୍ଧ, ସରୁ ଅଣ୍ଟା, ବୟସ ସତୁରି ହେବ । ତାଙ୍କ ତାର ବେକଯାକେ ପାଉଁଶ, ଜକ୍‌ଜକ୍ କଳା ଗେଧେଇ ମାଉଁସିଆ ଦେହ, ଚେକା ମୁହଁ, ବୟସ ପଚିଶ ହେବ, ଦଶାଙ୍ଗାଙ୍କୁ ସତୁରି ପାଖ, ଡେଙ୍ଗା ପାତଳ, ଶ୍ୟାମଳ ବର୍ଣ୍ଣ, ଅଳ୍ପ ଲମ୍ବାଳିଆ ମୁହଁ, ଟାଂଗ୍ରା ଆକାରରେ ସାନ, ଗୋରି ବଳିଲ ବଳିଲ ଟୋକାଟିଏ, ବୟସ ତିରିଶ ହେବ, ପାନପତ୍ର ଧାର ମୁହଁରେ ଏକ ପ୍ରକାର ସହଜ କୋମଳତା, ଅଳ୍ପ ଲଜ ଲଜ, ଝିଅଟିଏ ପରି, ଉକ୍‌ଡ଼ୁକୁଡ଼ିଙ୍କୁ ପଇଁତିରିଶ ହେବ, କଳାଲୋକ, ଚଉଡ଼ା କପାଳ, ଗୋଲଗାଲ ଆଖି, ହାଡ଼ୁଆ ମୁହଁ, ଟାକୁଆ ଗାଲ, ଓସାର ମଣିଷ, ସାଢ଼େ ପାଞ୍ଚଫୁଟ୍ ଉଚ୍ଚ ହେବ, ରୁମୁଡ଼ ବୟସରେ ଉଚ୍ଚତାରେ ତା'ର ଏକା ମଝି, ଲମ୍ବା ମୁହଁ, କଳା ସିଡ଼ସା ନକନକିଆ ହାଡ଼ୁଆ, ସଭିଠୁ ଡେଙ୍ଗା, ଲମ୍ବା ବେକ, ଲମ୍ବା ମୁହଁ, ଗୋରି, ମୁହଁରେ ବସନ୍ତ ଚିହ୍ନ, ପଚିଶ ପାଖ, ଡଟିପ ପଥର ପରି କଳା ଖାସୁଲ, ଆରୁ ଆରୁଆ ହେହ, ଖୁବ୍ ଦମ୍ଭିଲ ଚେହେରା, ଗୋଲ ମୁହଁ, ବୟସ ପଇଁତିରିଶ ।

ତୋର କୌତୁକ ପିଲା ଆଠଜଣ କନ୍ଧ । ସମସ୍ତିଙ୍କ ପରି ସାଧାରଣ ମଣିଷ । ବଣ ହାଣିପାରନ୍ତି, ତାପ ଓ ଶିକାର କରିପାରନ୍ତି, ସାଧାରଣ ମଣିଷ ଯାହା କରେ ତା କରନ୍ତି । ଖାଲି ଏତିକି ଯେ ସାଧାରଣ ମଣିଷ ନିଜର ଓ ନିଜ ପରିବାରର ଧନ୍ଦାରେ ହିଁ ସବୁବେଳେ ବ୍ୟସ୍ତ ରହେ, ଏମାନେ ତା ଉପରେ ପୁଣି କିଏ କେତେ-ବେଳେ ଅନ୍ୟମାନଙ୍କ ଉପକାରରେ ଲାଗିଛନ୍ତି, କେତେବେଳେ କେଉଁ ଘଟନାରେ ନିଜକୁ ବିପନ୍ନ କରି ଅନ୍ୟମାନଙ୍କ ଉପକାର କରିଛନ୍ତି, ତାଙ୍କ ପ୍ରଶଂସା ରଟିଛି, ଲୋକେ ତାଙ୍କୁ ଚିହ୍ନନ୍ତି, ତାଙ୍କ ବୁଦ୍ଧି, ମହତ୍ତ୍ୱ, ବିବେକ, ବିଚାର, କଲା କାମକୁ ପ୍ରଶଂସା କରନ୍ତି । ଏତିକି ନୁହନ୍ତି, ଗାଁ ମୁଣ୍ଡିଆଳଙ୍କ ଭିତରେ ସେପରି ଅନ୍ୟମାନେ ବି କେହି କେହି ଥିଲେ; କିନ୍ତୁ ବଛାହୋଇଛନ୍ତି ଏହି ଆଠଜଣ ।

ତାଙ୍କ ବୟସରେ ତାରତମ୍ୟ ଅଛି, ତିରିଶ ବର୍ଷର ଟାଂଗ୍ରାଠୁ ସତୁରି ବର୍ଷର ସିହଙ୍ଗା ଯାକେ । କିନ୍ତୁ କନ୍ଧ ବୟସ କଥା ଭାବେ ନାହିଁ । ଭାବେ, ସମସ୍ତେ ଅତି ପୁରୁଣା ମଣିଷ, କେଉଁ ଆଦିମ ଆତ୍ମାର ବାରମ୍ବାର ପୁନର୍ଜନ୍ମ, କିଏ ଜାଣେ ଯେ ଆଜି ଜନ୍ମହେଲା ପ୍ରକୃତରେ ତା ବୟସ କେତେ ?

ଆଉ, ଏ ଓଟିଲର ବି ଅନେକ ଦୁଃସାହସିକ କାହାଣୀ, ନିଜ ଗାଁରେ ଏକା ନୁହେଁ, ଅନେକ ଗାଁରେ । ତା'ର ଧାମଣା କାଠର ଚଉହାତ ପାଦଣ୍ଡା ଧନୁର ଲକ୍ଷ୍ୟ ଅବ୍ୟର୍ଥ, ମଣିଷଖିଆ ବାଘ ସେ ଗୋଡ଼େଇ ଗୋଡ଼େଇ ମାରେ । ଖଣ୍ଡା ଧରି ଡେଇଁ ଡେଇଁ ବି ବାଘ ମାରିଛି । ଯେଉଁ ଭସ୍ମ ପଡ଼ିଆଉ, ବିପଦ ପଡ଼ିଆଉ, ଓଟିଲି ଚେଇଁବ, ତା ଦେଖାଦେଖି ଅନ୍ୟ ସମସ୍ତେ, ସେ ସମସ୍ତିଙ୍କୁ ଅଭୟ ଦିଏ । ଝୋଲ ଘୁଅରେ ଭାସିଯାଉଥିବା ମଣିଷ ଉଦ୍ଧାର କରିଛି । ହେଇ, ଗଲା ଫଗୁମାସରେ ତ, ପାଙ୍ଗିଗଁା ଗାଁରେ ନିଆଁ ଲଗିଲା, ନିଆଁ ଭିତରେ ପଶି ସେ ଟିଉ କନ୍ଧର ଛୁଆ ଦହିଁକି ଉଦ୍ଧାର କରି ଆଣିଥିଲା, ତା'ର ସେ ଗାଁରେ କିଛି କାମ ନଥିଲା, ଅନ୍ୟ ଗାଁରେ ବନ୍ଧୁ ଘରକୁ ଯାଉ ଯାଉ ଅନ୍ଧାର ହେବାରୁ ସେଠିକି ରହିଯାଇଥିଲା ।

ସେମାନେ ଠିଆ ହୋଇପଡ଼ିଲେ । ଲୋକେ ଆନନ୍ଦରେ ଘୋ' କଲେ । ଟାଙ୍ଗାଗୁଙ୍ଗା ଗୁହିଙ୍ଗା ବାଁ ହାତରେ ଖଣ୍ଡା ଧରି ଡାହାଣ ହାତକୁ ଉପରକୁ ଟେକି ଶପଥ ନେବା ଆରମ୍ଭ କଲା,—

"ଲେ'ଥ ଦର୍ମୁ (ଉପରେ ଭଗବାନ୍)"

ବାକି ସା'ତଜଣ ସେହିପରି କଲେ ଓ କହିଲେ ।

"ତୋ'ଇଁ ଦର୍ତିନୁ (ତଳେ ଧରଣୀ ଦେବୀ)"

"ଯେଉଁ ସ୍ନେହରେ ବିଶ୍ୱାସରେ ମୋ ରାଜ୍ୟର ଲୋକେ ମତେ ଏ ରାଜ୍ୟର ମୁଣ୍ଡାମାଝି କଲେ, ଏ ରାଜ୍ୟର ଭାର ମତେ ଅପି-ଦେବତା କଲେ, ମୁଁ ମୋ ପ୍ରାଣପଣେ ସେ ଭାର ତୁଲେଇବି, ଏ ରାଜ୍ୟର ସମସ୍ତିଙ୍କର ମଙ୍ଗଳ କରୁ କରୁ ମୋ ଜୀବନ ପଛେ ଯାଉ, ମୁଁ ପଛେଇବି ନାହିଁ । ଆଉ ସାତଜଣ ମୁଣ୍ଡାମାଝିଙ୍କ ସଙ୍ଗେ ଏକମତ ହୋଇ ମୁଁ ମୋ ରାଜ୍ୟଲୋକଙ୍କ ପାଇଁ କାମ କରିବି, ଆମେ ଆଠଜଣ ସମସ୍ତେ ସମାନ, କେହି ଅନ୍ୟ କାହାଠୁ ବଡ଼ ନୁହେଁ କି ସାନ ନୁହେଁ ।"

ସେଉଠୁ ସେମାନେ ସମସ୍ତେ ଡାହାଣ ହାତରେ ଖଣ୍ଡାଟେକି ଠିଆହେଲେ । ମୁହଁରେ ଅପୂର୍ବ ଦୀପ୍ତି । ଟାଂଗ୍ରା ମୁଣ୍ଡାମାଝିର ନାକ କୁଆଡ଼େ ଲୁଚିଗଲା । ସେ କହିଲା "ସତଃ ଓ୍ୱେହ୍‌କୁ" (ସତକହ) ।

ଜନତା ଏକ ସ୍ୱରରେ ଉତ୍ତରଦେଲେ "ସତଃ ଓ୍ୱେପିମା'ଇଁ, ଉକୋ ଆ'ଏ" (ସତ କହିବି, ମିଛ ନୁହେଁ) ।

ଓଟିଲି କହିଲା, "ସତ ବାଟରେ ଚାଲୁଥିବ ।"

ପୁଣି ସେହିପରି ।

ଓଟ୍‌କା କହିଲା, "ବାଣ୍ଡିକୁଣ୍ଡି ଖାଅ, ଯେମିତ ଗାଁରେ କେହି ଅଭାବୀ ରହିବେ ନାହିଁ ।"

ପୁଣି ସେହିପରି ।

ହିନ୍ଦୁକୁଟି କହିଲା, "ଆଗରୁ ବଳି ଆହୁରି ବେଶି ଆଖୁରି ଦେଖି କାମକରି । କେହି ଅଳସ ନକର ।"

ପୁଣି ଅନ୍ୟ ମୁଣ୍ଡମାଝିମାନେ ସେହିଆ କହିଲେ, ଜନତା କହିଲେ, "କରିବୁଁ ।"

ଡେଙ୍ଗା ଘୃଡ଼ସା କହିଲା, "ଆମେ ଲୋକ ଶାନ୍ତିପ୍ରିୟ, ଆଉ କେଉଁ ରାଜ୍ୟ ସଙ୍ଗେ ଆମର ବିବାଦ ନାହିଁ । ଆମେ କୌଣସି ରାଜ୍ୟ ସଙ୍ଗେ କଳି କରିବୁ ନାହିଁ । କିନ୍ତୁ ସଦାଁ ତ'ଲେ ସଦାଁ (ବନ୍ଧୁ ସଙ୍ଗରେ ବନ୍ଧୁତା) ବିଦାଁ ତ'ଲେ ବିଦାଁ (ଶତ୍ରୁ ସଙ୍ଗରେ ଶତ୍ରୁତା) । କେହି ଯଦି ଆମ ରାଜ୍ୟ ଆକ୍ରମଣ କରେ, କେହି ଯଦି ଆମ ଦେଶର ଶାସନକୁ ଭାଙ୍ଗିବାକୁ ଚେଷ୍ଟା କରେ, ତୁମେ ଜୀବନ ଥିବାଯାକେ ଲଢ଼ିବାକୁ ବାହାରି ଆସିବ କି ନାହିଁ ?"

ଆଉ ସାତଜଣ କହିଲେ, "କହ, ଲଢ଼ିବାକୁ ବାହାରି ଆସିବ କି ନାହିଁ ? କ'ଣ କହିବ ?"

ତେଣିକି କୁଦା ମାରିଲା ପରି ଲୋକେ ଗର୍ଜନ କରି ଡେଇଁଲେ—

"ସାନ୍ଧି ସାଦ କହିମା'ଁ (ଶତ୍ରୁକୁ ବଳିପକାଉଛୁଁ) ।
ମେରିଆ ସାଦ କହିମା'ଁ (ମେରିଆକୁ ବଳି ପକାଉଛୁଁ) ।
କ୍ରୁଣ୍ଡ ହାସ୍ପମୁ କ୍ରୁଣ୍ଡ ହାସ୍ପମୁ (ହାଣିପକା, ହାଣିପକା) ।"

ଚାଲିଲା ତା'ପରେ ପୂଜା ଅନୁଷ୍ଠାନ । ନୂଆ ରାଜ୍ୟର ଶୁଭ ମନାସି ପ୍ରକାଣ୍ଡ କାଠ ଖମ୍ବଟିଏ 'ଧର୍ଣୀ ମୁଣ୍ଡା' କରି ସେଠି ପୋତା ହେଲା, ପୂଜା ଦିଆହେଲା, ପାଖେ ରଖାଗଲା ରାଜାର ପ୍ରତୀକ କରି ଗୋଟିଏ ଗୋଲ ପଥର ଓ ଗୋଟିଏ ଖଣ୍ଡା, ତା ଉପରେ ଛାମୁଡ଼ିଆ ହେଲା, କାଳକ୍ରମେ ସେଠି ଘରତୋଳା ହେବ । ମୁଣ୍ଡମାଝିମାନଙ୍କ ଉପରେ ହଳଦୀ ପାଣି ଛିଞ୍ଚା ହେଲା, ଦୀପ ଜାଳି ତାଙ୍କୁ ବନ୍ଦାପନା କରାଗଲା ।

ତା'ପରେ ଚାଲିଲା କନ୍ଧ-ରାଜ୍ୟ-ରଚିତ-ରାଜ୍ୟର ଜନ୍ମଦିନ ଉତ୍ସବ, ବାଜା, ଗୀତ, ନାଚ, ଭୋଜି ମଉଛବ ।

ଅକ୍ଷର ପଣିନଥିଲି; କିନ୍ତୁ ବସ୍ତିର ଆପେ ଥିଲି, ଲୋକ ଥିଲେ, ଘର କରୁଥିଲେ । ଏକା ସେଠି ବୋଲି ନୁହେଁ, ଦୁନିଆ ଯାକ, ହଜାର ହଜାର ବର୍ଷ ଯାକେ । କେତେଠି ମାଟିତଳୁ ବାହାରିଥାଏ କେଉଁ ଅକ୍ଷରହୀନ ସଭ୍ୟତାର ଶଙ୍ଖ, ସେ ସ୍ମାରକମାନ ନିଜେ ହିଁ ଅକ୍ଷରଠୁଁ ବଳି କଥା କହନ୍ତି, ଆଉ କହନ୍ତି, ତୁମେ ଆଜି ଅଛ, ଆମେ କାଲି ଥିଲୁଁ, ଆମେ ବି ମଣିଷ ।

ସେ କାଳ ରାଜ୍ୟରେ ବସ୍ତିର ଥିଲା ଅତି ସରଳ, କାମ ସେଇଆ ଯହିଁରେ ନିଜର କିଛି ଉପକାର ହେବ, ପରର କିଛି ଅନିଷ୍ଟ ହେବ ନାହିଁ ଓ ତାଠୁଁ ଭଲ କାମ— ଯହିଁରେ ପରର ଉପକାର ହେବ, ନିଜର ପଛେ କ୍ଷତି ହେଉ । ଯେମିତି କାହାକୁ ଶଗଧା କେମିତି କରିବାକୁ ପଡ଼େ, ଗେଲ୍ କେମିତି କରିବାକୁ ପଡ଼େ କେହି ତାକୁ ଶିଖାଏ ନାହିଁ, ନିଜର କାହିଁରେ ଉପକାର ହୁଏ ମଣିଷ ତା' ବଳେ ଜାଣେ ।

ମୁଣ୍ଡାମାଝିମାନେ ଗଦରଗୁଡ଼ ଗାଁରେ ହିଁ ଏକାଠି ହୁଅନ୍ତି, ସେଠି ଆଉସବୁ ଗାଁ ମୁଣ୍ଡିଆଲମାନେ ଏକାଠି ଠୁଳ ହୁଅନ୍ତି, ପରାମର୍ଶ ପଡ଼େ, ଏକାଠି ଭେଟ ହେବାକୁ କଥା ହେବାକୁ ସେଠି 'ଗୁଡ଼' ଘର ତୋଳା ହେଲା । କ୍ରମେ ମୁଣ୍ଡାମାଝିମାନେ ସେଠି ବସା କଲେ । ବସା ଘରେ ରହନ୍ତି, ପୁଣି ନିଜ ନିଜ ଘରକୁ ଫେରିଯାଆନ୍ତି । କୋଠ ଜିନିଷ ପାଇଁ ନାନା ଅନୁଷ୍ଠାନ ପ୍ରୟୋଜନ ହେଲା, ପ୍ରତି ଗାଁରେ ରହିବ, ପୁଣି ଗାଁରୁ ସରିଲେ ସେଠୁ ଅଣାଯିବ । ଯେମିତି—ବୈଶାଖ, ଜ୍ୟେଷ୍ଠ, ଆଷାଢ଼ ମାସରେ ଖାଦ୍ୟ ସରିଯାଏ, ସଞ୍ଚି ରଖିଥିଲେ ବଣ୍ଟା ହେବ; କେତେବେଳେ ବିହନ ସରିଯାଏ, ସଞ୍ଚିଥିଲେ ମିଳିବ, ସେମିତି ଲୁଗାପଟା, ଅନ୍ୟଦେଶରୁ ଆଣିବା ଜିନିଷ—ଲୁଣ, ମିଠା, ଶୁଖୁଆ, ଲୁହା, ଧୂଆଁପତ୍ର, କେତେ ଦ୍ରବ୍ୟ, ନିଜ ଦେଶରେ କୌଣସି କୌଣସି ଜିନିଷ ହେଲେ ବି ଯଥେଷ୍ଟ ନୁହେଁ । ପ୍ରତି ଗାଁରୁ ଭେଦାରେ ଆସେ, ଲୋକଙ୍କ ପାଖକୁ ହିଁ ଯାଏ, ଯାହାର ଯାହା ଦରକାର । କିଛି ହତିଆର ବି ଠୁଳକରି ରଖିବାକୁ ପଡ଼ିଲା, ବଣପର୍ବତ ଡେଇଁ ଲୁଟ-ମାର କରିବାକୁ କେହି ଆସୁନାହାନ୍ତି ସତ, ତେବେ ମୁଣ୍ଡାମାଝିମାନେ ସତର୍କତା ଛାଡ଼ିଲେ ନାହିଁ, ଦେଶ ଜଗିବାକୁ ଧ୍ୟାନ ଦେଇଥାନ୍ତି, ଗାଁ ଗାଁକେ ଟୋକାମାନେ ତାଲିମ୍ ହେଉଥାନ୍ତି, ବେଳେବେଳେ ଗଦରଗୁଡ଼କୁ ଡାକରାପଡ଼େ, ହାତ-ହତିଆର ଧରି ଏକାଠି ଶହ ଶହ କାଳ ପଟୁଆର କରି ବୁଲନ୍ତି । କେବେକେବେ ବୁଲିଆସନ୍ତି ରାଜ୍ୟର ସୀମା କରେ କରେ, ଢୋଲ ପିଟି, ତୂରୀ ଫୁଙ୍କି ସେ ଗୋଟାଏ ମହୋତ୍ସବ ଅଛି ଜୟଯାତ୍ରା, ବଣଜନ୍ତୁ ଲୁଚନ୍ତି ।

ବେଶି କାମ ଲାଗିଗଲା ଚାଷ-ବାସ ଭଲ ପାଇଁ । ମୁଣ୍ଡାମାଝିମାନେ ବୁଦ୍ଧିଦେଲେ, ସମସ୍ତିଙ୍କ ବୁଦ୍ଧି ଅଭିଜ୍ଞତା ଠୁଳ କଲେ, ଲୋକଙ୍କୁ ମତେଇଲେ, ଗାଁ ଗାଁକର ଲୋକେ

ଏକାଠି ମିଶି କାମ କଲେ । ନାଳରେ କେଉଁଠି ମୁଣ୍ଡା (ବନ୍ଧ) ବାନ୍ଧଲେ ସୁବିଧାରେ ବଡ଼ ଚକଡ଼ାରେ ପାଣି ମାଡ଼ିବ, ତାକୁ ନିର୍ଦ୍ଦିଷ୍ଟ କରିବାକୁ ପଡେ ଯେପରି କନ୍ଧମାନଙ୍କର ସ୍ୱାଭାବିକ ଜ୍ଞାନ ଥାଏ । ଶାଳଖୁଣ୍ଟ ପୋତି ଶାଳଗଛ ପାଟି କାମୁଡ଼ା ପରି ଭିଡ଼ ଦୁଇ ବାଡ଼ ଭିତରେ ବଡ଼ ବଡ଼ ପଥର ପକାଇ ସେମାନେ ବନ୍ଧ ବାନ୍ଧୁଥାନ୍ତି, ପାଣି ବାଟ କାଟି କାଟି ପାଣିକୁ ଗଡ଼େଇ ଗଡ଼େଇ ନାଳ ଖୋଳୁଥାନ୍ତି । କେତେ ବଗିଚ୍ଚ, କେତେ ବିଲ ବାହାରିଲି, ମାଟି ଖୋଳି ଖୋଳି ଚିପକୁ ଖାଲ କରି କରି ବିଲ କଲେ । ପୋଡ଼ୁ ଉଠିବା ପାହାଡ଼ ଢାଲୁରେ ତଳୁ ଉପରଯାକେ ପାହାଚ ପାହାଚ କରି କାଟି ପଥର-ବାଡ଼ା ଦେଇ କ୍ଷେତ କଲେ, ଦି'ପାହାଡ଼କୁ ଯୋଡ଼ି ବନ୍ଧ ପକେଇ ବଡ଼ ବଡ଼ ବନ୍ଧ କଲେ, ତହିଁରୁ ଚାଷ କ୍ଷେତକୁ ପାଣିନାଳ କାଟିଲେ, ପୋଖରୀ ଖୋଳିଲେ, ଲାଗିଲା ବର୍ଷକୁ ବର୍ଷ କାମ । ପ୍ରଧାନ ଶତ୍ରୁ ହୋଇଥାନ୍ତି ହାତୀପଲ, କ୍ଷେତ ଉଜାଡ଼ନ୍ତି, ମଣିଷ ମାରନ୍ତି, ଘର ଗାଁ ଭାଙ୍ଗି ପକାନ୍ତି ।

ସେମାନଙ୍କ ସାଧକଲା ଟାଂଗ୍ରା ମୁଣ୍ଡାମାଝି । ଫସିଦିନ ହେଲା, ହାତୀ ଅଳ୍ପ ଥା'ନ୍ତି, ଆଠ ଦଶପଟ, ବହୁତ ଲୋକ ଠୁଳକରି ଢୋଲ ଟମକ ପିଟି, ନିଆଁହୁଳା ଦେଖାଇ ବନଗାଧ ତଡ଼ ତଡ଼ ନେଲା, ପର୍ବତ ସେକରେ ଫଳିଗ୍ରାମ ଘାଟିବାଟ ଡିଆଁଇଁ ତଡ଼ିଦେଇ ଆସିଲା । ତା'ପରେ ସେମାନେ ଲାଗିପଡ଼ି ସୀମା ଆରପଟୁ ହାତୀ ଆସିବା ବାଟରେ ପାଞ୍ଚପୁରୁଷ ଗଭୀର ପ୍ରକାଣ୍ଡ ଗୋହିରୀ ଖୋଳିଲେ, ପନ୍ଧଆଡ଼େ ଯେଉଁଠି ଖୋଲା ଥିଲା ଓ ଯେଉଁ ଲା ଭିତରକୁ ଅତଡ଼ା ଢାଲୁ ହୋଇ ଗଡ଼ିଥିଲା । ଅତଡ଼ାକୁ କାଟି ଖାଖ କାନ୍ଥ କଲେ । ହାଡ଼ଭଙ୍ଗା ପରିଶ୍ରମ ପଡ଼ିଲା । କିନ୍ତୁ ହାତୀ ଆଉ ପଶିଲେ ନାହିଁ । କ୍ଷେତବାଡ଼ ବଢ଼ିଲା, କଦଳୀ, ଆମ୍ବ, ପଣସ, ସପୁରି, କମଳା, ନାନା ଫଳଗଛ ଲାଗିଲା । ଫସଲ ବଢ଼ିଲା । ଗାଁ ବଢ଼ିଲା । ବଢ଼ି ଲାଗିଲା କମ୍ହାର, ବଢ଼େଇ, କୁମ୍ଭାର, ତନ୍ତୀ ଆଦି ଗା ପାଇଟି-ଆଳଙ୍କର ନାନା କାମ । ବାଘ ଧରେ, ରୋଗ ଗ୍ରାସେ, ପିଲା ଜନ୍ମହୁଅନ୍ତି, ମରନ୍ତି ରୋଗୀ ଆଉ ବୁଢ଼ା । ସୁଖେ ଦୁଃଖେ ଜୀବନ ଗଡ଼ିଯାଉଥିଲେ ।

ପଦାରୁ ଦିଶେ ଅନ୍ଧାର, ପର୍ବତ, ବଣ, ଗୋଟାଏ ନିଜକଲା ଦୁନିଆଁ ।

ବାଘ୍‌ବଂଶ କାନ୍‌କଟା କୋଲିଆ-ସେଠ୍ । ସେଇଟା ତା ନାଁ । ଜାତିରେ ଡମ୍ବ ।

ତା କୁଳର ବ ଗୋଣ ଅଛି, ତା ଗୋଣ ବାଘ, ତେଣୁ 'ବାଘବଂଶ' । 'କୋଲିଆସେଠ୍' ତା' ପୈତୃକ ପଦବୀ, ବାପ ଥିଲା ବାଘ୍‌ବଂଶ କେଚ (ଅର୍ଥାତ୍ କହିଛି)

କୋଲ୍‌ଆସେଠ୍ । କୋଲ୍‌ଆ ଅର୍ଥ ବଲୁଆ । ବଲୁଆ ବଡ଼ ଚତୁର । ଅସମ୍ଭବ ନୁହେଁ ତା କଳାହାଣ୍ଡି ଦେଶର କେଉଁ ମହାରାଜା ତା'ର କେଉଁ ପୂର୍ବପୁରୁଷଙ୍କ ବିଚକ୍ଷଣ ବୁଦ୍ଧିରେ ମୁଗ୍ଧ ହୋଇ ସେ ପଦ ଦେଇଥିଲେ, ବାପ ଇଚ୍ଛାରେ ତା ନା ରଖିଥିଲା କାନ୍‌କଟା । କାହିଁକି ?—ସେ ନାହିଁ କହିବାକୁ । ହୁଏତ ସେ ଆଶା କରିଥିବ, 'ମୋ ପୁଅର ବୁଦ୍ଧି ବିଚକ୍ଷଣ ହୋଇଥାଉ । ବୁଦ୍ଧିରେ ସେ ସମସ୍ତିଙ୍କର କାନ କାଟୁ ।'

ଧନ ନାହିଁ, ସମ୍ପତ୍ତି ନାହିଁ, ମଣିଷ ବୋଲି ଦେହଟିଏ ଅଛି, ବସ୍ତ୍ର ଭରଣ ବି ହୋଇନାହିଁ, ସେ ହେଲେ କହେ "ବିଚରା ତମ୍ବୁଟିଏ ।" ବିଭା ହୋଇଥିଲା, ଗଣିବ ଦେଖି ଝିଅଟା ଛାଡ଼ି ପଳେଇଲା, ଆଉ ଜଣକୁ ଗଲା, ସେ ଆରକ ପଗଣ୍ଡା (କ୍ଷତିପୂରଣ) ଟଙ୍କା ବି ଦେଲା ନାହିଁ, ମାଗିଲାରୁ ଦଲବଲ ଘେନି ଠେଙ୍ଗା ଉଞ୍ଚେଇଲା । ବିଚରା ତମ୍ବୁଟିଏ । ସେ ଜାଣିନାହିଁ ଏହି ତମ୍ବୁ ଜାତିର ଗୋଟିଏ ଇତିହାସ ଅଛି, ସେହିମାନେ ଏଠୁ ଉଠି ଇଜିପ୍‌ଟ ଯାଇଥିଲେ । ସେଠୁ ହେଲେ ୟୁରୋପ୍‌ରେ ଇ' ଜିପ୍‌ସୀ, ଆମେରିକାରେ ଜିପ୍‌ସୀ । ହଙ୍ଗେରି ଦେଶ ନା ସେ ଶୁଣିନାହିଁ, ସେଠି ସେମାନେ ନିଜକୁ 'ତମ୍' ନିଜ ଭାଷାକୁ 'ତମ୍‌ଣି' ବୋଲି କହନ୍ତି, "ଜାନେସ୍ ତୋମାନେସ୍ ?" "ଜାଣିଛ ଜିପ୍‌ସୀକୁ ?" "ମେ ଜାନାବ୍" (ମୁଁ ଜାଣେ) । କହନ୍ତି "କୋନ୍ ଆବେଲ୍ ?" (କିଏ ଆସୁଛି ?) "କାଏ ଜାନେମ୍ ?" (କୁଆଡ଼େ ଯାଉଛ ?), ଆଉ ମନୁସ୍, ମୁର୍ ର (ମୋର), ଆମା'ର (ଆମର), ତୁମାର (ତୁମମାନଙ୍କର), ସ୍ବେର, ଓପ୍ରେ (ଉପରେ), ତେଲେ (ତଳେ), ଦୁଖା (କଷ୍ଟ), ଆଉ ଏକ୍, ଦୁଇ, ଡେନ୍ (ଡନ), ଷ୍ଟାର୍ (ସ୍ବର), ପାଜ୍ (ପାଞ୍ଚ), ଦଶ୍ (ଦଶ), ଜୁଗ, ୟାଖ୍ (ଆଖି), ପାଣି, କେଲି (ଖେଳ), ଲୋହାର (କମ୍ମାର) କେତେ ଓଡ଼ିଆ ଶବ୍ଦ । ସେହି ହଙ୍ଗେରି ବହୁତ ଦୂର, ୟୁରୋପ ବହୁତ ଦୂର ଏଠୁ ।

ସେ ଜାଣେନାହିଁ, ଆଶ୍ଚର୍ଯ୍ୟ ଲୋକ ତା ପୂର୍ବପୁରୁଷମାନେ, ଡର ଭୟ ନାହିଁ, ବୁଲିଛନ୍ତି ଏ ଦେଶରୁ ସେ ଦେଶ, ଯେଉଁ ଦେଶକୁ ଗଲେ ସେ ଦେଶକୁ ଆଦରିଛନ୍ତି, ଏବେ ବି ସେଠି ତାଙ୍କ କୌଳିକ ବୃତ୍ତି ବୁଲିବୁଲି ବିକାକିଣା, ବୁଣାବୁଣି କାମ, ବାଦ୍ୟକାର ବୃତ୍ତି, ଆଉ ସେଠି କେତେ ତାଙ୍କର ନୂଆ ନୂଆ ଧନ୍ଦା ।

ଲୋକେ ଏକା ସ୍ଥାନରେ ପୁରୁଷ ପରେ ପୁରୁଷ ବିତେଇଦିଅନ୍ତି, ପଛେ ଗର୍ବ କରନ୍ତି କେତେ କାଳର ତାଙ୍କର ପୁରୁଣା ମୂଳଦୁଆ ବୋଲି, ଜୀବନ ବଞ୍ଚାଇ ଯିବାରୁ ଉପାଦାନ ଖୋଜିନେଇ ଜୀବନକୁ ଉପଭୋଗ କରିବାକୁ ତମ୍ବୁ ତା'ର କୁଡ଼ିଆ ଗୋଟେଇ ପୋଟେଇ ଚାଲିଛି ଦେଶରୁ ଦେଶାନ୍ତର, ଚରି ବୁଲିବାକୁ ଆଖି ଆଗରେ ଲମ୍ବିଛି ସାରା ଦୁନିଆଁ, ଯେଉଁଠି ସୁବିଧା ମିଳିଛି ସେଠି ଅଟକିଛି, କୁଟୁମ୍ବ ମେଲେଇଛି, ସତେ ଯେମିତି ତା' ରକ୍ତରେ ରହିଯାଇଛି ବୁଲି ବୁଲି ଦେଖିବା ଓ ଦେଖିବାଲାଗି କୁତୂହଳ ।

କାନ୍‌କଟା ତା ପରିସ୍ଥିତି ଉପରେ ଆଖି ବୁଲେଇ ଦେଖିଥିଲା । ନର୍ଲା ମୌଜାରେ କୁସୁମ୍‌ଗୁଡ଼ାରେ ତା'ର ଜନ୍ମ । ଜମି ନାହିଁ, ମା' ବାପ ମଲେ, କାମଧନ୍ଦା ନାହିଁ, ଉପାସ ଭୋକରେ ବଢିଲା କେତେଦିନ । ଗଲା ମଦନପୁର, ରାମପୁର, ମୂଲଲାଗି ଚଲେ, ସଂସାର ବିଷୟରେ ଅଭିଜ୍ଞତା ବଢ଼ିଲା; କିନ୍ତୁ ମନ ଜାଣି ଜାଗିଣା ଭଲ ହେଲାନାହିଁ । ତା'ପରେ ଆମ୍ବଡ଼ୋଳା ପାଖ ବାଣଗୁଡ଼ା, ବଡ଼ ଉମ୍ର ବଢ଼ି, ସାହସ ବଢ଼ିଲା, ଆଶା ତେଜିଲା, କାହା କାମରେ ଯାଇ ଗୋରୁ ଗୁଳି ବୋହିଛି, କାହା କାମରେ ଯାଇ ମଦହାଣ୍ଡି ବୋହିଛି, କାହା ବରଗାରେ କରଜ ଅସୁଲ କରି ଆଣି ଦେଇଛି, କାହା କ୍ଷେତରେ ମୂଲ ଲାଗିଛି । ବିଭା ହେଲା, ସୁଖରେ ଘର କରିବ ଭାବିଥିଲା, ଭରସା ପଳେଇଲା, ଆଉ ମନକୁ ଦମ୍ଭ ଦେଇ ପାରିଲା ନାହିଁ, ଭଠପଡ଼ିଲା । ତା'ପରେ ଦିନେ ପୁଣି ଧରିଲା ସେ ବାଟ, ଏଥର ଦୂରରେ ସେହି ଘୋର ଅନ୍ଧାରି ମାଳ ଆଡ଼କୁ । ହାଣୁ କିଏ ହାଣିବ, ଖାଉ ବାଘ, ଗିଳୁ ସାପ, ଗୋଡ଼ରେ ଦଳିଦେଉ ବଣୁଆ ହାତୀ । କାନକଟା ବୁଲିଥାଏ, ମନରେ ତା'ର ଚିନ୍ତାଦିକ ନାହିଁ, ଯେତେବେଳେ ଭାବିଲେ ସେ ଅନୁଭବ କରେ—ସେ ଅଛି, ଜୀବନରେ ଅଛି, ସେତିକି ଯଥେଷ୍ଟ, ତା'ପରେ ଆଉପଛ କଥା ଆଉପଛ ବୁଝୁ । କୌତୁକରେ ବେଳେବେଳେ ଭାବେ, ଧରାଯାଉ ସେ ନାହିଁ । ନାହିଁ ତ ନାହିଁ । ଭାବିବାକୁ କିଛି ନାହିଁ । ତେବେ ବି ନିର୍ଭିନ୍ତ ।

ଖାଇବାକୁ ତା'ର ଚିନ୍ତା ନଥାଏ । କନ୍ଧ ଭାଷା ସେ ଜାଣେ । ଆଉ ବି ଜାଣେ, ଖାଇବାବେଳେ କନ୍ଧ ଘର ଦୁଆରମୁହଁ ଆଗରେ ପହଞ୍ଚିଗଲେ ମାଗିଲେ ମୁଠିଏ ମିଳିବ, ଉପାସ ଥିବା ଲୋକ ନଖାଇ ଅପେକ୍ଷା କରିଥିବାଯାକେ କନ୍ଧ କିନେ ଖାଇବ ନାହିଁ । ରାତି ହେଲେ ଯେ କେଉଁ ଗାଁରେ ରହିଯାଏ, ନହେଲେ ଅଟକେ ନାହିଁ ।

କନ୍ଧଠୁ ତା'ର କିଛି ତଫାତ୍ ଦିଶେ ନାହିଁ । କାଳିଆ ଧେଡ଼େଙ୍ଗା ତେଙ୍ଗା ଲୋକଟିଏ, ମୁଣ୍ଡରେ ଫୁରୁଫୁରୁ ହୋଇ ବୋଝେଇ ବାଳ, ମୁହରେ ଝୁଡ଼, କାନ୍ଧରେ ଟାଙ୍ଗିଆ, ପିନ୍ଧିଛି ତୋର କୌପୁନୀ ।

ତଫାତ୍ ଦିଶେ ମୁହଁର ଭାବରେ କେମିତି କ'ଣ, ଫାଳ ଫାଳ ଡବଡବ ଆଖିରେ ଭସିଲା ଭସିଲା ଚାହାଣି, ଆଉ ତଫାତ୍ ତା'ର ଆର୍ଯ୍ୟାନ୍ୟ ଭଙ୍ଗୀ, ସବୁବେଳେ ନଇଁ-ପଡ଼ିଲା ପରି ବିନୟ ଓ ନେହୁରା ଭାବ, ସେ ସତେକି ଆପେ ପ୍ରଚାର କରେ "ମତେ ଗୋଇଠା ମାର, ଛେପ ପକାଅ ଯାହା କର ମୋର ଛଳ ନାହିଁ, ମୁଁ ଟା କିଛି ବୁଝେଁ, ମୋର ଇଜ୍ଜତ୍ ନାହିଁ, ଖାଲି ଏତିକି ମାଗୁଣି—ମତେ ବଞ୍ଚିବାକୁ ସାହାଯ୍ୟ କର ।" ସେମିତି କଥା ବି ଗପେ ବେଳାଏ, କହେ "ତମର ଘୁଅ ମୂତ ଖାଇଚି । ମତେ ମୁଠିଏ କି ମଧିଏ ଖାଇବାକୁ ଦିଅ, ଡର ନାହିଁ ।"

ଥରେ ଗୃଲୁ ଗୃଲୁ ଗର୍ଗିମାହାଁ ଗାଁରେ ତାକୁ ମୂହାଁସଞ୍ଜ ହୋଇଥିଲା । ସୁବଦନ କେଉଁଠି ଗାଁ ବି ଦଶି ନଥିଲା, ସଞ୍ଜରେ ଚଢ଼ିଯାଇଥିଲା ଗୋଟାଏ ଶାଳଗଛ ଉପରେ । କୌପୁନୀ ଖୋଲି ନିଜ ଅଣ୍ଟାକୁ ଗୋଟାଏ ମୋଟା ଡାଳରେ ବାନ୍ଧଦେଇଥିଲା, କାଳେ ଖସିପଡ଼ିବ ବୋଲି । ଅନ୍ଧାରରେ ବାଘ ରଡ଼ି ଓ ଦୂରରେ ହାତୀ ବୋବାଳି ସେ ଶୁଣିଥିଲା, ଅନ୍ଧାର ଓ ଜୁଳୁଜୁଳିଆ ପୋକ ଆଲୁଅ ଦେଖି ଜୀବନକୁ ଖାଲିପେଟରେ ଉପଭୋଗ କରିଥିଲା, ଆଉଦିନ ଖରା ହେଲାରୁ ଓହ୍ଲେଇ ବାଟ ଧରିଥିଲା । ପୁଣି କେତେ ଘାଟି ପର୍ବତ ବଣ ଗଡ଼ର ଝୋଲା ପାରହୋଇ ସଞ୍ଜକୁ ଗର୍ଗିମାହାଁର ଧୂଆଁ ଓହ୍ଲାଇଲା ପରି ଉହୁଙ୍କି ରହିଥିବା ପାହାଡ଼ ଦାଢ଼ ତଳେ ଗୃଉଦରେ କାଛ, ଆଶ୍ରା ପାଇଥିଲା ।

ସକାଳୁ ଉଠି ଅଳପେଇ ସେହି ପିଣ୍ଡାରେ ଶୋଇରହି ସେ ଜୀବନକୁ ଉପଭୋଗ କରୁଥାଏ । ଆଜି ବି ବଞ୍ଚିଛି । ବାଘ ଖାଇନାହିଁ । ତା' ମୁଣ୍ଡରେ ଏ ଘରର କୁକୁଡ଼ାମାନେ ଖୁମ୍ପୁଛନ୍ତି । ଟୋକୁଥାନ୍ତି. ଉକୁଣି ଖାଉଥାନ୍ତି । ଅଳ ଛଡ଼ାରେ ବସି ଟୋକାଟିଏ ବାହା ଟେକି ଟେକି ଧୂଆଁ କୁଣ୍ଡୁଛି, ତରତର କୁଣ୍ଡୁଛି. ପୂରଲ ପୂରଲ ଦେହ, ସୁନ୍ଦର । ନା, ସେ କେବେଣେ ଗୃନ୍ଧିବ ଧିଁ ନାହିଁ, ଯେ ଆତଥ୍ୟ ଦେଇଥିଲେ, ନଜର ଦେଲେ ମୁହୂର୍ତ୍ତିକେ ସେ ତାକୁ ହାଣି ରକ୍ତଚଡା ଯେନବେ । ଅଥଚ କାର୍ତ୍ତିକର ଏ କୁହୁଡ଼ିଆ ଶୀତୁଆ ସକାଳେ ଦେହଟା ଅଳସ ଲାଗୁଛି, ଭୁଖ ଖୋଜୁଛି—କେତେ କଥା ତ ଖୋଜିଲେ ମିଳେନାହିଁ । କାଲି ସଞ୍ଜରେ ଯେଉଁ ଜାଉ ମନ୍ଦିକ ଦେଇଥିଲେ ସେଥିରେ ମାଂସ ପଡ଼ିଥିଲା, କେଡ଼େ ସୁଆଦ ! ଆଜି ଆଉ ଦେବେ ନାହିଁ ସେ ଜାଣେ, ଖାଇବା ବେଳଯାଏ ଅଟକିବ କେଉଁ କାରଣ ଦେଖାଇ ?

ରାତିରେ ଏମାନଙ୍କ ସଙ୍ଗେ ଗପ କରିଥିଲା ବହୁତ ବେଳଯା'କେ । ବୁଝିଥିଲା, ଏ ଗୋଟିଏ ଅଲଗା ରାଜ୍ୟ, ବିଚିତ୍ର ରାଜ୍ୟ, ରାଜା ନାହିଁ, ଅଥଚ ଶାସନ ଚାଲେ, ରଇତ ନିଜେ ରାଜା, ନିଜେ ପ୍ରଜା, ଶାସନ ଚଳାନ୍ତି ଆଠଜଣ ମୁଣ୍ଡାମାଝି ।

ସବୁ କ'ଣ ଠିକ୍ ଗୃଲେ ? ବୁଢ଼ା ହନ୍ଦ୍ରିମାଝି ବୁଝେଇଥିଲା—ଗୃଲେ ଏକ ପ୍ରକାର । ସେ ଦୀର୍ଘଶ୍ୱାସ ପକାଇଥିଲା । କହିଥିଲା ସାତବର୍ଷ ତଳେ ଶ୍ରାବଣ ଶେଷରେ ଗଦରଗୁଡ଼ି ଗାଁ ପାଖ ଯୋଡ଼ାହାତୀ-ପଥର ଉପରେ ସେ ଶପଥ ନେବା କଥା, ସେ ଉଚ୍ଛ୍ୱାସ କଥା, ସେ ଆଶା ଆଉ ସ୍ୱପ୍ନ କଥା । ଆଗ ଆଗ ଗୃଲିଥିଲା କେଡ଼େ ଭଲ, ଆଠ ମୁଣ୍ଡାମାଝି, ସବୁ ଗାଁ ମୁଣ୍ଡିଆଳ, ସବୁ ରଇତ, ଏକ ମନ ଏକ ଆତ୍ମା, କେତେ ବୁଦ୍ଧି ଖେଳିଲା, କେତେ କାମ ହୁ-ହୁ ଗୃଲିଲା । ତା'ପରେ ସେହି ମୁଣ୍ଡାମାଝି ଧୀରେ ଧୀରେ ବଦଳିଗଲେ, ଆଗେ ଯେ ରଇତଙ୍କ ଗୃକର ପରି ଖଟୁଥିଲେ ସେ ହେଲେ ଅବା ସତ ସତ ମାଲିକ, ନିଜ ନିଜର ଧନ ଗୃର ଭରଯା, ଆହୁରି ବେଶି, ଗଦାଗଦା ସମ୍ପତ୍ତି, ଜମି, ଡୋଟା

ବନ୍ଧୁତ ବନ୍ଧୁତ, ସେବାକାସ୍ତ, ପାଖଲୋକ, ବିଶ୍ୱାସୀ ଲୋକ, ମଦ ମଉଜ୍ ମଜଲିସ୍ ବ ଓଣା ନୁହେଁ, ଲୋକବଳ ଯେନ ବାଟ ଚାଲନ୍ତି, ଭେଟି ନଅନ୍ତି, ପାତରଅନ୍ତର କରନ୍ତି, ଅନାନ୍ତି, କଥା କହନ୍ତି ମାଲିକ ପରି । ସତୋଟ ଥିଲା ରାହ୍ନଂଗା ପାଟମାଝି, ବୁଢ଼େଇଲା, ଗାଳିଦେଲା, ଶେଷରେ ମୁଣ୍ଡାମାଝି ପଦ ଛାଡ଼ିଦେଇ ତା'ଗାଁକୁ ଚାଲିଗଲା, ତା' ବଦଳରେ ବସିଗଲା ଡ଼ାମ୍ବୁ ମୁଣ୍ଡାମାଝି, ସାଧାରଣ ଚାଷୀଟିଏ ଥିଲା, ଏବେ ଦେଖ ତା'ପରି ସେ, ଦୁଇ ବର୍ଷରେ ଯେମିତି ସାଜ ସଜେଇଲାଣି ପଛକୁ କ'ଣ ନହେବ ?

"ଲୋକେ ରାହ୍ନଙ୍ଗା ପଟ ନେଲେ ନାହିଁ ?" କାନ୍‌କଟା ପଚାରିଲା । "ଲୋକେ ? ମୁଣ୍ଡାମାଝିଙ୍କ ଦେଖାଦେଖି ଗାଁ ମୁଣ୍ଡିଆଳ ଆପଣା ସ୍ୱାର୍ଥ, ଆପଣା ଲାଭ ଖୋଜିଲେ, ତାଙ୍କ ଦେଖାଦେଖି ଲୋକେ ବି । ସୁଖ ସୁବିଧା ମାଡ଼ିବସି ଥୋଡ଼ାଏ ହେଲେ ବଡ଼, ଲାଭ ଲୋଭ ଦେଖେଇ ଦେଖେଇ ଥୋଡ଼ାଏ ବଳୁଆ ଲୋକଙ୍କୁ ହାତରେ ରଖିଲେ, ନପାରିଲା ଲୋକ ଯାଉ ବଣକୁ ନୂଆ ଜମି ଖୋଜି । ଲୋକେ ତ ନଜେ ଲଞ୍ଜୁଆ ହେଲେ, ପାଟି ଫିଟେଇବ କିଏ ?"

"ଧରାଧରି ମରାମରି ଲାଗୁନାହିଁ ?"

ହନ୍ତ୍ରି କହିଲା, "ଆଗେ ଏତେ କଳିକଜିଆ ନଥିଲା, ଏବେ ଲାଗେ, ତେବେ ନପାରିଲା ଲୋକ ଆପଣା ବଳ ବୁଝିପାରିଲା ଲୋକ ପାଖେ ଆଡ଼େଇଯାଏ । ପାରିଲା ପାରିଲା ଭିତରେ ମାଡ଼ଗୋଳ ଲାଗନ୍ତି ନାହିଁ । ମୁଣ୍ଡାମାଝିମାନେ ଯେତେ଼ ଆପଣା ସ୍ୱାର୍ଥିକା ହେଲେ ବି ନିଜ ଭିତରେ କଳି ଲାଗନ୍ତି ନାହିଁ, ଜାଣନ୍ତି, ଯେମିତି ହେଲେ ସମସ୍ତିଙ୍କର କ୍ଷତି, ଡର ବି ଅଛି, ରାଜ୍ୟ ନରହିଲେ ନିଜ ସୁଖସୁବିଧା ବି ରହିବ ନାହିଁ, ରଜା ତ ଆଗେ କେତେ କେତେ ଥିଲେ, ଡରଥାଏ କାଳେ ପଦାରୁ କେଉଁ ରାଜା ଆସି ରାଜ୍ୟ ମାଡ଼ିବସିବ । ତେଣୁ ସେମାନେ ନିଜ ଭିତରେ କଳି ଲାଗନ୍ତି ନାହିଁ ।"

"ଲୋକେ ଏ ମୁଣ୍ଡାମାଝିମାନଙ୍କୁ କାହିଁକି ସହୁଛନ୍ତି ମାଝି ? ସେମାନେ ମନ କଲେ କ'ଣ ଏମାନଙ୍କୁ ତଡ଼ି ଆଉ ଭଲଲୋକ ବାଛି ମୁଣ୍ଡାମାଝି କରନ୍ତେ ନାହିଁ ?"

"ସେମିତି କେବେ ଆଗରୁ ହେଇନାହିଁ । ତା'ଛଡ଼ା ସେମିତି କହିବେ ବା କେଉଁ ଲୋକ ? ସବୁ ଗାଁରେ ତାଙ୍କ ପଟିଆ ଲୋକ ଅଛନ୍ତି, ଅନ୍ୟମାନଙ୍କ ଅପେକ୍ଷା ଯେ ଯେତେ ସୁଖ ସୁବିଧା ପାଇଛି ଜାଣ ସେ ତାଙ୍କ ଲୋକ, ତା'ର ବେଶି ବଳ । ତେବେ ମୋଟାମୋଟିରେ ସିନା ମୁଣ୍ଡାମାଝିମାନଙ୍କର ରାଜୁତି ଚାଲିଛି, ଲୋକେ କ'ଣ ଆଗଠୁ ଖରାପ ଅଛନ୍ତି ଯେ ମାଡବେ ? ସମସ୍ତେ ଖଟି ଖାଇବା ଲୋକ, ଯେ ଯାହାର ଯେମିତି ହେଲେ ଚଳିଯାଉଛି, ଅଧର୍ମ ଅନୀତି ତ କରନ୍ତି ନାହିଁ, କିଏ ଗରିବ, କାହାର ଭଲ ଚଳେ । ଏତିକି, ସମସ୍ତିଙ୍କର ଦିନୁଦିନ ଆହୁରି ଆହୁରି ଭଲ ହେଇଥାନ୍ତା, ହେଲା

ନାହିଁ । ଆରମ୍ଭ ହେଉ କାମଟା ଅଟକିଗଲା, ବେଶି ଭାଗ ଲୋକ ଯେଉଁ ଗରିବକୁ ସେହି ଗରିବ । ହଉ, ସବୁଦିନେ କନ୍ଧଲୋକକୁ ମାହାପ୍ରଭୁ ଭରସା, ଯେଉ ବୁଝିବ । ତେବେ ଆମେ ଯାହା ହଉ ଆମେ ଜାଣ ନଜେ ରଜା, ମୁଣ୍ଡମାଳି ଯେମିତ ହଉନ୍ତୁ ସେ ଆମର ଲୋକ ତ, ଅମେ ବସେଇଚୁଁ, ଆଉ କଏ ?"

ବୁଢ଼ା ଆଡୁଗ ଗପିଥାନ୍ତା, ତା ପୁଅ ଟୋପା ଥିଲା, କହିଲା, "ଥାଉ ଥାଉ, ଏତେ କଥା କାହିଁକି ?"

କାନ୍ଥୁ କାନକଟା ଆଡୁଗ କଥା ଖବର ଗଣ୍ଡିକରିଥିଲା । ଏମାନେ ପଦା ଦୁନିଆଁ ସଙ୍ଗେ ସମ୍ପର୍କ ରଖିନାହାନ୍ତି । କେବେ ଦଳ ହୋଇ ଯୋଡ଼ାଏ ଲୋକ ଜିନିଷ ନେଇ ଯାଆନ୍ତି, ବହୁତ ଦିନ ଲାଗେ, ପଦାରେ ବଦଳେଇ ଦରକାରୀ ଜିନିଷ ନେଇ ଫେରନ୍ତି, ଗାଁ ଗାଁକେ ବଣ୍ଟା ହୁଏ, ତା ବି ଅଳ୍ପ ପ୍ରକାର, ଅଳ୍ପ ଜିନିଷ । ପୁଣି ଭୋଗ କରିବାର ନୂଆ ନୂଆ ପ୍ରକାର କେବେ ଦେଖିନାହାନ୍ତି, ଖା'ନ୍ତି ପିଅନ୍ତି ଚାଲନ୍ତି, କାମ କରନ୍ତି, ସେତିକି । ବଣ ସଫା କରି ବସିଲେ ଜମି ପଡ଼ିଛି କାହିଁକା କାହିଁ, ଲୋକ ନାହାନ୍ତି । ଚଳିବାକୁ ଜଳବାୟୁ କିଛି ଖରାପ ନୁହେଁ, ସବୁଠି ଯେମିତ, ମାହାଡ଼ି ଇଲାକାରେ, ଏଠି ବି ସେମିତ, ବରଂ ଖରାଦିନେ ସେତେ ତାତି ନାହିଁ, ଶୀତଳ ।

ସେହି କଥା ଭାବୁଥିଲା କାନ୍‌କଟା, ନିଜ ପାଇଁ ସ୍ୱପ୍ନ ଦେଖୁଥିଲା ।

ଉଠିପଡ଼ିଲା, ବିଦା ହେଲା, ବାଟ ଧରିଲା ।

ଘାସ ଅରମା ବଣ ପର୍ବତ ଉପରେ ମଡ଼ା ବାଟ ପଡ଼ିଛି, ଘଞ୍ଚ ବଣ, ମାଡ଼ିଆସିଛି, ଘୁଷିଆସିଛି, ତଥାପି ଅଛି ବାଟ । ଭାବୁଥାଏ, ଅଧୁର ପରି ମଣିଷ ଜାତି, ସେତେ ବଣ ଥାଉ ତା ଲୋଡ଼ା ଥିଲେ ସେ ବାଟ ଫିଟାଏ । ସତେ ତ ! ନିଜକୁ ବଳଦେବାକୁ ଆଡୁଗ କେତେ କଥା ବି ତା ମନେପଡ଼ୁଥାଏ । ଏ ଅରଣ୍ୟ, କୀଟପତଙ୍ଗଠୁଁ, ଗଛବୃଛଠୁଁ ବଡ଼ ବଡ଼ ଜନ୍ତୁଯାକେ ସମସ୍ତେ ଏଠି ତାଙ୍କ ଆଧାର ପାଆନ୍ତି । ସେ କ'ଣ ପାଇନାହିଁ ନା ପାଇବ ନାହିଁ ? ଗଳାବେଲ ସମସ୍ତିଙ୍କର ଅଛି, କଏ ରଖିପାରିବ ? ସେଥିପାଇଁ କଏ ଆଗରୁ ଭାବେ ?

କରେ କରେ ଠାଏ ଠାଏ ମହାବଳୀ ପର୍ବତମାନ, କେଉଁଠି ଖାଡ଼, କେଉଁଠି ଡାଲୁ ଲମ୍ବିଛି, ଥାଉନ୍ତୁ ସେମାନେ । ଅଳ୍ପ ଉଚ୍ଚ ଘାଟିବାଟେ ସେ ଉଠି ଉଠି ଯାଏ, ଉପତ୍ୟକା ପରେ ଉପତ୍ୟକା, ସ୍ଥାନେ ସ୍ଥାନେ ପାହାଡ଼ ତଳରେ ଗାଁ । ସ୍ଥାନେ ସ୍ଥାନେ ପାହାଡ଼ ଡାଲୁରେ, ତଳେ, ଗହ୍ୱରରେ, କ୍ଷେତ । କନ୍ଧ ବୁଲୁଛନ୍ତି, କାମ କରୁଛନ୍ତି । ବସିଛନ୍ତି, ସେ ଚାଲିଛି, ଖାଲି, ଦିପହରେ ଖାଇବା ବେଳ ହେଲେ କେଉଁଠି ହେଲେ ପହଞ୍ଚିଗଲେ ହେଲା, ଗାଁ ନପାଇଲେ କପାଳ ।

ବଣ ସେ ବହୁତ ଦେଖିଛୁ ଆଗରୁ । ବଣର ଶୋଭା ଦେଖି ତା ଆଖିକି ଚମକ ଲାଗେ ନାହିଁ, ସବୁ ସହଜ ସ୍ୱାଭାବିକ ଲାଗେ । ହାଲିଆ ହେଲେ ଝାଳ ମାରିବାକୁ ଯେତେବେଳେ କେଉଁ ଗଛମୂଳେ ସେ ବସିପଡ଼ି ଦୂରକୁ ଅନାଏଁ, ସେତେବେଳେ ପ୍ରକୃତିର ସେ ଶୋଭା ଭିତରେ ନିଜ ଅଜଣାରେ ବୁଡ଼ିଯାଏ । କେତେ ରଙ୍ଗ ! କେଡ଼େ ସୁନ୍ଦର ସଜାସଜି ! କେଡ଼େ ବିଚିତ୍ର ! ମନେପକାଏ, ତା'ର ନିଜର ହୋଇ ଜମି ଥାନ୍ତା, ଘର ଥା'ନ୍ତା, ଘରଯା ଥା'ନ୍ତା, ବନ୍ଧୁ ଥା'ନ୍ତା, ସମାଜ ଥା'ନ୍ତା, କାହା ଉପରେ ତା ବଳ ଖଟନ୍ତା, ତା କଥା କାଟି କରନ୍ତା, କେହି ତାକୁ ବଡ଼ ବୋଲି ମାନନ୍ତେ, ସେ ପୂଜା କରନ୍ତା ! ପାତଳ କୁହୁଡ଼ି ପଡେ ଅବା ଖରାରେ ଜଳ ଜଳ ଉଭେଇଯାଏ, ପୁଣି ସେ ଦେଖେ ସେହି ବଣ ପାହାଡ଼, ଉପତ୍ୟକା, ଖାଲ ଖୋଲ ଆଉ ଝରଣା । ନାଃ, ଅଟକି ରହି ଦେଖିବାକୁ କିଛି ନାହିଁ । ପୁଣି ଅଚହ୍ନା ବାଟ ଡାକେ ।

ଗଦର୍‌ଗୁଡ଼ି ଗାଁରେ 'ଗୁଡ଼ି' ଘର ପିଣ୍ଡାରେ ମୁଣ୍ଡାମାଝିମାନେ ବସିଥିଲେ, ଜ୍ରାମ୍ବା, ରୁମ୍ବୁଡ଼ି, ଡଟିଲି, ଡଟ୍‌କା, ସୁଡ଼ଯା, ଟାଂଗ୍ରା, ଉକ୍‌ଡୁକୁଟି, ଦଶାଙ୍ଗା । ଜ୍ରାମ୍ବା, ଡେଙ୍ଗା, କଲା, ଚନ୍ଦା ବଲିଲି ବାଲିଲି, ବୟସ ପଚିଶ ହେବ, ରୁମ୍ବୁଡ଼ି ମଦ ପିଇ ପିଇ ଢୋଲ ହୋଇଯାଇଛି । ସମସ୍ତେ ମଦ ମାଂସ ଖାଇ ଖାଇ ଥାକୁଲି ଥାକୁଲି, ଟାଂଗ୍ରା ବି ବଢ଼ିଉଠିଛି ଏକା ମସ୍ତକେ, ଖାଲି ଦଶାଙ୍ଗାର ଦେହରେ ଲାଗିନାହିଁ, ଯେମିତି କି ସେମିତି । ସମସ୍ତିଙ୍କର ଜକ ଜକ ଆଖି, ଦର୍ପିଷ୍ଟ ଠାଣି । ଧନଯାକ ବୈଠକ ଥିଲି, ସେମାନେ ରୁଣ୍ଡି ଛନ୍ତି । ଏବେ ବୈଠକ ଘନ ଘନ ବସେନାହିଁ, କେବେ ମଝିରେ ମଝିରେ ଏକାଠି ହୁଅନ୍ତି, ରାଜ୍ୟର କଥା ପଡ଼େ—କେହି କେହି ଗାଁ ମୁଣ୍ଡିଆଲ ଆସନ୍ତି, ବିବାଦ ତୁଟେ । ବେଶୀ ଆଲୋଚନା ପଡ଼େ— କିଏ କେଉଁଠି ମେଡ଼ୁଆର '(ଅମାନିଆ) ହେଲେ, ମୁଣ୍ଡାମାଝିମାନଙ୍କ ବିରୁଦ୍ଧରେ କ'ଣ କହିଲେ । ଶାସ୍ତି ଦେଇ ପ୍ରତିବାଦର ମୁହଁ ବନ୍ଦ କରିବା ହିଁ ପ୍ରଧାନ କାମ, ସେ ବିଷୟରେ ସବୁ ମୁଣ୍ଡାମାଝି ଏକମତ । ଆଗପରି ଆଉ ସଙ୍ଗମ ନାହିଁ, ମଦହାଣ୍ଡି ସବୁବେଳେ ଠିଆ, ମଝିରେ ମଝିରେ ଅଳ୍ପ ଅଳ୍ପ ପିଇ ନିଅନ୍ତି । ଧନଯାକ ଭୋଜି, ରାତିରେ ଆହୁରି ମଦ, ଆହୁରି ଫୂର୍ତ୍ତି । ମୁଣ୍ଡାମାଝିମାନଙ୍କ ବୈଠକବେଳେ ଯାହା ପଦାର୍ଥ ଦରକାର ପାଳି କରି ଗାଁ ମୁଣ୍ଡିଆଲମାନେ ଯୋଗାଡ଼ କରନ୍ତି । ବ୍ୟବସ୍ଥା ତା'ର ଆପେ ଆପେ ।

ବେଳ ଢଳିଯାଏ ଅସ୍ତାନ୍ ବାଟକୁ, ସକାଳୁ କେତେ ଆଲୋଚନା ସରିଯାଏ, ବାଘବଣ କାନ୍‌କଟା କୋଲିଆ-ସେଠ୍ ଡମ୍ ସେମାନଙ୍କ ଆଗରେ ଆସି ଠିଆହେଲା,

ଧାନ୍ଦରେ କୁଟାଟାଏ କାମୁଡ଼ି ଭୂଇଁରେ ଲମ୍ବି ଯାଇ ମୁହଁକୁ ତଳକୁ ମାଡ଼ି ବକଳ ହୋଇ ମିନତି କଲା—

"ମାହାପ୍ରୁ ମାନେ, ତୁମର ଗୁ' ମୂତ୍ ଖାଉଚ, ମୋର କଥା ଶୁଣ ।"

"କଏରେ ତୁ ?" ବଡ଼ସା ପଚାରିଲା ।

ମୁହଁମାଡ଼ି ପଡ଼ିରହି କାନ୍‌କଣ୍ଟା କହିଲା, "ତୁମେ ଯେ ଆଠ୍ ମାହାପ୍ରୁ, ଆଠ୍ ରଜା, ତୁମେ ଆଠ୍ ପଢକୁ ମୁଁ ଗୁଟେ ମାଇକିନା—"

ସେମାନେ ଟହ୍ଲ ଟହ୍ଲ ହସିଲେ, କହିଲେ, "ଉଠ୍ ଉଠ୍ ।"

ସେ କହିଲା, "ଉଠିବି ନାହିଁ ମାହାପ୍ରୁ, ଆଗ ମୋର ଗୁଟେ କଥା ଶୁଣ, ମୁଁ ତମର୍ କୁକୁର୍ ହେବି, କୁକୁର୍, ବଡ଼ ଦୂରରୁ ଆସିଚି, ତମ ରାଜ୍ୟରେ କୁକୁର୍ କଣ ମତେ ରଖିବ ? ପୋଷିବ ପାଳିବ ?"

"ହଉ ହଉ, ଆଗ ଠିଆ ହ", ସେ ଠିଆହୋଇ ହାତ ଯୋଡ଼ିଲା, ଟାଂଗ୍ରା ପଚାରିଲା, "ତୁ ଏଠି କି କାମ କରବୁ ?"

"ମୁଁ ତୁମର ସେବକ ହେବି ମାହାପ୍ରୁ, ଯାହା କାମ୍ ବରଗିବ ମରବି ପଛେ କରିବି । ତମ ଗୋଡ଼୍ ଘଷିବି, ତମୁକୁ ଏଇଟା ସେଇଟା ଯାହା ଜିନଷ କହିବ ଆଣିକରି ଦେବି, ତମ ପାଇଁ ଦେଶ ଦେଶ ବୁଲିବି, ଡଙ୍ଗର ତମିବି, ଯାହା କହିବ ସବୁ କରିବି । ତୁମେ ଖାଇସାରି ଅଇଁଠାପତ୍ର ଫୋପାଡ଼ିଦେଲେ ଗୁଣ୍ଡି ଗୁଣ୍ଡି ଖାଇ ବଞ୍ଚିବି—"

"କାହିଁକି ? ତୁ ଚାଷ କରିପାରିବୁ ନାହିଁ ?" ତୁମ୍ବ୍‌ଡ଼ି ପଚାରିଲା ।

"କାହିଁକି ନପାରିବି ? ଜମି ଖଣ୍ଡେ ଦେଖେଇଦେଲେ ଚାଷ କରିବି । ଜାଗା ଦେଖେଇଦେଲେ ଘର ତୋଳି ରହିବି । ତୁମେ ଚାହିଁଲେ ମୁଁ ଖଟ ବୁଣିବି, ହାଣ୍ଡି ଗଢ଼ିବି, ବାଉଁଶରେ ଡାଲା ଟୋପାମାନ ବୁଣିଦେବି, ବାଇଦ ତିଆରି କରିବି, ବାଇଦ ବଜେଇବି, ମହୁରି ଫୁଙ୍କିବି—"

କଥା ଅଟକେଇ ଉକ୍‌ଡ଼ୁକୁଟି ପଚାରିଲା, "ଏତେ ହାଙ୍କି ଦଉଚୁ ଯେ, ତୁ ଜଣେ ଲୋକ, ଏତେ ଏତେ କାମ କେମିତି କରିବୁ ?"

"ଦେଖିବ ରଇଥା, ମଲାଯାକେ ସବୁ କରିବି । ହେଲେ, ଆଠ ନରପଢକୁ ମୁଁ ଗୁଟେ ମାଇ'ନା ଯେ ମାହାପ୍ରୁ, ତୁମେ ଲୋଡ଼ିଲେ ଆଉ ମଣିଷ୍ ଡାକିଆଣି ପାରିବି ନାହିଁକି ? କାମ ଦିଅ, ରହିବାକୁ ଜାଗା ଦିଅ, ଭୂମିବାଡ଼୍ ଦିଅ, ଯେତେ କହିବ ଯାଇ ଡାକିଆଣିବି । ମର୍ଦ୍ଦ, ମାଇ'ନା, କେତେ କେତେ । ତୁମ ଦେଶରେ ତ, ଜଣେ ଜଣେ

ହୋଇ ସବୁ କନ୍ଧ ରଜା, ତୁମେ ଆଠକଣ ସେ ରଜାଙ୍କର ରଜା, ଅଧଲ ନରପତ, ଗାଁ ଗାଁକେ କନ୍ଧମାନଙ୍କ ସେବାକାସ୍ତ କୁକୁର ହୋଇ ଡମ୍‌ମାନେ ପଡ଼ିରହିବେ, କେତେ ପାଇଟି କରିବେ, ଆମେ ଝଟି ଖାଇବା ଲୋକ ମାହାପ୍ରୁ, ଆମୁକୁ ରଖିଲେ ସଦାବେଳେ ଆମେ ତୁମ ସେବା କରୁଥିବୁଁ ।"

ଟାଂଗ୍ରା ଆଖି ମିଟିମିଟି କଲା, ମଦ ଢୋକେ ତାଳି ପିଇଦେଇ କହିଲା, "ଏତେ ଲୋକ ଆଣିବୁ ଯେ ତୁ ତାଙ୍କର କ'ଣ ହେବୁ ? ଡମ୍‌ମାନଙ୍କର ରଜା ?"

ଏତେ କଭ କାଢ଼ି କଭ କାମୁଡ଼ି ହାତଯୋଡ଼ି ମୁଣ୍ଡରେ ବାରମ୍ବାର ଲଗାଇ କାନ୍‌କଟା କହିଲା, "କି କଥା କହିଲ ମାହାପ୍ରୁ ! ମୁଁ ହେବି ସିନା କୁକୁର୍ ଭିତରେ କୁକୁର୍‌ଟାଏ ? ଆଉ ଅଧିକା କ'ଣ ?"

"ତେମେଗୁଡ଼ାକ ରହିଲେ ଆମର କ'ଣ ଏମିତ ଲଭ ହେବ ଯାହା ଏବେ ନ ହେଉଛି ?"

"ତୁମେ ଆଜ୍ଞା ଦେଲେ କହିବି ମାହାପ୍ରୁ । ଗୋରୁ ଜଗା, ମଣିଷ ଜଗା, ଜନ୍ତୁ ଜଗା, ଖବର ପଠିଆ, ବୋଝ ବୁହା, ମାଟି ହଣା ତଡ଼ା, କେତେ କେତେ କାମ ଆମେ ଆଦରି ନେବୁଁ, ତମେ ଆହୁରି ବେଳ ପାଇବ ବଡ଼ ବଡ଼ କଥା ଭାବିବାକୁ, କରିବାକୁ । ମୁଣ୍ଡାମାରି ଲେଉଡ଼ିହେବୁ, କୋଉ ଗାଁରୁ କୋଉ ଜିନିଷ ଆସୁ—ଆମେ ଧାଇଁଯିବୁ ବଣ ପର୍ବତ ହୁଣ୍ଡି ହୁଣ୍ଡି । ତୁମେ ଗଛତଳେ ବସ, ମଦ ପିଅ, ଧାଙ୍ଗ୍ରୀନାଟ କରୁଥିଅ, ମାତ । ଆମେ ଏମିତ ବାଇଦ ବଜେଇବୁ, ନ ନାଚିଲା ଲୋକ ନାଚିବ, ରକ୍ତ ଖାଲି ତାଧିକରି ଫୁଟିବ, ଆମ ଡମ୍ ବାଇଦ ଡାକ ଛାଡ଼ିବ, ଧାଂଡ଼ୀ—ଧାଂଡ଼ା, ଧାଂଡ଼ୀ—ଧାଂଡ଼ା, ଧାଂଡ଼ୀ—ଧାଂଡ଼ା—"

"ହେଲା, ଆଉ କ'ଣ ?" ଡ୍ରାମ୍ବା ପଚାରିଲା ।

"ଏ ରାଜ୍ୟ ବାହାରର ମଣିଷ ଏ ରାଜ୍ୟ ବାହାରର ଦେଶ ସବୁ ଆମୁକୁ ଜଣା । ସବୁ ବୁଲି ବୁଲି ଦେଖିଛୁଁ । ଆମେ ସବୁ ଖବର ଆଣି ଦେବୁ । ତୁମର ଜିନିଷ ପାଚୁଛି, ଖାଲି ସେହି ସେହି ଜିନିଷ, ପଦାରେ କେତେ ନୂଆ ନୂଆ ଭଲ ଜିନିଷ । ତୁମେ ପଦେ ଖାଲି କହିଦିଅ, ଆମେ ଏଣର ବଳକା ଜିନିଷ ପଦାକୁ ବାହାର କରିବୁଁ, ତାକୁ ଦେଇ ବଦଳେଇ କେତେ ନୂଆ ନୂଆ ସୁନ୍ଦର ଜିନିଷ ଆଣି ତମୁକୁ ଦବୁ । କେତେ ରଙ୍ଗ ରଙ୍ଗର ଲୁଗା, କେତେ ଝକ ଝକ ଦିଶୁଥିବ ଗହଣା, କେତେ ସୁଆଦିଆ ଖାଦ୍ୟ, ହାଣ୍ଡି ହାଣ୍ଡି ଟାଣୁଆ ମଦ, ଅଫିମ, ଗଞ୍ଜେଇ, ତା ମହୁଳ, ତା ସୁଆଦ ଏମାନେ ଚାଖିନାହାନ୍ତି, ଆଉ ଅଇଗୁ ଏଠି ଯେ, ଲୁଣଟିକଏ ମିଳିବା କେଡ଼େ କଷ୍ଟ, ଲୋକ "ଲୁଣ କଣିଗଲେ" କଇ ଲେଉଟିବ କ ନାହିଁ ଜଣାନାହିଁ । ଆମେ ବସାଇ ଜାଣୁ ହାଟ,

ଦୋକାନ, ଯେତେବେଳେ ଯେଉଁ ଜିନିଷ ଖୋଜ ମିଳିବ । ଆମେ ଘର ଘର ବୁଲି ଲୋକଙ୍କ ପାଖେ ଜିନିଷ ପହଞ୍ଚେଇ ଦ ଆସୁ । ତୁମେ ଗୋରୁ ମଇଁଷି ମାଉଁସ ଭଲପାଅ, ଏ ଦେଶରେ କେତେ ବା ଥିବେ ! ତୁମେ ଲୋଡ଼ିଲେ ପଦାରୁ ଆଣି ଆମେ ଭରିଦେବୁଁ, ଯେତେବେଳେ ଖୋଜିବ, ମଦ ମାଉଁସ । ଆମେ ଥିଲେ ତମର ଗୁ' ମୂତ୍ର ଖାଇ ତମର ସେବାରେ ଲଗିଥିବୁଁ ମାହାପ୍ରୁ, ଆମେ ତମର ଦେଶର ସେବାକାରୀ ହୋଇ ରହିଥିବୁଁ ।''

"ହଉ ଯା, ତେଣେ ଆ, ଡାକିବୁଁ'', ଡ୍ରାମ୍ବା କହିଲା ।

ସେ ଯିବା ଉତ୍ତାରୁ ଲଗିଗଲା ସେ ବିଷୟରେ ଆଲୋଚନା । ଏ ପ୍ରକାର ସେମାନେ ଆଗରୁ ଦେଖିନଥିଲେ । ସମସ୍ତେ ଏକମତ, ଲୋକଟା ଭଲ, ତା ହୃଦୟଟା ଜଳଜଳ ହୋଇ ମୁହଁରେ ଦିଶୁଛି, ପରିଷ୍କାର ହୋଇ କଥାରେ ଫୁଟୁଛି । ତା କଥାରୁ ଅନୁଭବ ହେଲା, ଏମିତି 'ସେବକ' ତାଙ୍କର ଦରକାର, ସବୁ କାମ ତୁଲେଇବ, ହାତ-ବାରସି, ବେଣି କରୁ ତା'ର ଲୋଡ଼ାନାହିଁ । କିନ୍ତୁ ଖାଲି ଜଣେ ସେବକ ହେଲେ ଚଳିବ ବା କେମିତି ? ଆଠ ମୁଣ୍ଡମାଝିଙ୍କ ପାଖେ ଅନ୍ତତଃ ଆଠଜଣ ଲୋଡ଼ା । ଆସନ୍ତୁ ମଣିଷ, ବହୁତ ଜମି ପଡ଼ିଛି । ଆଗ ପନ୍ଦରଟା ପରିବାର ଆସନ୍ତୁ । ପଛେ ଭଲ ଜଣାଗଲେ ଆଉ ଲୋକ ଆସିବେ । କୁଷ୍ଠାମି କଲେ ଏତେ ଅଳ୍ପ ବାହାରିଆ ଲୋକ ବଳେଇଯିବେ ନାହିଁ, ମୁଣ୍ଡକାଟି ଦଣ୍ଡଦେବାକୁ କେତେ ଡେରି ହେବ ?

ଏ ଲୋକଟା ରହିବ କେଉଁଠି ?

ଇକ୍‌ଡ଼ୁକୁଟି ମୁଣ୍ଡମାଝି ଆଗ ବଳାପଡ଼ି କହିଲା, "ରହିଲେ ରହୁ ଆମ ଗୁଡ଼୍‌ଡୁଙ୍ଗି ଗାଁରେ, ଗାଁ ସେମୁଣ୍ଡେ ବଡ଼ ଜାଗା ଅଛି, ଅଲଗା ହୋଇ ଆଉ ଗୋଟାଏ ଗାଁ ବସି-ପାରିବ, ତା ସେପାଖେ କୁପ୍ଲି (ସାନ ପାହାଡ଼) ଆରକାନ୍ଥ ବଡ଼ ଖାଲି ଅଛି, ବଣ କାଟିଲେ ଯେତେ ଇଚ୍ଛା ଜମି, ମନ ହେଲେ କର ଖାଉ ।''

କାନ୍‌କଟାକୁ ଡକରାପଡ଼ିଲା । ଦଳର ନିଷ୍ପତ୍ତି ଶୁଣାଇ ଦିଆଗଲା । ପୁଣି ଲମ୍ବ ହୋଇ ସେ ଗୋଡ଼ତଳେ ପଡ଼ିଲା ।

''କି ପଦବୀ ଦିଆହେବ ତତେ ?''

''ପାଟ-ବାରିକ ଡାକ ମାହାପ୍ରୁ ।"

''ହଉ, ପାଟ୍-ବାରିକା ।''

କାନ୍‌କଟା ନଜର ସୌଭାଗ୍ୟକୁ ବିଶ୍ୱାସ କରିପାରିଲା ନାହିଁ । ଜଣା ଅଜଣା ଦେବତାମାନଙ୍କୁ କୃତଜ୍ଞତା ଜଣାଇ ସେ ବଡ଼ବଡ଼ ହୋଇ କହୁଥାଏ, "ମାହାପ୍ରୁ, ତୋ ଦୟା ।" କାଲି ଥିଲା ସେ ବାଟର ବୁଲା କୁକୁର, ଆଜି ସେ ଗୁଡ଼୍‌ଡୁଡ଼ି ଗାଁର ରଇତ, ଅଜଏ ଗଡ଼ ରାଜ୍ୟର ପାଟ-ବାରିକ, ଅଷ୍ଟ ମୁଣ୍ଡାମାଝି ମଣ୍ଡଳର ସେବାକାରୀ ! ପଦବୀ ଗଢ଼ି ଆଗରୁ ସେ ନିଜପାଇଁ ବାଟ କାଟିଥିଲା, ଆଣିବ ଆହୁରି ଅନେକ 'ବାରିକ', ସେମାନଙ୍କ କୃତଜ୍ଞତା ଅର୍ଜିବ, କାହାର କେବେ ଯଦି ତା ପ୍ରତି ଈର୍ଷା ହେବ ତେବେ ବି ସବୁବେଳେ ସେମାନଙ୍କ ଉପରେ ସେ, ପାଟ-ବାରିକ ।

ନିଯୁକ୍ତି ପରେ ଗଦର୍‌ଗୁଡ଼ିରେ ଥାଉ ଥାଉ ସେ ନିଜ କାର୍ଯ୍ୟଦକ୍ଷତାର ପ୍ରମାଣ ଦେଇଥିଲା । ଆଗ ଦେଖିଲା ମୁଣ୍ଡାମାଝିମାନଙ୍କ ମଦହାଣ୍ଡି ଖାଲି, ଗାଁକୁ ଧାଇଁଯାଇ ପାଟିକଲା, "ଏ କ'ଣ କରୁଛରେ ମା'ମାନେ, ବାପାମାନେ, ସେଠି ମୁଣ୍ଡାମାଝିମାନେ ବସିଛନ୍ତି, ତାଙ୍କ ତଣ୍ଟି ଶୁଖିଯାଉଛି, କେତେ ଲୋକ ଆସିବେ, କେତେ ବଡ଼ ସଭା, ଉ ମାଠିଆ ମଦ ସେଠି ଥୋଇଦେଇ ଆସ । ମଦ ବୁହାଳିଙ୍କ ଆଗେ ଆଗେ କାନ୍‌କଟା ଗ୍ଲିଲ୍ ଗ୍ଲିଲ୍ ଆସିଲା, କହିଲା, "ଆଣିଲି ।"

ସେମାନେ ବିରିଗି ନଥିଲେ । ଖୁସି ହେଲେ, ମୁଣ୍ଡ ହଲାଇଲେ । ଗୋରୁ ହାଣି ମାଉଁସ କରିବା କାମରେ ତା'ର ସେହିପରି ତତ୍ପରତା, ଛୁରୀ ଚଳେଇ ବତେଇ ବତେଇ କହୁଥାଏ, "ସେମିତି ନୁହେଁ, ଏମିତି, ଏମିତି, ଏ ଯେ ସୁନ୍ଦର କାମ ।"

ରାତିରେ ଭୋଜିବେଳେ ଲୋକଙ୍କୁ ସୁବିଧାରେ ବସେଇବା, ପରଷେଇବା, କୁକୁର ହୁରୁଡ଼େଇବା ଆଦି କାମରେ ବି ତା'ର ନୂଆ ନୂଆ ବୁଦ୍ଧି, ସେ ନିଜେ ସହଜରେ ଲୋକଙ୍କୁ କାମ ବରିଗେ, ତା କହିବା ବାଗ ଓ ଯୁକ୍ତି ବଳରେ ଲୋକଙ୍କ ହାତଗୋଡ଼ ଗ୍ରୁଆଁକୁ କାମକରେ, କେହି ଆପତ୍ତି କରେ ନାହିଁ । ଭୋଜଭାତ ସରିଲା, ଖୋଲା ଦାଣ୍ଡ ମଝିରେ ନିଆଁ ଜଳାହେଲା, ଜହ୍ନ ଥାଏ, ପାଖେ ଟୋକାଏ ପାଖେ ଟୋକୀମାନେ ହୋଇ ନାଚ ଆରମ୍ଭ ହେଲା, ବଡ଼ ବଡ଼ମାନେ ବି ମିଶିଗଲେ । କେତେ କନ୍ଧ ଚାପୁ ବଜାଉଥାନ୍ତି । କାନ୍‌କଟା ନିଘାକଲା, ତା'ପରେ ଜଣକଠୁଁ ଗୋଟାଏ ଚାପୁ ଓଟାରିନେଇ କହିଲା, "ଏଥର ଆଉ ପ୍ରକାରେ, ମୁଁ ଯେମିତି ବଜେଇବି ସମସ୍ତେ ସେମିତି ବଜାଅ, ଦେଖ ନାଟ କେମିତି ତେଜି ତେଜି ଗ୍ଲିଲବ ଯେ ।"

ବଜେଇ ଗ୍ଲିଲିଲା କାନ୍‌କଟା, କନ୍ଧ ସ୍ତ୍ରୀ-ପୁରୁଷ ତାରି ଉଛାଟ ତାଳରେ ଉନ୍ମତ୍ତ ହୋଇ ନାଚଲେ, ବେଳୁ ବେଳ ଆହୁରି, ଆହୁରି ।

ସକାଳୁ ତାକୁ ଗୁଡ଼୍‌ଡୁଡ଼ି ପଠେଇ ଦିଆଗଲା, ସଙ୍ଗରେ ଲୋକ ଗଲେ । ଉକ୍‌ଡୁକୁଟି ମୁଣ୍ଡାମାଝି ଅନ୍ୟଆଡ଼େ ଗଲା । ନିଜ ଗାଁ ଗୁଡ଼୍‌ଡୁଡ଼ି ଛଡ଼ା ଆଉ ଦଶ ଗାଁରେ

ତା'ର ଧନୋଟି ସ୍ତ୍ରୀ, ସନ୍ତାନ ଓ ଚାଷ, ଘର, ବାଣବଟିଗ୍ଲ । ଚାଷ ଓ ପିଲାଛୁଆ ବଢ଼ୁଛନ୍ତି, ତାକୁ ବୁଲିବୁଲି ବୁଝିବାକୁ ପଡ଼େ ।

ଗଦର୍‌ଗୁଡ଼ାଠୁଁ ଦ କୋଣରେ ଗୁଡ଼ଡ଼ୁଙ୍ଗ, ଯେଉଁଠି ରହିଲେ ପାଟ-ବାଣକା ମୁଣ୍ଡାମାଝିମଣ୍ଡଳ ବେଳେ ସୁବିଧାରେ ହାଜର ହୋଇପାରିବ, ଉକ୍ରୁଙ୍କ୍ରୁଟିର ପରାମର୍ଶ ବିଷୟରେ ନିଷ୍ପତ୍ତି ନେଲାବେଳେ ସବୁ ମୁଣ୍ଡାମାଝି ଏ କଥା ବି ଭାବିଥିଲେ । ଆଉ ଭାବିଥିଲେ, ଯେତେହେଲେ ଅଚହ୍ନା ଲୋକ, କୁଆଡ଼ର ନାହିଁ କୁଆଡ଼ର, କୌଣସି ମୁଣ୍ଡାମାଝିର ନଜରରେ ହିଁ ରହିବା ଭଲ । କ୍ଷେତ ପଦର ଝୋଲା ବଣ ପାହାଡ଼ ପାର ହୋଇ ଦେଢ଼କୋଶ ଖାଲି ଚଢ଼ି ଚଢ଼ି ଗଲା ପାହାଡ଼, ତା'ପରେ ପଡ଼ିଲା ଗୋଟାଏ ମାଳଭୂମି, ତା ତାକୁ ଯେକରେ ଖାଲୁଆ ଉପତ୍ୟକା, ପଞ୍ଚବଣ, ମିଞ୍ଜେଇ ନଈ ବୁଲିଛି ସନ୍ତସନ୍ତିଆ କାଳିଆ ଭୂଇଁ ଉପରେ, ବଣ, କଦଳୀବଣ, ଜାଠ ଜାଠ ଫର୍ଣ୍ଣବଣ, ବାଉଁଶ ଜାଡ଼ର ଘାସ ବଣ ଭିତରେ, ପୁଣି ଉଠାଣି ଟିକିଏ, ଗ୍ରେଟ ପାହାଡ଼ ବା କୁମ୍ଫି, ଚାଷ ହୋଇ ଅଳସି ଓ ଜଡ଼ା ଲାଗିଛି, ଯେଉଁଠି ଠିଆହେଲେ ସାମ୍ନାରେ ପଶ୍ଚିମପଟେ ଦିଶୁଛି ଗୁଡ଼ଡ଼ୁଙ୍ଗ ଗାଁର ଜନବସ୍ତି । କୁମ୍ଫିଠୁଁ ବସ୍ତି ଯାକେ ବଡ଼ ପଡ଼ିଆ ପଡ଼ିରହିଛି, ଗାଁ ମଶାଣି ତା' କରକୁ, ଠିକ୍ ପଡ଼ିଆ ତଳେ ମିଞ୍ଜେଇ ନଈ ବୁଲିଯାଇଛି । ପଡ଼ିଆରେ ଛଡ଼ା ଛଡ଼ା ହୋଇ ଅଳ୍ପ କେତୋଟା ଝଙ୍କା ଝଙ୍କା ଗଛ—ବର, ଆମ୍ବ, ଝୋଡ଼, ପିଆଶାଳ, ବଣଜାମ୍ବୁ । ଉତ୍ତରକୁ ପଡ଼ିଆ ଉଠିଛି ଚିପ ଢାଲୁକୁ, ତା'ପରେ ଉଚ୍ଚ ପାହାଡ଼କୁ । ଚିପଢାଲୁ ପାହାଡ଼ ତଳରେ ବି ଚାଷ ବଢ଼ିଛି ।

ଗୃଣଧାଡ଼ି ହୋଇ ଦିଶୁଛି କନ୍ଧ ବସ୍ତି, ଟିପରେ ଅଛି । ବସ୍ତି ଗୃଣକରେ ଫଣ୍ଡେ ଛଡ଼ାରେ ଗ୍ରୁଡିଏ ଉଚ୍ଚ କାଠବାଡ଼ । ମୁହାଁମୁହିଁ ହୋଇ ଦ ଦ ଧାଡ଼ିଘର, ମଝିରେ ଫରଗୁ ଦାଣ୍ଡ, ପିଠିଆଡ଼େ ବାଗ । ଦ ସାହି ପିଠି କ ପିଠି । ମଝିରେ ମଝିରେ ଶଳପ ଗଛ ଗାଁ ଗୃଣକରେ ଏଠି ସେଠି ହୋଇ ପଣସଗଛ, ଆମ୍ବଗଛ । ବସ୍ତି ମୋହିଁଛି ପୂର୍ବକୁ ପଶ୍ଚିମକୁ । ଦକ୍ଷିଣକୁ ଗାଁ ଟିପ ଗଡ଼ିପଡ଼ିଛି ସେହି ମିଞ୍ଜେଇ ନଈକୁ, ତା ସେପାଖେ ପ୍ରକାଣ୍ଡ ଚାଷ ଉପତ୍ୟକା, ଥାକ ଥାକ ହୋଇ ତଳକୁ ତଳକୁ ଗଡ଼ିଯାଇଛି । ଦୂରରେ ଫଲଫଲିଆ ନଈ ପାଖକୁ । ପୁଣି ସେପାଖେ ଚାଷ, ଉପତ୍ୟକା ଉଠି ଉଠି ଯାଇଛି ପର୍ବତ ଢାଲୁକୁ । ଗାଁ ପଶ୍ଚିମକୁ ଗାଁ ଟିପ ଓହ୍ଲାଇପଡ଼ିଛି ଆଉ ଗୋଟିଏ ନଈକୁ, ଶଙ୍କେଇ ନଈ, ତା ସେପାଖେ ଖୁବ୍ ଫରଗୁ ପଦର ଜମି, ସେଠି ବି ଗୃଣଆଡ଼େ ଚାଷ, ଦୂରରେ ପଦର ଢାଲୁ ହୋଇ ଚଢ଼ି ଚଢ଼ି ପର୍ବତକୁ ଯାଇଛି, ସେଠି ସପୁରି, ପଣସ, କମଳା ଓ ଆମ୍ବ ଜଙ୍ଗଲ ପରି ବଢ଼ିଛି ।

ଜମେ ସବୁ ବୁଲି ଦେଖିଥିଲା କାନ୍‌କଟା । ଭାବିଥିଲା—ଏଠି ଏତେ ସମ୍ପଦ ଅଛି, ଆଉ ଅଭାବ କାହାର ? ସତ, ଗୃଣସାହିରୁ ଏକା ଗୋଟିଏ ସାହିର ଅଧା ଘର ଖାଲି

ଉକ୍‌ଡ଼ୁକୁଟିର, ପଶବାର ଝୁଧେ ହୋଇଛନ୍ତି ବୋଲି ନୁହେଁ, ଘରଗୁଡ଼ାକରେ ତା ଜମିର ଫସଲ ରହେ । ଏକା ସେହି ଜଣେ ଲୋକର ବହୁତ ଜମି, ଅନ୍ୟାନ୍ୟ ଗାରେ ତ ଅଛି ହିଁ । ମୁଣ୍ଡାମାଟି ହେଲପରେ ବର୍ଷକୁ ବର୍ଷ ତା'ର ଜମି ବଢ଼ିଛି, ନଜେ ବଣ ହାଣି ହାଣି ଜମି ବଢ଼ାଇଛ ତା ବ ନୁହେଁ, ସେ କାମ କରୁଥିଲ କେବେ ଆଗକାଳେ; କାହା ଜମିକୁ ନେବାକୁ ତା'ର ଲୋଭ ହୁଏ, ମାଗେ, କାହିଁ କରନ୍ତି ନାହିଁ । ଅଳ୍ପ କଛ ଦେଇଦଏ ଆଉ ନେଇଯାଏ । ସ୍ବା ଛଡ଼ା ଗାଁଯାକର କୋଠ ଜମି ତ ଅଛ, ଯାହାକୁ ଇଚ୍ଛା ତାକୁ ଦେଇପାରବ, ନଜେ ତମିପାରବ; କାରଣ ସେ ଗାଁ ମୁଣ୍ଡିଆଳ । ଯେତେ ଜମି ଆବୋର ବସିଛି ତାକୁ ତାପାଇଁ ଚାଷ କରନ୍ତି ଅନ୍ୟମାନେ । ନଜେ ସାମାନ୍ୟ କଛ ପାଆନ୍ତି, ବାକ ଫସଲ ତାକୁ ଆଣି ଦଅନ୍ତି ।

.. ତଥାପି ବ, କାମ କଲେ ଉପାସ ରହିବ ଏଠି, ଏପର କେହି ନାହିଁ, କାହାର ଅଳ୍ପ ଜମି ଥାଉ କ ବେଶି ଜମି ଥାଉ । ଆଉ ପୁଣି, ନୂଆ ଜମି କାଢ଼ିବାକୁ ଜଙ୍ଗଲ ପଡ଼ିଛି, ପାଖରେ ନହେଲେ ଦୂରରେ ।

ସେ ଭାବୁଥାଏ—କନ୍ତୁ ଏମାନଙ୍କର ଏତେ ସମ୍ପଦ ଥାଇ କ ଲଭରେ ଆସୁଛି ? ସମ୍ପତ୍ତି ସିନା ଭୋଗ ପାଇଁ, ପ୍ରକାର ପ୍ରକାର ସୁଖକର ଭୋଗ, ଦାମୀ ଦାମୀ ଭୋଗ, ସେଥିପାଇଁ ସିନା ସମ୍ପତ୍ତି ? ନାନା ଫସଲ ପଣ୍ଡୁଉଛନ୍ତି, ଖାଇବେ; କନ୍ତୁ କେତେ ଖାଉଥିବ ଜଣେ ଜଣେ ମଣିଷ ? ବଳଲେ ନଥିଲ ଲୋକକୁ ଥିଲ ଲୋକେ କଛ ବାଣ୍ଟି ଦଅନ୍ତି, ମାଗିଲେ—କାହା ପ୍ରୟୋଜନ ହେଲେ, ଋଣ ଦଅନ୍ତି, କଛ କଛ ଜନଷ ଯାଏ ବଦଳ ଦେଇ ଆଉ କାହାଠୁ କ'ଣ ଅନ୍ୟ ଜନଷ ଆଣିବା ସକାଶେ—ସେଇଠୁ ? ବାକତକ ? ସାଇତା ହୋଇ ହୋଇ ଝଡ ହୁଏ ।

ଶିଖିନାହାନ୍ତି, ଜାଣିନାହାନ୍ତି, ମଣିଷ ହୋଇ ପଶୁ, ନୂଆ ଜନଷକୁ, ଦାମୀ ଜନଷକୁ ନଝୁରଲେ ଆଉ ମଣିଷ କ'ଣ ? ନଜ ଅଭାବ କ'ଣ କ'ଣ ତା' ଭାବ ନପାରଲେ କ ମଣିଷ ? ଭତରେ ପୋଲ ନଥିଲେ କ ବାଉଁଶ ? ସେଥିପାଇଁ କହନ୍ତି ଯେଡ଼େ ବାଉଁଶ ତା'ର ସେଡ଼େ ପୋଲ, ମୂଲିଆ କ ବୁଝିବ ରଜାର ଅଭାବ କ'ଣ ଆଉ କେଡ଼େ ?

କାନ୍‌କଟା ମନେ ମନେ ସେହି କନ୍ଧମାନଙ୍କ ପ୍ରତ ଦୟାରେ ତରଳିଯାଉଥାଏ । ମନେ ମନେ ଭାବୁଥାଏ, ତା ଭୂମିକା ଏଠି ସତେ ଅବା ଭଗବାନଙ୍କ ଆଶୀର୍ବାଦ ଘେନ ପହଞ୍ଚିଯାଇଥିବା ଦେବ-ଦୂତର । "ମାହାପ୍ରୁ, ତୋ ଦୟା !" ସେ ଯୋଡ଼ା କପାଳ ମୁଣ୍ଡରେ ମାରୁଥାଏ ।

ଭାବୁଥାଏ, ଆହା, ସବୁ ଥାଇ କେଡ଼େ ଅରକ୍ଷିତ ! ସାଜ କ'ଣ, ପୋଷାକ କ'ଣ କେହି ବଢେଇ ନାହିଁ । ପୁରୁଷମାନଙ୍କର—ଫୁରୁଫୁରୁ ମୁଣ୍ଡ, ନହେଲେ ଗଣ୍ଠି । ଫୁଲ

ଗୁଞ୍ଜୁଣୀ ତାଙ୍କ ଅଗକୁ ପୋଡ଼ ଗୋଳିଆ କରି ତାଙ୍ଗଗୁଡ଼ାକ ବୁଣି ବୁଣି ଚନିଆଙ୍କୁଳିଆ ପାନିଆ, ମୁଣ୍ଡରେ ଖୋସା ହୋଇଛି । ଆଉ ଖୋସା ହୋଇଛି ଝିଙ୍କ କାଠି, ଗୋଡ଼ରୁ କଣ୍ଟା କାଢ଼ିବେ ବୋଲି ପୁଣି ମୁଣ୍ଡରୁ ଜଟା ଛଡ଼େଇବାକୁ, ମୟୂର ପିଚ୍ଛ, ସୌନ୍ଦର୍ଯ୍ୟ ବଢ଼େଇବାକୁ, ତା ସହିତ ଧୂଆଁ ଟଣା ପିକ କାହାଳୀ । କାହାର କାହାର କାନରେ, ନାକରେ ନଣ ଉପରେ ପିନ୍ଧିଲ 'ମୁଦି' । କି ପୁରୁଷ କି ସ୍ତ୍ରୀ, ବେକରେ କାଠମାଳି, ଗମ୍ହାରି ମଞ୍ଜି କି ବରଙ୍ଗା ଗଛ ମଞ୍ଜିର ମାଳି, କାଇଞ୍ଚ ମାଳି, ବୋହେଁ ବୋହେଁ । ଅଣ୍ଟାରେ ପିନ୍ଧା, ବେଶି ଲୋକଙ୍କର ଅଣ୍ଟା ଦଉଡ଼ି ଉପରେ କେଳେଂ ପନ୍ଦ, ହାତେ ଓସାର, ଅଢ଼େଇ ହାତ ଲମ୍ବ, ପାଗ କରିବା ବି କେଡ଼େ କଷ୍ଟ, ସକାଳଓଳି ଖରାରେ ଥୁଆହେବ, ୪/୫ ଦିନ ଘୁଇରେ ରହିବ, ସେଇଠୁ ପ୍ରସ୍ତୁତ, ତଥାପି ଫାଟିଯାଏ, ଦିନକୁ ଅନ୍ତତଃ ଯୋଡ଼ାଏ ଲଗେ । ଆଉ କେତେ ଲୋକ ପିନ୍ଧନ୍ତି କୁଦାଲି ଗଛର ପଟ, ତାକୁ ପାତଳ ଓସାର କରି କାଟି ଛଡ଼େଇବା କେଡ଼େ କଷ୍ଟ । ଶୀତଲୁଗା ନାହିଁ, ଚାମଣା ଗଛର ପଟର ଦଉଡ଼ି କି ବାଦଂ ଗଛର ପଟର ଦଉଡ଼ିରେ ବୁଣି ବୁଣି ମୁଣ୍ଡରେ ଗୋଟାଏ ଟୋପି ଓ ବେକଠୁ ଗୋଡ଼ଯାକେ ଚପିଦେଲାପରି ଗୋଟାଏ ଖୋଳ କରନ୍ତି —'କିରି', ତଥାପି ତେଣା ଦ'ଟା ଖୋଲା । 'କିରି' ଘାଲି ବୁହାଏ, କିନ୍ତୁ ଶିକା ଦଉଡ଼ି ପିନ୍ଧିଲା ପରି ଦେହକୁ କେଡ଼େ କଷ୍ଟ !

କେବେ ରଜା ଅମଳରେ ବୁଣ୍‌କାର୍ 'ତେ'ରା' କେହି ଥିଲେ, ଅଳ୍ପ କେତେଜଣ କିଏ କେଉଁଠି ଅଛନ୍ତି ଯେ କନା-ପିନ୍ଧା କନା ବୁଣନ୍ତି, ଅଳ୍ପ କେତେଜଣ ଧିଲ୍ଲବାଲ୍ଲ ପୁରୁଷ ତାକୁ ପିନ୍ଧନ୍ତି, ଯେମିତି ସାଓଁତା (ଗା ମୁଣ୍ଡିଆଳ) ମାନେ, ମୁଣ୍ଡାମାଝିମାନେ, ଧନୀ ରଇତମାନେ । କିନ୍ତୁ ଗଛର ପଟ ପରି ମୋଟା । ପୁରୁଷଙ୍କ ପାଇଁ ବିଡ଼ଣ୍ଡେ ଓସାର କନା, ଦି' ମୁହଁରେ କଟ୍‌ଟା ପରି ରଙ୍ଗ ରଙ୍ଗ କୁନ୍ଥି, ମୁଣ୍ଡରେ ଗୁରେଇବାକୁ ପଚିଶ ହାତର, କୌପୁନୀ ମାରିବାକୁ କାହାର ଅଠର ହାତର କାହାର ବାର ହାତର । ସେ କୁଆଡ଼େ 'ଖିଦିଆ' !

ଭଦ୍ରମହିଳାଙ୍କ ବେଶ ତ ଆହୁରି ଅଦ୍ଭୁତ । ମାଣ୍ଡିଆ ପରି ଗୋଟାଏ ଜାଠର ଗଛ, ତା ନା 'ବଣୀ ଦୂଲୁ', ସେହି ଗଛରେ ବୁଣି ମୁଣ୍ଡରେ ପାଣି ବୋହିଲାବେଳେ ଥୋଇବା ପାଇଁ ଗୋଲ ମୁତୁଲା, ପୁଣି ସେହି ଗଛରେ ବୁଣି ବୁଣି ମୁଣ୍ଡରେ ବେଣୀ ପକାଇବେ । ଜୁଡ଼ା ବାନ୍ଧିଲେ ବାଳରେ ଖୋସିବେ ସମ୍ବର ହାଡ଼ । ଲୁଗା ତଳେ କୌପୁନୀ ଉପରେ ଅଣ୍ଟାରେ ଗୁରାହୋଇଥିବ ବହୁତ ବହୁତ ପରସ୍ତ ହୋଇ ଟାଣକରି ଟୁଡ଼ିଗଛର ପଟ ତିଆରି ଦଉଡ଼ି । କୁଆଡ଼େ ଅଣ୍ଟା ଦମ୍ଭ ହେବ । ତା ଉପରେ ଦଉଡ଼ିରେ ବନ୍ଧାହୋଇଥିବ ଅଣ୍ଟାରୁ ଜଙ୍ଘତଳଯାକେ ଓହଳିଥିବା ଅଣଓସାର ମୋଟା ଖଦାଟିଏ, ତା ନାଁ 'ରେଟା' । ତେଣିକି, ଉପରଯାକ ଖୋଲା । 'ରେଟା' ଝଣ୍ଡିଏ ବି

ସମସ୍ତିଙ୍କର ସବୁବେଳେ ନଥାଏ, ଘରେ କୌପୁନୀ ଖଣ୍ଡେ ହେଲେ ଚଳିଯିବ, ଘଦାଙ୍କୁ ବାହାରଲେ ରେଟାପିନ୍ଧା ଦଉଡ଼ିରେ ପୁଳାଏ ତାଳପତ୍ର ଝୁଲେଇଦେଲେ ଚଳେ, ତେବେ—ଝଦାର 'ରେଟା' ପାଇଁ ଶରଧା ଅଛି ନଷ୍ଟସ୍ବ । କେହ୍ନ କେହ୍ନ ଭାଗ୍ୟବନ୍ତ ଅଛନ୍ତି, ଆଉ ଖଦା ଆଣିଦେବାକୁ ଯାହାଙ୍କର ମଣିଷ ଅଛି ସେ ମଣିଷଙ୍କର ଧନ ଅଛି ଓ ମନ ଅଛି, ତା ହେଲେ ସେମାନେ ଅଣ୍ଟାଠୁ ଉପରକୁ ସାମ୍ନାପଟେ ଖୋସିଥାନ୍ତି ଆଉ ଝଣ୍ଡେ କନା, ତା ନାଁ 'ଉରଂ', ବେକରୁ ଝୋଲାହୋଇ ଅଣ୍ଟାଯାକେ ଲମ୍ବିଥିବ ।

ହାତଯାକ କାନ୍ଧପର୍ଯ୍ୟନ୍ତ ମୋଟ ମୋଟ ପିତ୍ତଳ ଖଡ଼ୁ, ପୁରୁଷଙ୍କର ଯେ କହୁଣିଠୁ କଟିଯାକେ, ସେଗୁଡ଼ିକ 'ବବଣ୍ଡଂ', କାହା କାହା ବାହୁରେ ବି 'ବବଣ୍ଡଂ', ପୁଣି ସାଓଁତାମାନଙ୍କ ବାହୁରେ ଠନ ଠନଟା ପିତ୍ତଳ ବଳା, ସେଗୁଡ଼ିକ 'କାକଡ଼ିକା' । ସ୍ତ୍ରୀ-ପୁରୁଷଙ୍କ ଆଙ୍ଗୁଠିରେ ପିତ୍ତଳ ମୁଦି ।

ସ୍ତ୍ରୀଲୋକଙ୍କ ନାକ କାନରେ ପିତ୍ତଳ ଫାସିଆ, ଆଉ କାହା କାହା କାନରେ ମାଟିରେ ତିଆରି ପଣସକଢ଼ ପରି 'ମୁଦି' ।

ରହିବାକୁ ଘର ବା କ'ଣ ? ଗଛ ଚାରି ପଞ୍ଝାରି ଠିଆ କରି ମାଟି ଗୁଡ଼ି କାନ୍ଥ କଲେ, ପିରି ଘାସର ଛାଳ, ପିଣ୍ଡାଦାଣ୍ଡରେ ଅତି ଅଳ୍ପ ଉଚ୍ଚ କାଠବାଡ଼, ସେଥିରେ ବି ମାଟିଛଟା, ଛାଳ ଓହ୍ଲେଇଛି ଘର ମଝିରୁ ଯେ ପିଣ୍ଡାବାଡ଼ ତେଇଁ । ପିଣ୍ଡାବାଟ ଗୁମ୍ଫା ମୁହଁ ପରି, ବସିପଡ଼ି ଛେପାମାରି ପଶ, ତା ପଛେ ଠିଆହୁଅ, ବାଟ ମୁହଁରେ କବାଟ । ପିଣ୍ଡାରୁ ଘରଭିତରକୁ ପଶିଲେ ଗାତରେ ପଶିଲା ପରି, ଘଉଡ଼ଳ ଆହୁରି ଦ ହାତ ଗହ୍ବର, ଅନ୍ଧାର ବଲ୍ ବଲ୍ ।

କିନ୍ତୁ କାହିଁକି ଏମାନେ ଏପରି ରହିବେ ? କାହିଁକି ? କାହିଁକି ? ଫସଲ ପଦାକୁ ଯାଆନ୍ତି, ଆଉ ଯାଆନ୍ତି ବଣର ଜିନଷ, ଏ ପାହାଡ଼ ଖୋଳିଲେ ବି କେତେ ସୁନା ରୁପା ଥିବ କିଏ ଜାଣେ ?—ଯାଆନ୍ତି ସବୁ ପଦାକୁ, ତେଣୁ ତା ବଦଳରେ ଆସନ୍ତି ସୁନା, ରୁପା, ନାନା ଦରକାରୀ ଜିନଷ । ଏମାନେ ଭଲ ଘରେ ରହନ୍ତେ, ଯେତେ ଉତ୍ପାଦନ କରୁଛନ୍ତି ଅନ୍ତତଃ ମୁଣ୍ଡାମାଝିମାନେ, ସାଓଁତାମାନେ, ବଡ଼ ରଇତମାନେ କୋଠାଘରେ ରହିପାରନ୍ତେ । ପୁରୁଷ-ସ୍ତ୍ରୀ ପିନ୍ଧିପାରନ୍ତେ ନାନା ପ୍ରକାର ଦାମୀ ଦାମୀ ଲୁଗାପଟା, ଗହଣାଗାଣ୍ଠି, ନାନା ନୂଆ ଜିନଷ ବ୍ୟବହାର କରିପାରନ୍ତେ, ସୁନା ରୁପା ସାଇତ ଧନ ସଞ୍ଚିପାରନ୍ତେ, କେତେ ସୁବିଧା ଭୋଗକରନ୍ତେ, କେତେ ମଉଜ୍ ମଜ୍‌ଲିସ୍ କରନ୍ତେ, ସେଥିକି ଲୋକ ଆହୁରି ଆହୁରି ବଳନ୍ତା ଯେ ଆହୁରି ଆହୁରି ଖଟନ୍ତେ, ଆହୁରି ଆହୁରି ଧନ୍ଦା କରନ୍ତେ, ସେ ଦେଶରେ ଧନୀ ହେଲେ ଲୋକ ଯେମିତି ଚଳେ ଏମାନେ ବି ଯେମିତି ଚଳନ୍ତେ, ଏମିତି ଭିକାରି ପରି ବେଶରେ ରହନ୍ତେ ନାହିଁ ।

ତା ମନକୁମନ ହେବ ନାହିଁ, ପଦାରୁ ବେପାରୀ ଆଉ ପାଇଟାଲି ଆସିବା ଦରକାର, ଏଠୁ ଜିନିଷ ଯାଇ ବେପାର ବଣିଜ ହେବା ଦରକାର, ପଦାରୁ ଜିନିଷ ଆସିବା ଦରକାର, ଦରକାର ସଡ଼କ, କେତେ କଥା । ଯୁଗ ଓଲଟନ୍ତା । ଏମାନେ ମର୍ଜିଲେ ତ !

ସେ ଭାବେ, ଆଉ ମନେ ମନେ କହେ, "ମାହାପ୍ରଭୁ, ତୋର ଦୟା ।" ଉଙ୍କିଝୁକି ତାକୁ କାଗା ଦେଖାଇ ଦେଇଥିଲି, କେଉଁ ଅଞ୍ଚଳରେ ସେ ଘରବାଡ଼ି କରିବ, କେଉଁ ଅଞ୍ଚଳ ସେ ଚାଷ କରି ଖାଇପାରିବ । କନ୍ଧମାନଙ୍କ ଆଗରେ ବୁଢ଼ାକାଗା ଉପରେ କାଗାରୁ ଟେଲାଏ ଲେଖା ମାଟି ଖୋଳି ତା ହାତକୁ ବଢ଼ାଇ ଦେଇଥିଲି । କନ୍ଧମାନଙ୍କୁ ବୁଝାଇ ଦେଇଥିଲି ସେ ମୁଣ୍ଡାମାଝି ମଣ୍ଡଳର ସେବାକାରୀ, ତା'ର ସେବାକାରୀ, ଗାଁର ଓ ରାଜ୍ୟର ସବୁ ଋଷିଙ୍କର ହିତକାରୀ ହୋଇ ରହିବ, ସେ ସବୁ କନ୍ଧଙ୍କ ଗୁରୁ, ସେ 'ସେବକ', ତା ପଦବୀ ପାଣ୍-ବାରିକ, ସମସ୍ତେ ତାକୁ ସାହାଯ୍ୟ କରନ୍ତୁ । ନିଜେ କାମ କଲି, କନ୍ଧମାନେ ମିଶିଲେ, ତା'ର ଘର ଠିଆହେଲା ।

କେହି ତାକୁ କାମ ବରଗନ୍ତି ନାହିଁ, ଯାହାର ଯାହା ଦରକାର ସେ ନିଜେ କରେ, ବେଲ ବରଗି ଜାଣେ ନାହିଁ । କିନ୍ତୁ ନିଜ ପାଇଁ ସେ କାମ ସୃଷ୍ଟି କରିଥିଲି ଅନନ୍ତ । ଗାଁ ବସ୍ତିରେ ବହୁତ ଅଳିଆ ଅଯନା, ଘୁଷୁରି ଗୁଅ, ମଣିଷ ଗୁଅ, ପାଉଁଶ, ଝାଟୁଆ, କେତେ କ'ଣ । ଲୋକଙ୍କୁ କହିପୋଛି ଫୁସୁଲେଇ ତାଙ୍କ ସଙ୍ଗରେ କୋଡ଼ି ଟୋକେଇ ଧରି ସେ ବାହାରିଲି. ଦିନ ଦିନରେ ଗାଁ ସଫା । ସେମିତି ଗାଁରୁ ବାହାର ପଦାକୁ କି ନଈକି ଯିବା ବାଟ, କେତେ କଣ୍ଟା ଝଣ୍ଟା, ମୁନିଆ ପଥର, ଆବୁଡ଼ା ଖାବୁଡ଼ା, ଘାସ ଅରମା, ସେ ବି ସଫା ହେଲା । ମାଟି ଗୋବର ଗୋଳି ଗୋଟି ଗୋଟି କରି ଘରମାନଙ୍କ କାନ୍ଥ ଆଉ ପିଣ୍ଡା ଲିପିବାକୁ ଆରମ୍ଭ କଲି, ଗାଁ ମାଇପଙ୍କ କାମ, ମର୍ଜିରେ ମର୍ଜିରେ ସେମାନେ କରିଥାନ୍ତି, କିନ୍ତୁ ଡେରିରେ ଡେରିରେ, ଆଗ ବିରକ୍ତ ହେଲେ, ତା ପରେ ନିଜେ ଲାଗିଗଲେ । ଗାଁ ଆଉ ସାହିମାନଙ୍କ ଚେହେରା ବଦଳିଗଲା,—ଲୋକ ବୁଝିଲେ, ନୂଆ କିଛି ଘଟିଲା । ଗାଁ ଗୋରୁମାନଙ୍କୁ ଏକାଠି ଭେଳେଇ ଚରେଇବାକୁ ନେଲି, ପିଲାଙ୍କ ସଙ୍ଗେ ସାଙ୍ଗ ହେଲି, ସଙ୍ଗରେ ଗଲେ, କ୍ରମେ ପାଳିକରି ପିଲାଙ୍କୁ ବରଗିଲି, ଏକାଠି ଦୁ'ଜଣ ତିନିଜଣ, ସେ ବି ଗାଁର ଗତିରେ ପଡ଼ିଗଲା ।

ଗାଁ ମଝିରେ ଠାଏ ଶଳପ ଗଛ ପାଖେ ଥାନ କୁଡ଼ିଆଟିଏ, ପାଖରେ ବାହାରେ ଗାଁର ଧରଣୀ ମୁଣ୍ଡା ଖୁଣ୍ଟ, ତା ତଳେ ତିନୋଟି ପଥର, ଯୋଡ଼ିକ ଉପରେ ଆଉ ଗୋଟିଏ, ସେ ଧରଣୀ ଦେବତା, ତଳେ ଧରଣୀ ଓ ଆକାଶରେ ସର୍ବବ୍ୟାପୀ ଭଗବାନ୍ ଧର୍ମୁ କନ୍ଧଜାତିର ପ୍ରଧାନ ଦେବତା । ଯାହା କିଛି ହେଲେ ଧରଣୀର ପୂଜା ହୁଏ, କୁକୁଡ଼ା କି ପାରା, କେତେବେଳେ ଘୁଷୁରି କି ଛେଳି କି ଗାଈ କି ମଇଁଷି ସେଠି ବଳି ପଡ଼େ । ପୂଜା କରେ ଜାନୀ, ତାକୁ ଭଲ୍‌ମ୍ବା ବି କହନ୍ତି, ଯୋଗଦିଏ ଦଶାରୀ ।

ଜାଣି ଦଣାଘଙ୍କଠୁଁ ବୁଝି ଘର ଘର ବୁଲି ମାଗି ସେ ପୂଜା ସାମଗ୍ରୀ ଯୋଗାଡ଼ କରେ, ପାଳକରି ଘରୁ ଘରୁ ବଳିର ଜନ୍ତୁ ମାଗିଆଣେ । ମଝି କୁଡ଼ିଆରେ ପାହାନ୍ତି ଅନ୍ଧାରରେ ଗାଁଯାକର ସବୁ ଘରୁ ମୁରବିମାନେ ଏକାଠି ହୁଅନ୍ତି, ସବୁଦିନେ, ଦିନଯାକର କାମ, ଗାଁଯାକର ହାନିଲାଭ କଥାବାର୍ତ୍ତା ହୁଏ, ନିଷ୍ପତ୍ତି ନିଅନ୍ତି । କାନ୍‌କଟା ସେଠି ନିଜ କାମ ତିଆରି କରିଥିଲା । ଘର ଘର ବୁଲି ଡାକ ପକାଏ । ଲୋକେ ବସିବା ଜାଗାରେ କାଠ ଜାଳି ସମସ୍ତେ ନିଆଁ ପୁଇଁବା ପାଇଁ ବନ୍ଦୋବସ୍ତ କରେ, ମଦ ହୁମ୍ପୁମ୍ କରିଦିଏ । ସେଠି ବି ସେ ସେମାନଙ୍କ କଥାବାର୍ତ୍ତାରେ ଭାଗ ନିଏ, ତା'ର ମତାମତ କହେ, ନୂଆ ନୂଆ ବୁଦ୍ଧି ବାଟ ଦେଖାଏ ।

ସମସ୍ତେ ଗଲେ ସେ ବି ଯାଏ କ୍ଷେତକୁ, ତଳେ ହେଉ କି ପର୍ବତରେ ହେଉ, ଯାଏ ତୋଟାକୁ ବାଡ଼ିକୁ । କାମ କରିବାକୁ ସବୁ ଯୋଗସଜ ତାର । ନିଜ ଇଚ୍ଛାରେ କାହା ସଙ୍ଗରେ କାହା କ୍ଷେତରେ ସେ କେତେବେଳେ କାମ କରେ । ବେଶି ନଯାଏ ଡକ୍ତ କୁଠିର ଘରକୁ, କ୍ଷେତକୁ, ତା ମୁହଁକୁ ଚାହିଁଥାଏ, ଗାଁ ଲୋକଙ୍କ ସଙ୍ଗେ ଯେତେ ମିଶିଲେ ବି ସେ ବୁଝେ ତାର ଅସଲ ଖାଉନ୍ଦ ମୁଣ୍ଡାମାଝି । ତାହାରି ବରଗାରେ ବାଡ଼ି ଖଣ୍ଡେ ଧରି କାହିଁ କାହିଁ ଦୂର ଦୂର ଧାଏଁ, କାହା ପାଖକୁ କେଉଁ ଖବର ନେଇ, କାହାକୁ ଡାକିବାକୁ, କେତେବେଳେ କେଉଁ କାମରେ ।

ନିଜ ଘର ପାଇଁ ଶସ୍ୟ ମାଠିଆଣି ଠୁଳକରେ, ଭଣ୍ଡାର ବଢ଼େ; କିନ୍ତୁ ଘାନ୍ତେ ସେ କ୍ୱଚିତ୍, ଆଗପରି ମାଗିଖାଏ, ତା ଖାଇବା ଚଳିବାର ଅଭାବ ନାହିଁ ।

ଅଭାବ ତାର ବହୁତ, ତା ସମାଜ, ସେ ଲୋକ, ସେଠିକାର ଅଭ୍ୟସ୍ତ ଚଳଣି, ସେଠିକାର ବଡ଼ସାନ ମୂଲ୍ୟ ଜ୍ଞାନ, ସବୁ ତାର ଅଭାବ । ସେ ବୁଝେ, ସେ ମନକଲେ ସେ ଅଭାବ ଯିବାର ନୁହେଁ, ସେ ପରିବର୍ତ୍ତନ ତା' ହାତରେ ନାହିଁ, ସେ ଆଶାକରେ ଓ ଧୈର୍ଯ୍ୟ ଧରେ ।

ସେ ବୁଝେ ସବୁଠୁ ଯାହା ତାର ବଡ଼ ଅଭାବ ତା ଏଠି ମେଣ୍ଟିବାର ନୁହେଁ, ଘରକୁ ଘରଣୀ । ଯୁଆଡ଼େ ଚାହିଁଲେ ଲଙ୍ଗୁଳୀ ସ୍ତ୍ରୀଲୋକ, ଆବରଣ ବସ୍ତ୍ରରେ ଲଜ ସଙ୍କୋଚର ପାଖ ପଶିନାହାନ୍ତି, କେଉଁଠି ଗହଳରେ ଥିଲେ ସେମାନଙ୍କ ଖୋଲା ଦେହର ତେଲରେ ଉଜ୍ଜ୍ୱଳ ରୂପରେ ସେ ଚପି ହୋଇଯାଏ, ସଙ୍କୁଚିତ ହୁଏ, ଝାଳେଇଯାଏ, ଖସି ପଳାଏ । ଆପଣା ଘର ପିଣ୍ଡାରେ ଅଗଣାରେ ପଥର ଉପରେ ସେମାନେ କୌପୁନି ମାରି ବସିଥାନ୍ତି, ଝୋଲାରେ ଗାଧୋଇଲାବେଳେ ଦେହରେ ତା ବି ନଥାଏ, ପଦାରେ ଖାଲି ରେଟା ବେଢ଼େଇ ହୋଇ ବୁଲନ୍ତି । ନାଚ ବେଳେ ବି ସେମିତି । ଆଗ ଆଗ ଆଖି ତାର ସହିପାରୁ ନଥିଲା, ଦେହ ତାତୁଥିଲା, ଥରୁଥିଲା, କେଡ଼େ ଚଞ୍ଚଳ ସେ ଦୃଶ୍ୟ ବି ଆଖିସହା ହୋଇଗଲା, ଲାଗିଲା ଅତି ସ୍ୱାଭାବିକ ଓ ସହଜ ।

କିନ୍ତୁ ଏକୁଟିଆ ଥିଲାବେଳେ ସେ ତାହାକୁ କାହାକୁ ମନେପକାଇ ଅନ୍ୟ କଥା ଭାବେ, ଦୂରକୁ ଶୂନ୍ୟକୁ ଚାହିଁ ରହେ, ଛଟପଟ ହୁଏ ।

ଆଉ ହଠାତ୍ ତା'ର ମନେପଡ଼ିଯାଏ ତା' ନିଜ କଥା ଭାଗ୍ୟପତ୍ରୀ କଥା । ତା' ମନ ତଳରେ ଲୁଚିଛି ଜୀବନ ପ୍ରତି ମୋହ ସଙ୍ଗେ ସଙ୍ଗେ ବିପଦ ଓ ମରଣ ପ୍ରତି ଭୟ । ଏ ସ୍ତ୍ରୀଲୋକମାନେ ଅତି ସରଳା ଓ ନିଷ୍କପଟିନୀ, କଥା ଲୁଚେଇ ଜାଣିବେ ନାହିଁ, ମିଛ କହିବେ ନାହିଁ । ଯେତେବେଳେ ? ସେ ଜଣେ ଲୋକକୁ ଏମାନେ ରାଜ୍ୟଯାକ ! ଟାଙ୍ଗିଆ ଚଳାଇଲେ, ଛୁରି ଚଳାଇଲେ ମୁହୂର୍ତ୍ତକେ ତା'ର ମୁଣ୍ଡଟା ଗଡ଼ିପଡ଼ିବ ।

ସତର୍କ ହୋଇ ଭାବେ, ଯେଉଁଠି ସେ ଥାଉ, ଯେତେ ଏକୁଟିଆ, ତା' ଚାରିଆଡ଼ ଆଖିମସ୍ତ, ସେ ଆଖିମାନେ ତାକୁ ଦେଖୁଛନ୍ତି, ଜଗୁଛନ୍ତି । ଏ ଲୋକେ ତାକୁ ସନ୍ଦେହ କଲାଭଳି କିଛି କହୁନାହାନ୍ତି, କରୁନାହାନ୍ତି, ତଥାପି ସେମାନେ ଜାଣିଥିବେ, ଯେ କାହିଁ ଅଚିହ୍ନା ମଣିଷଟାଏ, ତା' ହାବଭାବ ଦେଖି କାମ ଦେଖି ତାକୁ ତଉଲୁଥିବେ, ସେ ମତାମତ ଜଣକଠୁ ଆଉଜଣକ କାନକୁ ଚହଲୁଥିବ, ପଛେ ତାହାର ଉପରେ ନିର୍ଭର କରିବ ଏଠି ତା' ଭବିଷ୍ୟତ୍ ।

କିନ୍ତୁ ପୁରୁଷମାନଙ୍କ ପରି ସେ ବି କେତେବେଳେ କେଉଁ ଜଣିକିଆ କି ପାଞ୍ଚ ଦଶଜଣ ସ୍ତ୍ରୀଲୋକଙ୍କ ସଙ୍ଗେ କଥାଭାଷା ହୁଏ । ସେ ଲୋଡ଼ୁଥାଏ ତାଙ୍କର କିଛି କାମରେ ଲାଗିବାକୁ, ବିଶ୍ୱାସୀ ହେବାକୁ । ଘର ଘରକର ଚିହ୍ନାଜାଣି ଭଲମନ୍ଦ, ଗା ମଣିଷଙ୍କ ମତିଗତି ଆଉ ରୁଚି ବିଚାର, ସୁବିଧା ଅସୁବିଧା ସ୍ତ୍ରୀଲୋକମାନଙ୍କ ସଙ୍ଗେ କଥାଭାଷା ହେଲେ ସେ ସହଜରେ ଜାଣିପାରେ । ଗପିବସିଲେ ସେମାନେ ତରତର ହୁଅନ୍ତି ନାହିଁ, ସବୁ ଖୋଲି କହିଯାନ୍ତି ।

ଆଉ ତାଙ୍କର ସଙ୍ଗେ କଥାଭାଷା ବେଳେ ସେ ପ୍ରଚାର କରେ ତା'ର ନାନା ମତ, କାହାଣୀ ଯୋଡ଼ିଦେଇ ସେମାନଙ୍କ ସ୍ୱପ୍ନ ତେଜେ ।

ସେଦିନ ଉକ୍‌ଡ଼ୁକୁଟି ଘର ଆଗରେ, ସ୍ତ୍ରୀ ଲୋକମାନେ ବସି ଗପୁଥିଲେ । ଠିଆ-ହୋଇ ସେ କହୁଥାଏ—

"ଦେହରେ ପିନ୍ଧିବାକୁ ଜାତିଜାତିକା ହୋଇ କେତେ ସୁନ୍ଦର ସୁନ୍ଦର ଲୁଗାପଟା ଅଛି, ନାନା ରଙ୍ଗର, ଚିତ୍ର ବିଚିତ୍ର, ଦେଖି ହେଉଥିବ ପ୍ରଜାପତି ଦେହପରି, ମୟୂର ଦେହପରି, ବାଘ ଦେହପରି, ଜାତି ଜାତି ଫୁଲପରି, ଇନ୍ଦ୍ରଧନୁ ପରି । ନାକକୁ କାନକୁ ବେକକୁ ହାତଗୋଡ଼କୁ ଆଙ୍ଗୁଠିକୁ ଏ କି'ବା ଅଳଙ୍କାର ! କି ଅଳଙ୍କାର ତୁମେ ଦେଖିଛ କି ପାଇଛ ? ସୁନାର ଅଛି, ରୁପାର ଅଛି, ରଙ୍ଗରଙ୍ଗର ପଥରବସା

ହୋଇଥିବ, ରଙ୍ଗରଙ୍ଗର ମାଳ,···ଦେହରେ ମୁହଁଙ୍ଗେ ବୋଳିବାକୁ ଜାତ ଜାତ ରଙ୍ଗ ···ଦର୍ପଣ, ସେଥିରେ ନିଜ ମୁହଁ ଦିଶିବ, ନିଜେ ଆଖିରେ ଦେଖିବ ମୁହଁ କେଡ଼େ ସୁନ୍ଦର, ଆଲୁଅ ପଡ଼ିଲେ ଜିକିଜିକି କରିବ···ଖାଇବାକୁ କେଡ଼େ ସୁଆଦ ସୁଆଦ ପିଠା, ମୁଆଁ, ଥରେ ଖାଇଦେଲେ ସୁଆଦ ପାଟିରେ ଲାଗିଯିବ ।''

ଉନ୍‌ଡ଼ୁକୁଟିର ଖରିଯା ଚପାଇ (ଚମ୍ପା) କହିଲା, "ମିଛ କହୁଛୁ । କାହାଣୀ ।'' ତା' ବଡ଼ଝିଅ ମେଡ଼୍‌ଲି, ସତର ଅଠର ବର୍ଷର ହେବ, ଜିକ ଜିକ ଆଖିରେ ଅନାଇ ରହି କଥାସବୁ ଗିଳି ପକାଉଥାଏ । କହିଲା, 'କହ କହ, ଆହୁରି କହ ।''

କାନ୍‌କଣ୍ଟା କହିଲା, ''ମିଛ କହୁଥିଲେ ମୋ ଆଖି ଫୁଟିଯିବ, ଗୁଡ଼ ଫାଟିଯିବ, ମତେ ବାଘ ଖାଇବ । ସବୁ ସତ । ମତେ ଏମାନେ ଜିନିଷ ଦେଇଥିଠାରୁ, ମୁଁ ଯାଇ ବଦଳ ଦେଇ କେତେ ନୂଆ ଜିନିଷ ଘେନି ଫେରିଆସିବ, ସେତେବେଳେ ଦେଖିବ । କେତେ ବେପାରୀ ଡାକି ଆଣିବ, ତମ ଜିନିଷ ନେବେ, ନୂଆ ଜିନିଷ ଦେବେ । ବାଟ ଫିଟିବ, ଦୋକାନ ହାଟ ବସିବ, ସୁନା ରୁପା ତମ୍ବା କେତେ ବଉ ଆସିବ, ଜିନିଷ ଦେବ, ବଉ ଆଣିବ, ବଉ ଦେବ, ନୂଆ ଜିନିଷ କିଣିବ, କେଡ଼େ ସୁଖରେ ରହିବ ।''

ଆଉ ପାଞ୍ଚଜଣ ମାଇପେ ସମର୍ଥନ କରି ମୁଣ୍ଡ ହଲେଇଲେ ।

ଏପୀ ବୁଢ଼ୀ କହିଲା, "ବାହାରୁ ମଣିଷ ଆସିଲେ ଆମ ଦେଶକୁ ଝଗଡ଼ା କରିବେ ଯଦି ?''

ଚପାଇ କହିଲା, "ସତ ତ !''

କାନ୍‌କଣ୍ଟା କହିଲା, "ଯେ ଆସିବେ ସେ ତମର ସେବାକାରୀ ହୋଇ ପିନା ଆସିବେ, ରହିବେ । ମଣିଷ କି କ'ଣ ବାଘ ଭାଲୁ ? ପୁଣି, କନ୍ଧ ଲୋକଙ୍କଠୁଁ ବଳୁଆ ପଡ଼ିବେ ଏମିତି କିଏ ଅଛନ୍ତି ? କେତେଜଣ ବା ଆସିବେ ? କିଏ ଏଠି କି ଅନିଷ୍ଟ କରିବ ?''

ସେମିତି କେତେଠି କେତେଥର । କାନ୍‌କଣ୍ଟାଠୁଁ କାହାଣୀ ଶୁଣିବାକୁ ଲୋକ ଅଟକନ୍ତି, କି ପୁରୁଷ କି ସ୍ତ୍ରୀ ।

କାହାଣୀ ଶୁଣୁ ଶୁଣୁ ତା ପ୍ରତି କେତେ ଝିଅ ଆକୃଷ୍ଟ ହୋଇଥିଲେ, ସେ ଅନୁଭବ କରିଛି । ଆଖିର ସେ ଚାହାଣି, ମୁହଁର ସେ ଠାଣି, ଓଠର ସେ ଭଙ୍ଗ, କଥା କହୁ କହୁ ଲାଜ ଲାଜ ମୁହଁ, ଗଦ୍‌ଗଦ ଭାଷା, ଖୋଲା ଦେହରେ ସେ ହଲଚଲ, ସେ ଅସ୍ଥିରତା, ବିନା ଭାଷାରେ ନୀରବରେ ତାକୁ ବୁଝାଏ, ନାରୀ ନିମନ୍ତ୍ରଣ କରୁଛି ପୁରୁଷକୁ, ସେଠି ଜାତିଗୋଷ୍ଠୀର କାନ୍ଥ ଉଚ୍ଚୁଆଳ କରୁନାହିଁ କି ଅଟକାଉ ନାହିଁ । ତା ଆଖି ଜଳଉଠେ,

ପୁଣି ସେ ମନେପକାଏ, ସ୍ଥନଆ ହୁଏ, ବାଁରେଇ ହୋଇ ଝେପିଯାଏ । ସେ ଜାଣେ, ସନ୍ତଗରେ ଯେବାଡେନ ଲଗେ । ଗାଁ ଗାଁକେ ଧାଂଡ଼ାବସା, ଧାଂଡ଼ୀବସା, ସବୁ ଅଭିଆଡ଼ା ଟୋକା ଧାଂଡ଼ାବସା ଘରେ ରାତିରେ ଶୁଅନ୍ତି, ଆଉ ସାହିରେ ସବୁ ଅଭିଆଡ଼ୀ ଝିଏ ଧାଂଡ଼ୀବସା ଘରେ । ସେମାନେ ଆସନ୍ତି ଏମାନଙ୍କ ବସା ଦୁଆର ମୁହଁକୁ, ଏମାନେ କେବେ ସେମାନଙ୍କ ବସା ଦୁଆର ମୁହଁକୁ, ଗୀତ ବୋଲାବୋଲି ହୋଇ ଭାବ ବନମସ୍ତ ହୁଏ, ସୁଆଉଆ ମାଣ୍ଡିଆ ପିଠା କ ଧୂଆଁପତ୍ର ଦିଆ ଘେନା ହୁଅନ୍ତି, ପିଅନ୍ତି, ନାଚନ୍ତି, ମାତନ୍ତି, ଯାହାର ଯାହାର ଦୁଇପକ୍ଷର ରାଜିଥିଲେ ବାରଣ ନଥାଏ । ସେମିତି କେବେ ଏ ଗାଁର ଧାଂଡ଼ାବସାର କ ଧାଂଡ଼ୀବସାର ଲୋକେ କେଉଁ ଅନ୍ୟ ଗାଁର ଧାଂଡ଼ାବସା କ ଧାଂଡ଼ୀବସାକୁ ମଉଜ କରିବାକୁ ଯାନ୍ତି, ବାହା ନହେଲା-ଯାକେ ବାରଣ ନାହିଁ, ନିଜ ଗୋଷ୍ଠର ନହେଲେ ବାହାଘର ଚଳେ । କିନ୍ତୁ ଏସବୁ ଯିବା କଣ୍ଢ ସମାଜରେ, ସେ ତ ଡମ୍ବ ।

ନାଚ ବେଳେ କେତେଥର ସେ ଯାଇଛି ଟୋକାମାନଙ୍କ ସଙ୍ଗେ ମିଶି ବାଇଦ ବଜେଇବାକୁ । ତା'ପରେ ଆଉ ରହେନାହିଁ ।

ଓଲଟି, କେଉଁ ଗାଁରେ କେଉଁ ସୁନ୍ଦରୀ ଝିଅ ତା' ନଜରରେ ପଡ଼ିଥିଲେ ସେ ଆସି ଟୋକାମାନଙ୍କୁ ସେ ତା' ସମ୍ବାଦ ଦିଏ, କହେ, ଭଲ ଝିଅ, ବାହା ହେବ ତ ଯାଇ ବୁଝ ।

ମିଶ୍ଚେଇର ସ୍ୱାମୀ ଗାହ୍ନ କନ୍ଧକୁ ସେ ଦେଖିନାହିଁ, ସେ ଆସିବା ଆଗରୁ ଗାହ୍ନକୁ ବାଘ ଖାଇଥିଲା, ଥିଲେ ମିଶ୍ଚେଇ ଆଜ୍ଞ ତା'ର ଦୁଇ ବର୍ଷର ପୁଅ ପୁଲୁ । ମିଶ୍ଚେଇକୁ ବାଇଶି-ତେଇଶି ହେବ, ଡଉଲଡାଉଲ କଳା କଳକଳ । କନ୍ଧ ରୀତି ପ୍ରକାରେ ସେ ଆଉ ଥରେ ବାହା ହେଲେ ସେପରି କନ୍ଧର ସ୍ତ୍ରୀ ହେବ ଯାହାର ସ୍ତ୍ରୀକୁ ବାଘ ଖାଇଥିବ । ଗାଁରେ ସେପରି କେହି ନଥିଲେ ।

ମିଶ୍ଚେଇ ତାକୁ ନଦା ପକାଇଥିଲା ସେ ଜାଣେ, କେତେଥର ପିଲାକୁ ଗୁଡରେ ଧରି ବାଁରେଇ ହୋଇ ବୁଲିଆସେ, ନାଲି ଗୁଲି ଦିଏ, ମଠ ମଠ କରେ । ଶାଶୁବୁଢ଼ୀ ପାଖେ ପିଲାକୁ ଛାଡ଼ିଦେଇ ବଣକୁ କ୍ଷେତକୁ ସେ ଯାଏ, କେତେଥର ନିରୁଛିଆ ସ୍ଥାନରେ ଭେଟାଭେଟି, କାନ୍‌କଣ୍ଠା ଚରଚର ହେଲେ ବି ମିଶ୍ଚେଇ ମଠ ମଠ କରେ—ହସେ, ଅଟକାଏ, କହେ ଖୋଲି ଯିବା ଗୁଲ୍ ବୋଲି କହେ, କାନ୍‌କଣ୍ଠା ଚରଚର ହୋଇ କାମ ବାହାନାରେ ପଳାଏ । ତଥାପି ଆଜିଦିନେ ପୁଣି ଦେଖେ ମିଶ୍ଚେଇ ଆସୁଛି ।

କେତେଥର ଭାବେ ତାହାରି କଥା । ଆକୃଷ୍ଟ ହୁଏ । ସ୍ୱପ୍ନ ଦେଖେ । ମିଶ୍ଚେଇକୁ ଡମ୍ବ ବୋହୂ ବେଶରେ ଦେଖେ । ସୁଖ ପାଏ । ନିଦ ଭାଙ୍ଗେ । ଡରରେ ଥରେ । ଚନ୍ତାରେ ବୁଡ଼େ, ମିଶ୍ଚେଇ ତା'ର କାଳ, ତା' ପାଇଁ ବାଘ ସାପ ।

ପୁଷ୍ପମାସ । ଗ୍ରୁଇଲେଙ୍ଟା ବେଲ । ଧନଯାକ ଫସଲ କଟାକଟିରେ ଝଟୁଥିଲା । ଗାଁଲେକେ ଏବେ ବି ଷେତରେ ଥିବେ । ଘରକୁ ଆସିଲା । କବାଟ ଆଉଜା ଥିଲା । ମନେପଡ଼ିଲା, ସେ ତ ବାହାରୁ କଲଣୀ ଲଗାଇଦେଇଥିଲା । ଭିତରେ ପଶିଲା । ଅନ୍ଧାରରେ ସ୍ତ୍ରୀଲେକର ପାଟି ଶୁଭିଲା, "କବାଟ ବନ୍ଦ କରିଦେ ।"

ଇସ୍ ! କିଏ ଜଣେ ତାକୁ ଜାବୁଡ଼ି ଧରୁଛି ! 'ମୁଁ ମିଙ୍କେଇ ।' ଗୁଡ଼ିଗୁଡ଼ି ହୋଇ ତେଣିକି ଧାଇଁ ସେ ଘର ଭିତରୁ ବାହାରିପଡ଼ିଲା । ପଛେ ପଛେ ମିଙ୍କେଇ । ପାଗଳୀ ପରି ଦଉଡ଼ୁଛି । ଫିସ୍ ଫିସ୍ କରି କହୁଛି 'ଆ ଆ, ଭିତରକୁ ଆ ।'

ଲମ୍ବ ହୋଇ କାନ୍‌କଟା ଭୂଇଁରେ ତା' ଆଡ଼କୁ ଅନାଇଁ ଗୋଡ଼ତଳେ ପଡ଼ିଗଲା, କହିଲା, "ମା, ତୁ ମୋର ଆୟୁ (ମା), ମୋ ମା ପିଲାଦିନୁ ମରିଛି । ମୁଁ ଟୁଗୁ ପିଲା, ଅବିକଳ ତୋ'ରି ପରି ସେ, ତୁଇ ସେ, ସେ ଆଉ ଥରେ ତୁ ହୋଇ ଜନମ ହେଲୁ ମା, ସେଥିପାଇଁ ମତେ ତୋର ଏଡ଼େ ଦୟା, ଏଡ଼େ ଶରଧା । ତୋଠୁ ମୁଁ ଜନମ ହେଲି ଗୋ ମା, ତୋ ଘୁ'ମୁତି ଖାଇଚି, ସବୁଦିନେ ତୋ ଗୁକର୍, ତୋ କୁକୁର୍, ତୋ ସେବାକାରୀ, ଏବେ ତୁ ଯା ।"

ମିଙ୍କେଇ ତା' ଉପରେ ଛେପ ପକାଇଲା, ତାକୁ ଗୋଇଠାଏ ମାରିଲା, କହିଲା, "ତୁଟା ମଣିଷ ନୋହୁଁ, ବେଜୁ (ଅଣପୁରୁଷ)ଟାଏ ।"

ସେ କହିଲା, "ମୁଁ ବେଜୁ କି ନୁହେଁ ମତେ କି ଜଣା ? ତୁ ମତେ ଜନମ ଦେଲୁ ତୁ ଜାଣିଚୁ । ଦୟା ରଖିଥିବୁ ମା, ମୁଁ ଭଲ ହେଲେ କି ଅପାର ହେଲେ ତୋର ପୋ ପିଲା, ଯେ ହେଲେ ପଚ୍ଚରିଲେ କହିବୁ ମୋ ପୁଅ ସେ, ମୁଁ ତା' ମା'ର ଡୁମା ।"

ମିଙ୍କେଇ ଗୁଲିଗଲା । ଆଉ ତା' ବାଟରେ ମିଙ୍କେଇର ଗ୍ରାଇ ପଡ଼ିନାହିଁ, ତଥାପି ସେ ନିଶ୍ଚିନ୍ତ ହେଲା ନାହିଁ । ଗାଁ ଚୁଲିଗଲେ ଖୋଜିବୁଲିଲା, କିଏ ଏପରି କନ୍ଧ ଅଛି, ଯାହା ଘରଯାକୁ ବାଘ ଝାଇଛି । ତା'ର ଖୋଜା ସରିନଥାଏ, ମିଙ୍କେଇ ତା' ପୁଅକୁ ନେଇ ସେ ଗାଁ ଛାଡ଼ି ତା' ବାପଘରକୁ ଗୁଲିଗଲା ।

ଗପ୍‌ଟାବାଲି ଗାଁରେ ଡାଙ୍ଗୋଲଙ୍ଗା ଗୋହର ଡାକୁକ ମାଝି ଗାଁ ମୁଣ୍ଡିଆଲ ପାଖେ ପହଞ୍ଚି କାନ୍‌କଟା ତାକୁ ଜୁହାର କରି କହିଲା—

"ଭିକ୍‌ଭୁକୁଟି ମୁଣ୍ଡାମାଝି କହୁଛି ତୋ ଗାଁରୁ ଗୋଟାଏ ମୋଟାସୋଟା ଗାଈ ଦେ ମାଝି, ସେ ଖାଇବ ।"

ତେଙ୍ଗା ବୃଷାଳ ଡାବୁକ ମାଝି, ବଡ଼ ମୁଣ୍ଡ, ବଡ଼ ବଡ଼ ଆଖି । ମଦ ଟୋପିଏ ପିଇଥିଲା, ଆଖି ଚଢ଼ା ଚଢ଼ା । ରାଗିଯାଇ କହିଲା—

"କେବେ ତ ଦେଇ ନାହିଁ, ଆଜ କାହିଁକି ଦେବ ?"

'ମୁଁ ଜାଣିନାହିଁ ମାଝି' କାନ୍‌କଣ୍ଟା କହିଲା, ଝପ୍‌ବେଳ, ଗାଁର ବହୁତ ଗାଈ-ଗୋରୁ ତଳେ ଖାଲରେ ଚରୁଥିଲେ ଦଣୁଥିଲା, ସେଇଆଡ଼କୁ ଚାହିଁ ପୁଣି ମୁହଁ ତଳକୁ ପୋଡ଼ି କହିଲା, "ସେ ମାଗିଥିଲା ଦୁ'ପଟ, ମୁଁ କହିଲି ଏଥର ପଟେ ଦେଉ, ଆଉ ପଟେ ଅନ୍ୟ ଗାଁରୁ ଆଣିବା । ତୁ ପଟେ ମୋ ସଙ୍ଗରେ କାହାକୁ ଦେଇ ପଠେଇ ଦେ ମାଝି, ତା'ର ମାଉଁସ ସରିଯାଇଛି ।"

"ତା'ର କ'ଣ ଆଉ ଗୋରୁ ନାହାନ୍ତି ?"

"ଥିବେ । ଦବୁ କି ନାହିଁ ? କ'ଣ କହିବ ?"

"ଯଦି ନଦିଏଁ ? କ'ଣ କରିବୁ ତୁ ମୋର ?"

"ମୁଁ ତୋ ଚାକର, କୁକୁର, ମୁଁ କ'ଣ କରିବି ? କାଲେ ସେ କୋପ କରିବ । ଯେତେବେଳେ ତମ ରାଜ୍ୟର ମୁଣ୍ଡାମାଝି, ତାଙ୍କର ମନ ହେଲା ଖାଇବେ ଭୋଗ କରିବେ । ସବୁ ରଇତ ସବୁ ସାଉଁ ତା ଦେବେ ।"

"ନଦେଲେ କ'ଣ କରିବ ?"

"କେଜାଣେ ମାଝି ? ତାଙ୍କ ପଟେ କେତେ କେତେ ଲୋକ । ତାଙ୍କ ହାତରେ କେତେ ଧନ କେତେ ବଳ, ଝଣ୍ଡା, ଲୁଗା, ଧନୁ କାଢ଼ ଧରି ଶହ ଶହ ଲଢ଼ୁଆ ଧାଂଡ଼ା, ରାଜ୍ୟଯାକ ଭର୍ତ୍ତି ହୋଇଛନ୍ତି, ଆଗ ସେଥିରୁ ପଲେ ଏ ଗାରେ ରାତିଏ ରହିଗଲେ ତ ସବୁ ଗୋରୁ ଗାଈ ସବୁ ଛେଳି ଘୁସୁରି ହାଣି ଖାଇଯିବେ । ଉକ୍‌ଡ଼ୁକୁଟି ମୁଣ୍ଡାମାଝି କହିଦେବ ଅଷ୍ଟ ମୁଣ୍ଡାମାଝି ମଣ୍ଡଳ ବସିଲାବେଳେ, 'ଡାବୁକ ମାଝି ମେଡ଼ୁଆର ହେଲା ।' ସେ କଥା ଯୁ ଜାଣୁ ମାଝି, ଝବର ଆଣିବା ଲୋକ, ଦେଖ୍ ମୁଣ୍ଡ ଉପରେ ବେଳ ହେଲାଣି, କେତେ ବାଟ ଚାଲିଆସିଛୁ, ଯାହା କହିବୁ କହ, ଆଉ ତୋ ଗାରେ ମଟେ ଗଣ୍ଡାଏ ଖାଇବାକୁ ଦବୁ ତ ଦେ, ପୁଣି ଦରିବାଲ୍ ଗାଁ ଯିବି, ଆହୁରି କାମ ଅଛି ।"

ଡାବୁକ ମାଝିର ହୋସ୍ ହେଲା । ଚକିତ ହେଲା । କହିଲା, "ପୁଣି କେବେ କ'ଣ ମାଗି ଆସିବୁ ପାନ୍‌ ବାରନ୍‌ ?"

"ଯେବେ ପଠେଇବେ ।"

"ହୁଁ, ଆଗ ଖାଇସାର, ସାଙ୍ଗରେ ଲୋକ ଦେବି, ଗୋରୁ ପଟେ ନେଇଯିବୁ । ମୁଁ ରାଗିଲି ବୋଲି କହିଦବୁକି ?"

"ତୁଟା କେତେ ଧୂଆଁର, କେତେ ତଳେ। ତୁ କେବେ କାହାଁ ଉପରେ ଘଟିଥିଲୁ ? ଯେ ମାଝି, ମକା ପୁସ୍ତାଏ ମୋ ସାଙ୍ଗରେ ଦବୁନାହିଁ ? ପୋଡ଼ି ଖାଇବ।"

"ଦେବ, ଦେବ—ମାସେ ବସି ବସି ପୋଡ଼ି ଖାଇବୁ, ମତେ ମନେପକାଉଥିବୁ। ଶୁଣ୍ ପାନ୍-କାରକ୍। ମୋ ଗାଁ ସେପାଖେ ଯେ ଯେଉଁ ଢିପ ଅରାକ ଅଛି, ବଣ ମାଡ଼ିଛି, ଡ଼େଙ୍ଗାଗୁଡ଼ାର ମାଝି ଗୁଡ଼ୁନାହିଁ। ଆମର ସେ ଫଣ୍ଡକ ଲୋଡ଼ା। ପାନ୍-ବାରକ୍ ତୁ, ତୁ କହିଲେ ଉକ୍‌ଡ଼ୁକୁଟି ମୁଣ୍ଡାମାଝି ଶୁଣିବ, ତାଙ୍କୁ ଖବର ପଠେଇବେ।"

"ହଉ ହଉ।"

ମାଂସ ଆଉ କନ୍ଦା ପଡ଼ିଥିବା ମାଣ୍ଡିଆ ଯାଉ ପେଟେ, କଛି ମଦ, ବଳ ଫୁଙ୍କିବାକୁ ଧୂଆଁ ପତର। ଖାଇସାରି ଧୂଆଁ ପତ୍ର ପିକା ଟାଣୁଥିଲା। ତା' ଗୃରକରେ ଗହଳ। ନେଳି—ଶାଗୁଆ ବଣ ପାହାଡ଼ ଉପରେ ଖରା ଝଲଝଲେଇଛି। ଦେହକୁ ସଲସଲ ଲାଗୁଛି। କାନ୍‌କଟା ଦୃଶ୍ୟ ଦେଖୁଥିଲା। ଲୋକ ଯାଇଛନ୍ତି ଗୋରୁ ପଟେ ଆଣିବେ।

ବ୍ୟବସ୍ଥାଟା ତା'ର। ଖାଉ ଉକ୍‌ଡ଼ୁକୁଟି ମୁଣ୍ଡାମାଝି ଦ'ଦିନ ଛଡ଼ା ପେଟେ ମାଂସ। ବରନିଲେ ଲୋକ ଦେବେ। ଯେମିତ ଆଶିତଅନ୍ତି ମଣ୍ଡଳା ବସିଲା ଦିନ ଭୋଜକ। ସେ ଆସିଲାଦିନୁ ବରାଦ୍ ଗୃହ୍ଣରଖିଛି। କେଉଁ ଗାଁରୁ ଗୋରୁ, ଆଉ କେଉଁଠୁ ମଦ। ଉକ୍‌ଡୁକୁଟିକୁ ତଲ ବୁଝନ୍ତି—"ପାନ୍-ବାରକା ପାଖବାର ଲୋକ, ନିଜ ପାଇଁ କିଛି ଖୋଜେ ନାହିଁ।" ସେ କହୁଥାଏ। ଅନ୍ୟାନ୍ୟ ମୁଣ୍ଡାମାଝିଙ୍କୁ ବି ବୁଝି ଦେଇଛି।

ଭାବୁଥାଏ—ସବୁ ଲୋକ ଏମିତ। ଅନ୍ୟାସୁ ମାଗଣ ହେଲେ ଆପତ୍ତି କରନ୍ତି, ଗାଉଁ ଗାଉଁ ହୁଅନ୍ତି, ଯେମିତ ଶୁଣେଇଦେବ ମାଗଣ ଉହାଡ଼ରେ ଜୁଲୁମ୍‌ର ବଳ ଅଛି, ଠେଙ୍ଗାର ବଳ ଅଛି, ଯେମିତ ମୁଣ୍ଡ ତଳକୁ ପୋତିବେ। ଉକୁଡ଼୍‌କୁଟିର ନିଜର ବିଶ୍ୱାସ ନଥିଲା ଯେ ତାବୁକ ମାଝି ସହଜେ ରାଜି ହେବ। କହୁଥିଲା, "ଏକେତ ଟଙ୍ଗାରାଙ୍ଗା ଲୋକଙ୍କ ପରି ଡାଙ୍ଗୋଲଙ୍ଗା ଦଂଶର କନ୍ଧ ଖରା ଉନ୍ଧତ, ଖରା ନିଡ଼ରୁଆ, ତହିଁରେ ଏ ତାବୁକ ମାଝି ନିଜେ ଡରଭୟ କ'ଣ ଜାଣେ ନାହିଁ। ବାଘ ସଙ୍ଗେ ହାତୀ ସଙ୍ଗେ କେବେ କେବେ ସେ ମୁହାଁମୁହିଁ ହୋଇଛି, ଡର ନାହିଁ। ଲଢ଼ିବାକୁ କେବେ ଡକରା ପଡ଼ିଲେ ଆଗେ ଆଗେ ଯିବ ତାବୁକ ମାଝି। ତା' ସଙ୍ଗରେ ଲାଗିବା ନାହିଁ, ଥାଉ ସେ।"

"ଯେ ଯେତେ ବଡ଼ ଯୋଦ୍ଧା ହଉ, ଏ ରାଜ୍ୟର ରଇତ ତ ମାହାପ୍ରୁ, ତାକୁ ତୁ ଡରିଲେ ରାଜ୍ୟ ପାଳିବୁ କେମିତ ? ଜଣକୁ ଡରୁଛୁ ଜାଣିଲେ ଆଉ ଜଣେ ଆସିବ ଡରେଇବାକୁ, ମୁଣ୍ଡାମାଝି ବୋଲି କେହି ତମ କଥା ମାନିବେ ନାହିଁ।"

"ତାହେଲେ, କ'ଣ ରୁ କହୁଚୁ ପାଟ୍‌-ବାଉକା ?"

"ଯାହାଙ୍କୁ ଅମାନଆ ବୋଲି ଭାବୁଛୁ, ଆଗ ତାଙ୍କୁ ହିଁ ମାଗଣ ପଠା, 'ଗୋରୁ ଦିଅ, ଫସଲ ଦିଅ, ମଦ ଦିଅ, ଏଇଟା ଦିଅ, ସେଇଟା ଦିଅ ।' ନହେଲେ— ମୁଣ୍ଡାମାଝି ମଣ୍ଡଳ ବସିଲାବେଳେ ତୋ' ମନେପକାଇଦେବ, ରୁ ସେଠି କହିବୁ । ଦାବି କରିବୁ, ଅମାନଆଁ ଯାଓଁ ତାକୁ ସାଧ କରାଯାଉ, ତା ଗାଁ ଜୁଇବାକୁ ଲୁଟିବାକୁ ଲଡ଼ୁଆ ଧାଙ୍ଗଡ଼ା ଆଟ ମେଲାଦିଆଯାଉ । କଏ ଫିରୁରି କରିବ, ମୂଳରୁ ଜାଣିପାରିବା, ମାରି ଉଡ଼େଇ ଦେବା ।"

"ସେମିତି କଲେ ରଇତ ମତେ କ'ଣ କହିବେ ପାଟ୍‌-ବାଉକା ? ନିନ୍ଦା ରଟିବ ।"

"ଲୋକ ନିନ୍ଦାକୁ ଡରିଲେ ମାହାପ୍ରୁ, ଆଗ ନିଜର ସବୁ ଧନ ସବୁ ଜମି ପରଙ୍କୁ ବାଣ୍ଟିଦେଇ କନ୍ଧା ଝୋଳି ଖାଇ ବଞ୍ଚିବାକୁ ବଣକୁ ପଳେଇବା କଥା । କିଛି ହେଲେ ଧନ ଥିଲେ ଯେ ହେଲେ ଇଷା କରିବ, କହିବ ତା'ର ଅଛି ମୋର ନାହିଁ, "କାହା ଆଗରେ ନକହିଲେ ହେଲେ ମନେ ମନେ ନିନ୍ଦୁଥିବ । ସଂସାରକୁ ଆସି ମୁଣ୍ଡାମାଝି ବି ହେଲୁ ମାପ୍ରୁ, ମୁଁ ତୋ କୁକୁର୍‌, ମୋ କଥା ଶୁଣ୍‌, ଯାହାଠୁ ଯାହା ଲୋଡ଼ା ମାଗ୍‌ ଆଣ୍‌ ଖା, ଭୋଗ କର୍‌, କାହା କଥାକୁ କାନ ଦେ ନା, ସାଧ କରିବାକୁ ଲଡ଼ୁଆ ଧାଂଡ଼ା ଅଛନ୍ତି ।"

କୁକୁଡ଼ୁକୁଟି ହସିଥିଲା । ତା'ର ନିତିଦିନ ମଦ ଦରକାର । ମଝିରେ ମଝିରେ ମାଂସ ଦରକାର । ଖେଳିବାକୁ ମାଇକିନିଆ ଦରକାର ।

ସେ ମୁଣ୍ଡାମାଝି । ସତେ ତ ଲଡ଼ୁଆ ଧାଂଡ଼ା ଜାଗିରି ଖାଇ ପୋଷା ହେଉଛନ୍ତି, ସେମାନେ ତା ହାତରେ ।

କାନ୍‌କଟା ପାଟ୍‌-ବାଉକା ତା ହସର ଅର୍ଥ ବୁଝିଥିଲା, ବାଘର ହସ । ଭାବୁଥାଏ, ସାହସ-ଫାହସ ମିଛ କଥା, ଗାଲଭୁରୁଡ଼ି । ଠେଙ୍ଗା ଯାଦ ଟାଣ ଥିବ, ତା ଆଗରେ ସମସ୍ତେ ଚୁପ୍‌ । ଠେଙ୍ଗାର ବଳ ଯେ ଚିହ୍ନି ନାହିଁ ସେ ବଚରା ଅଜ୍ଞାନ ପିଲା ପରି ଠେଙ୍ଗାତଳକୁ ଆସିବ, ଆଉ ଆସିବ ବାୟା, ଯାହାର ବୁଦ୍ଧି ନାହିଁ । ହେଇ ଲୋକଙ୍କୁ ଲୋକେ ସାହସୀ କହୁଥିବେ ପରା । ନହେଲେ ନିଜଠୁଁ ଯେ ଶକ୍ତିବଳା ସେଇଆକୁ ଯେ ଧମକେଇବାକୁ ଯାଏ ତାକୁ । ବାଘର ବା କି ସାହସ ? କେଉଁ ଦନ୍ତାହାତୀ ଆଗକୁ ପଟାଳିଆ ବାଘ ଭିଡ଼ିଯେ ? ଅଣ୍ଡିରି ବାରହା ମାରି ଧାଇଁଲେ ତା ମୁହଁ ଆଗରେ କେଉଁ ବାଘ ଆସି ଠିଆହେବ ?

ଲଡ଼ୁଆ ଧାଂଡ଼ା ଥାଟ ଏ ରାଜ୍ୟର ବଳ, ଏ ମୁଣ୍ଡାମାଝିମାନଙ୍କ ହାତର ଠେଙ୍ଗା । ସେମାନେ ବି ପୁଞ୍ଜା ପୁଞ୍ଜା, ତାଙ୍କ ଦଳପତିମାନଙ୍କ ଭିତରେ ପଡ଼େ ନାହିଁ, ବାଦ, ଦଳପତିମାନେ ଥାଟପତିଙ୍କି ମାନନ୍ତି, ମୁଣ୍ଡାମାଝିଙ୍କି ମାନନ୍ତି । ଥାଟପତି ବି ଗୋଟାଏ ନୁହନ୍ତି ପାଞ୍ଚଟା, ଜଣକର ଅନ୍ୟଜଣକ ସଙ୍ଗେ ଘୋର ବିବାଦ, ମାନୁଥାନ୍ତି ଖାଲି ମୁଣ୍ଡାମାଝିଙ୍କି । ମୁଣ୍ଡାମାଝିମାନେ ସମସ୍ତିଙ୍କ ଖାଉନ୍ଦ, ଜମି ଦେଇଛନ୍ତି ସେହିମାନେ, ମନକଲେ ଜମି ଛଡ଼େଇନେବେ ସେହିମାନେ, ଆଉ ସେ ଲଢ଼ୁଆ ଧାଂଡ଼ାମାନେ ରଇତମାନଙ୍କଠୁଁ ଯେତେ ସୁବିଧା ପାଆନ୍ତି, ମାଗିଲେ ସବୁ ମିଳେ, ତା ବି ସବୁ ଖାଲି ମୁଣ୍ଡାମାଝି ହୁକୁମ ଦେଇଛନ୍ତି ବୋଲି । ଦଳପତି କି ଥାଟପତି ମୁଣ୍ଡାମାଝିଙ୍କ ବିରୁଦ୍ଧରେ କେବେ ମେଳି କରିବେ ନାହିଁ, କି ତାଙ୍କ ହାତରୁ ଠେଙ୍ଗା ଖସିବ ନାହିଁ, ସେ ରାଜୁତି କରିବେ ।

ନିଜ ସ୍ୱାର୍ଥପାଇଁ ସ୍ୱେଚ୍ଛାଚାରିର ଆଉ ଅତ୍ୟାଚାରର—ଯାହା ହାତରେ ଠେଙ୍ଗା ତା ସେ କରିବ, ବାଘ ହିଁ ମଣିଷକୁ ଖାଇବ, ମଣିଷକୁ ଛେଳି ଖାଇବ ନାହିଁ ।

ଆଉ, ବାଘକୁ ଯଦି କେହି ମାରିବ ମଣିଷ ହେଲେ ସେ ବାଘୁଆଟାଏ ହୋଇଥିବ, କିନ୍ତୁ ହେଲେ ଆହୁରି ପରାକ୍ରମୀ ବାଘ, ନହେଲେ ଅକଡ଼ରେ ପାଇ ବାର୍‌ହା କି ହାତୀ । ତାବୁକର ନାଲିଆଖି ନୁହେଁ ।

ଏମାନେ ଆହୁରି କ'ଣ ଗଡ଼ିର ଗଡ଼ିର ହେଲେଣି, ଏକାଥରକେ କଳରବ । ହେଇ ଦୂରରେ, ବାର୍‌ହଆ ପଲ ଚରୁଛନ୍ତି, ପାହାଡ଼ ତଳେ । ଠିକ୍, ପାଟିକୁ ଲାଳ ବୋହୁଥିବ, ମାରଖାଆନ୍ତେ, ପୋଡ଼ା ବାର୍‌ହା ମାଂସ । ବାର୍‌ହା ପଲ ଚରି ଚରି ପୁଣି ଲୁଚିଯିବେ, ଦୂରରୁ ମଣିଷ ଦେଖିଲେ ଧାଇଁପଳାଇବେ, ଏମାନେ ଓଠ ଘୃଟୁଥିବେ ।

ଭାବୁଥାଏ—ଏମାନେ ଏତିକ ବୁଝନ୍ତି, ପେଟକୁ ଖାଇବା, ପାଟି ସୁଖ, ଜନ୍ତୁର ସୁଖ, ତା'ର ପ୍ରକାର ବି ଅଳ୍ପ । କିନ୍ତୁ ଏତିକରେ ଏତେ ଲୋଭ, ଏତେ ଅଧିକାର ଜ୍ଞାନ, ମୋର ଆଉ ତୋର, ତୋର କମିବ, ମୋର ବଢ଼ିବ । ଏତିକ ସୁଖଭୋଗରୁ କାଳେ କିଛି ଊଣା ହେବ ବୋଲି ଏତେ ଡର, ଏମିତି ଆଉ ଜାଣିଚାଏ ସୁଖ ବଢ଼େଇବାକୁ ରଇତ ଉପରେ, ଗାଁ ମୁଣ୍ଡିଆଳି ଉପରେ, ଆପଣା ଭାଇ ଉପରେ— ମୁଣ୍ଡାମାଝି ବି ଜୁଲୁମ୍ ଖଟେଇବାକୁ ଆଗୁସାର, ଯାହା ଉପରେ ଝାମ୍ପିପଡ଼ୁଛି, ସେ ଶାହି ଶାହି ଡାକୁଛି ।

କିନ୍ତୁ ସୁଖ କ'ଣ ବୁଝିଲେଣି ଏମାନେ ?—ପ୍ରକାର ପ୍ରକାର, ଅସୁମାରି, ଯେତେ ଯେତେ ସୁଖ ପାଇଁ ବାହାର ଦୁନଆଁ ବାଇ, କ'ଣ ଜାଣନ୍ତି ଏ ? ଧନ କ'ଣ ଚହ୍ନିଲେଣି ? ବେପାର ଖୋଲିନାହିଁ, ବାଟ ଫିଟିନାହିଁ, ଆଖି ଫିଟିନାହିଁ ।

ଫିଟିବ, ସବୁଦନେ ଏମିତ ଉତ୍ସବ ଲାଗିରହିଥିବ । ଆଖି, କାନ, ନାକ, ପାଟି, ଚମ, ରକ୍ତ, ହାତଗୋଡ଼ ପାଇଁ ନାଚନାଚକା ନୂଆ ନୂଆ ସୁଖ, ମନ ପାଇଁ, ବୁଦ୍ଧି ପାଇଁ—ସବୁ ସୁଖ ପାଇବା ପାଇଁ ଗୋଟାଏ ସ୍ୱର୍ଗ,—ଧନ, ସୁନା, ରୁପା, ତମ୍ବା, ବେଶି ଜିନିଷକୁ ବଦଳେଇଦେଲେ ଅଳ୍ପକେ ରଖିହେବ ହାତ ମୁଠାରେ, ସାଇତି ହେବ, ସଞ୍ଚହେବ, ଯେବେ ମନକଲେ ବଦଳେଇଦେଲେ ତା ବଦଳରେ ମନଇଚ୍ଛା ଜିନିଷ—ଏମାନେ ବି ବାହାର ଲୋକଙ୍କ ପର ହେବେ, ମନ ଲୋଡୁଥିବ—"ଆହୁରି—ଆହୁରି" । ସେତେବେଳେ ଲାଗିଯିବ ଧରାଧରି, ଛଡ଼ାଛଡ଼ି, ବଳୁଆ ଲୋକ ଦୁର୍ବଳଆ ମୁହଁରୁ ଗ୍ରାସ ଝିଙ୍କି ନେଉଥିବ, କାଏ ହାତରେ ମାରୁଥିବ, କାଏ ଭାତରେ ମାରୁଥିବ । ସେତେ-ବେଳେ ବୁଝିବେ ମଣିଷ ସୁବିଧା ପାଇଲେ, ପରକୁ କାବୁ କରିବାକୁ କେଡ଼େ ନିଷ୍ଠୁର ହୋଇପାରେ, ଭୟଙ୍କର ହୋଇପାରେ,—କାଏ ପ୍ରାଣରୁ ମାରିବ, କାଏ କଳବଳ କରି ମାରିବ, କାଏ ମାରିବ ନାହିଁ, ବାନ୍ଧେଇ ରଖି ରକ୍ତ ଶୋଷୁଥିବ ।

ତଥାପି ତ ମଣିଷ ବଞ୍ଚିବେ ?

ଉକ୍ତୁଳୁଟି ଦେଖୁଛୁ, କାନ୍‌କଟା ତା'ର ଆଖି ଆଗରେ ନାହିଁ, ଅଥଚ ଲାଗୁଛି ସବୁବେଳେ ପାଖେ ପାଖେ ଅଛୁ, ସେ ଯୁଆଡ଼େ ଗଲେ ଶୁଣୁଛି କାନ୍‌କଟା ଆଗରୁ ଆସି ତା ପାଇଁ ବରାଦ କରିଯାଇଛି, ତା କାମ ଭଲରେ ଚାଲିବ, ସବୁଠି ଶୁଣୁଛି, ବରାଦ ଦେଇଥିଲା ସେ ନିଜେ, ଉକ୍ତୁଳୁଟି କାନ୍‌କଟାକୁ ପଠେଇଥିଲା । କେବେ ? ମନେ ମନେ ହସେ । ଲୋକଟା ମିଛୁଆ, ତେବେ, ମିଛ କହୁଛି ଉକ୍ତୁଳୁଟିର ହିତ ପାଇଁ, ନିଜ ଲାଭ ପାଇଁ ନୁହେଁ । ଦେଖୁଛୁ, ଗଉଡ଼ମାନେ ତାକୁ ଡରିଲେଣି, ଆଗେ ଭାବୁଥିଲେ ଖାଲି ଭାଇ ବନ୍ଧୁ ପରି, ଡାକନ୍ତି "ଓଡ଼େ ହୋଇ" (ହେ ବନ୍ଧୁ), ପୁରୁଣା କାଳସୂତରେ, ଭାବୁଥିଲେ ବି ସେଇଆ, ସେ ତାଙ୍କ ସାଙ୍ଗ-ସରିସା । ଏବେ ଯେମିତି ଭାବରେ ଚାଲି ଛନ୍ତି ବ୍ୟବହାର କରୁଛନ୍ତି, ଲାଗୁଛି ସେମାନେ ଭାବୁଛନ୍ତି ସେ ସାଧାରଣ ନୁହେଁ, ତାଙ୍କ ଉପରେ ହାତେ ଉଞ୍ଚ, କେବେ ନିଜ ଶରଧାରେ ତାକୁ କରିଥିଲେ ତାଙ୍କ ମୁଣ୍ଡମାଳି, ଏବେ ବୁଝିଲେଣି ତାଠିଁ ଦାଢ଼ ଅଛି, ପ୍ରତାପ ଅଛି, ସେ ସାଧାରଣ ନୁହେଁ । ଆଗେ କେଉଁ ଗାଁକୁ ଗଲେ କାହା ପିଣ୍ଡାରେ ବସୁଥିଲା, ତା ପାଇଁ ଝାଟ ମାରିଦେଲେ ତା ଦେହରେ ଦେହଘଷା ହୋଇ ଠେଲାଠେଲି ହୋଇ ଲୋକ ବସିପଡୁଥିଲେ, ସୁଖ-ଦୁଃଖ ହେଉଥିଲେ, ଘର ଘର ବୁଲି ସେ କଥାବାର୍ତ୍ତା ହେଉଥିଲା, କାହାର କେଉଁ କାମରେ କାନ ଲଗାଉଥିଲା, କାହାପାଇଁ କ'ଣ ସୁବିଧା କରିଦେବାକୁ କେତେବାଟ ଧାଉଁଥିଲା, ନିଜେ କଷ୍ଟ କରୁଥିଲା । ଏବେ ସେ ଗଲେ ତା ପାଇଁ ଅଲଗା

ଖଟ ପଡ଼େ, ଆଡ଼େଇ ହୋଇ ଗାଁ ଲୋକେ ଠିଆହୁଅନ୍ତି, ମାନ୍ୟ କରନ୍ତି, ପ୍ରାର୍ଥନା କରନ୍ତି ତାଙ୍କ ଗାଁର କିଛି ସୁବିଧା ହେଉ । ଅନୁନୟ କରନ୍ତି, ମାଗଣ ଏତେ ନହେଉ ତାଙ୍କ ଗାଁ ଉପରେ, ଏତେଥର ଏତେ ବେଠି ମଗା ନହେଉ, ଘର କାମ କ୍ଷେତ କାମ ଉଜୁଡ଼ିବ, ମୁଣ୍ଡମାଝିମଣ୍ଡଳଙ୍କୁ ନ ପଗୃର ବଣ ହାଣି ନୂଆ ଜମି ଗାଁରେ ମିଶାଇଲେ ଡଣ୍ଡ ଦେବା ନପଡ଼ୁ । ସବୁଠିଁ କାକୁତି, ପ୍ରାର୍ଥନା, ଅନୁନୟ,—ଅତି ପ୍ରୟୋଜନ ନ ପଡ଼ିଲେ ଗାଁ ଚୁଲିଯିବାକୁ ମନ ହୁଏ ନାହିଁ ।

ଦ'ଟା ତିନଟା ମାସରେ ସବୁ ନୂଆ ନୂଆ ବ୍ୟବସ୍ଥା କରିଦେଇଛି ପାଟ୍-ବାଗିକା । ଓ୍ୱାକିବ୍ କଥା । କାହାପାଇଁ ରାଜ୍ୟ ? ଲୋକଙ୍କ ପାଇଁ । ରାଜ୍ୟ ଚଳେଇବାକୁ ଟଙ୍କା ଦରକାର, ପାଣିରେ ଚଳେ ନାହିଁ । କିଏ ତୁଳେଇବେ ? ଲୋକେ । ଯେତେଯେତେ ସୁବିଧା କରିବାକୁ ମନକରିବ, ତାକୁ କରି ତୁଳେଇବା ପାଇଁ ମଣିଷ ଦରକାର, ଥୋଡ଼ାଏ ରହିଥିବେ, ଥୋଡ଼ାଏ ବେଠି ଖଟୁଥିବେ । ଲମ୍ବୁଆ ଧାଂଡ଼ା ଆଟ ପୋଷା ହେବେ, ଖାଇପିଇ କସରତ କରି ଦମ୍ଭ ରହିଥିବେ, ନ କରନ୍ତୁ କାମ, ଖାଲି ଖେଳନ୍ତୁ ଆଉ ଧାଂଡ଼ୀନାଟ କରାନ୍ତୁ, ଠେଙ୍ଗା ଥିଲେ ହିଁ ହେଲା, ସବୁବେଳେ କି ସବୁଦିନେ ପିଟୁଥିବ ତା ନୁହେଁ । ଲୋକଙ୍କ ଲୋଡ଼ାପାଇଁ ନାନା ଜିନିଷ ତିଆରି ହେବ, ସାଇତା ହୋଇ ଠୁଳ ହୋଇ ରହିବ, ଯେ ଯେଉଁ କାମ ଜାଣେ କରିବ, ଅମାର ପୂର୍ଣ୍ଣ ହୋଇ ରହିବ, ଇନ୍ତୁ ନପାଇଲେ ଖୋଲିହେବ, କେଉଁଠି ନୂଆ ନୂଆ ବଡ଼ ବଡ଼ ଜମି ଚକଡ଼ା, କେଉଁଠି ନୂଆ ତୋଟା, କେଉଁଠି ପାଣିବନ୍ଧ ହେବ, ବାଟ ଚାଲିବାକୁ ସଡ଼କ ତିଆରି ହେବ, ବାପମରି ହେବ, ହାତୀ ଘୋଡ଼ା ଗାଡ଼ି ମରାମତି ହେବ, କେତେ କ'ଣ ହେବ । ତେଣୁ, "ଦଅ, ଆହୁରି ଦଅ ।" ଆସିଲେ, ମୁଣ୍ଡମାଝିମାନେ ଭାଗେ ନେବେ, ସେମାନେ ବି ରାଜ୍ୟର ସେବକ, ସାନସାନ ସେବକ ବି ବଣ୍ଟା ପାଇବେ, "ସବୁ ସେବକ ବାଣ୍ଟି କୁଣ୍ଟି ଖାଉନ୍ତୁ, କାହାର ମନରେ ଅଶାନ୍ତି ନରହୁ ।"

ସତ ତ, ଆଗରୁ କନ୍ଧ-ମାଢ କହିଛି, "ପାହା କାହାଁ ଢଞ୍ଜାରି" ("ବାଣ୍ଟି କୁଣ୍ଟି ଖାଇବା") ।

ଭାବୁଥାଏ—କୁଆଡ଼ର ଲୋକ ଯେ ? ବୁଦ୍ଧିଆ ଲୋକ, କାମିକା ଲୋକ, ଦରକାରି ଲୋକ ।

ତା'ର କେତେ ପରାମର୍ଶ ସେ ଗ୍ରହଣ କରିପାରନାହିଁ, ମନକୁ ଅଲଗେ ଛୁଉଁଛି, ବେଳେବେଳେ ଲାଗୁଛି, କନ୍ଧ ଯେପରି ଭାବେ,—ଚନ୍ଦ୍ର ଗ୍ରହଣ ସମୟରେ, ସୂର୍ଯ୍ୟ ଚନ୍ଦ୍ରକୁ ଗିଳିବାକୁ ବସିଲାବେଳେ,—ଧଡ଼ରୁ ଅଲଗା ହିକିଏ ରାସିଛି । ପୁଣି ଭାବୁଛି, ତା ବି ଠିକ୍ ନାହିଁକି ? ପାଟ୍-ବାଗିକା ନିଜ ହିତପାଇଁ କହୁନାହିଁ, କହୁଛି ତା ହିତପାଇଁ ।

ଯୋଡ଼ିଏ କଥା କେତେଥର ଫୁଟ୍‌ଫୁଟ୍ ହେଉଛି, "ତୋ ନଜର କର ଗୋଟାଏ ଟାଣୁଆ ଲଡ଼ୁଆ ଧାଂଡ଼ା ଥାଉ ପୋଷିଥା ମାହାପ୍ରୁ, ଏତେ ଫସଲ ତୋର, ପଚ ସଡ଼ିଯାଉଛି, ଖାଇ ବଞ୍ଚିଥିବେ, ଭତେ ଜଗିଥିବେ, ତୁ ବାଟ ଗୁଲଲେ ତୋ ଶୋଷ ବଢ଼ିବ ।"

ଆଉ, "ସବୁ ମୁଣ୍ଡାମାଝିଙ୍କି ହେଲିଲ, ହେଲେ ତୋ ପରି ଏତେ ବୁଦ୍ଧିଆ, ଏଡ଼େ ବୁଗୁରବନ୍ତ, ଏଡ଼େ ପାରବାର କେହି ନାହିଁ । ଗୋଟାଏ ଦେଶକୁ ଗୋଟାଏ ସିନା ମଣିଷ, ଗୋଟାଏ ମଣିଷକୁ ଗୋଟାଏ ସିନା ମୁଣ୍ଡ, ଗୋଟାଏ ରାଜ୍ୟକୁ ୫୦ ଆଠ ଜଣ ମୁଣ୍ଡାମାଝି କେମିତ ସୁବଧା ମାହାପ୍ରୁ ? ମୁଁ ତୋର କୁକୁର୍, ମତେ ଗୋଇଠା ମାର୍, ମୋ କଥା ଧର୍ ନାହିଁ, ଏମିତି କହିଦେଲ । ଥାଉନ୍ତୁ ଆଠଜଣ, ଜଣେ ତାଙ୍କ ମୁରବ ଥାନ୍ତା, ସବୁଠୁ ବଡ଼, ରଜାମାନଙ୍କ ଉପରେ ମହାରାଜା, ମୁଣ୍ଡାମାଝି ଉପରେ ପାଟ୍‌ମୁଣ୍ଡାମାଝି, ସେ ଜଣକ ହ'ନ୍ତୁ ତୁ—କୋଟଡ଼ଗଣ୍ଡା ଜ୍ଜିକଡ଼କୁଟି ପାଟ୍-ମୁଣ୍ଡାମାଝି । ଆଉ ମୁଁ ତ ତୋର କୁକୁର୍, ପାଟ୍-କୁକୁର୍, ପାଟ୍-ବାଉକା ।"

ନା, ନା, ଏଇଟା ହେବାର ନୁହେଁ, ଗୁଣ୍ଡରେ ଧରବା କଥା ନୁହେଁ, ଯେତେ ମଦ ପିଇଲେ ବ ଆଉ ସାତଜଣଙ୍କ ମୁହଁ ଆଖି ଆଗରେ ଜଳଜଳ ଦିଶେ, ସେ ବଶ୍ୱାସଘାତକ ହେବନାହିଁ, ସ୍ୱେ ତମ୍ ପଟ୍‌କାର (ଅସନ୍ତ) । ନା, ପଟ୍‌କାର୍ କେମିତ ? ତା ନଜ ସ୍ୱାର୍ଥ କ'ଣ ? ବାଉକା ବୁଝାଏ, "ନହେଲ ମୋ କଥା ଲେଉଟାଇନେଲ ମାହାପ୍ରୁ । ତେବେ, ତୋର ହିତପାଇଁ କହିବା କାମ ମୋର, ପୁଣି ଏ ରାଜ୍ୟର ହିତପାଇଁ, ତମର ଦାନା ଖାଇ ବଞ୍ଚିଛି । ଯେ, ମଣିଷ ନଜେ ଚଳିବା ବାଗ ଭିନେ, ରାଜ୍ୟଯାକକୁ ଚଳେଇବା ବାଗ ଭିନେ । ଭଲ ଅସାର, ନଜ ବେଲକୁ ଯାହା, ରାଜ୍ୟ ଚଳେଇଲ ବେଲକୁ ତା' ନୁହେଁ । ଭାଉଯାକୁ କେହି ଠେଙ୍ଗା ଦେଖେଇ ଡରେଇ ବାନ୍ଧରଖେ ? ଏଣେ, ଠେଙ୍ଗା ନ ଦେଖାଇଲେ ରାଜ୍ୟ ଚଳେ ନାହିଁ । ରାଜ୍ୟକୁ ଦମ୍‌କର ଚଳେଇବାକୁ, ରାଜାମାନେ ଶୁଣିଛି ଆପଣା ଲୋକଙ୍କୁ ବ ମାରିଦକାନ୍ତି, ଭାଉଯାକୁ ବଣକୁ ବାଘମୁହଁକୁ ପେଲ ପଠାନ୍ତି । ଯୋଉଟା ଯେତେବେଳେ ଲୋଡ଼ା ପଡ଼ିବ ତୁ ତୋ ମନୁକୁ ମନ କରିଯିବୁ, ମୁଁ ଜାଣେ, ମୁଁ ଟା କହିବାକୁ କିଏ ?"

ଭାବଲେ ସେ ଡରେ, ମଦ ପିଏ, ଧାଂଡ଼ୀ ଖୋଜିଯାଏ । ବଷ ହେଲ ଲୋକ, ପୁଣି ଗୁରଗୁରଟା ଭାଉଯା, କନ୍ଧ-ଘରେ ଏପରି ପସନ୍ଦ କରନ୍ତି ନାହିଁ, ଆଗେ ଏ ଖୋଇ ନଥିଲ ତା'ର । କନ୍ତୁ କେହି ତ ଆପତ୍ତି କରେନାହିଁ । ସବୁ ମୁଣ୍ଡାମାଝି ସେହିପରି, ଟାଂଗ୍ରା,—ସେ ତ ଏ ବୟସରେ ଜନ୍ତୁ, ବାପ୍ପା ପରି । ବଡ଼ଲୋକକୁ ଉତ୍ତର ନାହିଁ । ରାଜ୍ୟର ବଡ଼ ବଡ଼ ଯେ, ରାଜ୍ୟର ସବୁଯାକ ବୋଝ ଯାହାଙ୍କ ମୁଣ୍ଡ ଉପରେ, କିଏ ନଜାଣେ ସେ କଣ କହିବ ?

ସବୁ ମୁଣ୍ଡାମାଝି ଏ ପାଟ୍‌ବାଗଙ୍କୁ ପ୍ରଶଂସା କରନ୍ତି, ତା ବ୍ୟବସ୍ଥାରେ ସମସ୍ତିଙ୍କର ସୁବିଧା, ରାଜ୍ୟକାମରେ ସୁବିଧା, ଉକ୍‌ଡ଼ୁକୁଟି ବୁଝିପାରେ—ଅନ୍ୟମାନଙ୍କୁ କହୁ କହୁ ନପାରେଲେ ବି କାନ୍‌କଟା ତାକୁ ବେଶି ବେଲ ବେଶି ନପାଦଏ, ସମସ୍ତେ ଉର୍ଣ୍ଣାନ୍ୱିତ । କିନ୍ତୁ ସେ ବିଷୟରେ ତ କାନ୍‌କଟା ଆଗରୁ କହୁଛି, ଏବେ ବି କହେ— "ତମ ହୁକୁମ୍ ହେଲେ ତ' ଚାର ମାସ ମୁଁ ସେ ଦେଶକୁ ଯିବ ମାହାପ୍ରୁ, ଯୋଉଠୁ ଆସିଥିଲି ସେ ଦେଶକୁ । ଖାଲି ହାତରେ ଗଲେ ମୋ କଥା କେହି ବିଶ୍ୱାସ କରିବେ ନାହିଁ । ସାଙ୍ଗରେ କୋଡ଼ିଏ ଜଣ ମଣିଷ ପଠାଅ, ଜିନିଷ ଢର ଧରନ୍ତୁ, ତୁମ ସୀମା ସେକରେ ମୁଁ ତାକୁ ବଦଳେଇ ସେ ଦେଶର ନାନା ଜିନିଷ ତୁମପାଇଁ ଆଣିବି । ମୋ ହାତରେ ଜିନିଷ ଦେଖିବେ, ତେଣର ଲୋକ ମୋ କଥାକୁ ବିଶ୍ୱାସ କରିବେ । ବାଛୁ ବାଛୁ ଲୋକ ଖୋଜିବ, ବିଶ୍ୱାସୀ ଲୋକ, କାମିକା ଲୋକ, ନାନା ନୂଆ ନୂଆ ଧନ୍ଦା ଜାଣିଥିବା ଲୋକ, ବେପାରୀ ଲୋକ, ବାଗନ୍ କାମ କରିବା ଲୋକ । ପିଲା କୁଟୁମ୍ବ ଧରି ସେମାନେ ଆସିବେ, ତାଙ୍କୁ ତୁମେ ଜାଗା ଦେବ ରହିବାକୁ, ଭୂମି ଦେବ ଚାଷ କରିବାକୁ, ସୁବିଧା ଦେବ ଧନ ତିଆରି କରିବାକୁ, ଦୋକାନ ବଜାର କରିବାକୁ, ସେତେବେଳେ ବୁଝିବ ସୁଖ କାହାକୁ କହନ୍ତି । ମଉଜ ମଜଲିସ୍ ଧନ ସମ୍ପତ୍ତି କାହାକୁ କହନ୍ତି । କେତେ ସୁନା ଜମେଇବ ଜମା, କେତେ ପ୍ରକାର ପିନ୍ଧିବ ଖାଇବ ପିଇବ ଭୋଗ କରିବ କର । ଦେଖିବ ଏ ଦେଶ କ'ଣ ହେବ । ଏବେ ଯେତେ କଲେ ବି ମୁଁ ଜଣେ ମନୁଷ୍ ତ ମାହାପ୍ରୁ, ଦଟା ହାତ ଦଟା ଗୋଡ଼ ସେତକ । ତୁମେ କହିଥିଲ ଆଗ ପନ୍ଦର ପର ଡାକ ଆଣ, ପଛେ କାମ ଦେଖିଲେ ଆଉ ବେଶି । ମୁଁ ନାହିଁ କରୁନାହିଁ, ଯେ—ଗଲେ ତ ଆଗ ?"

ସମସ୍ତେ ରାଜି ହୋଇଛନ୍ତି । ସେ ଯିବ, ଯାଉ । କିନ୍ତୁ ଏଡ଼େ କାମିକାଲୋକ, ସେ ଦଣ୍ଡେ ଗଲେ ବି ଯୁଗେ ପରି ଲାଗିବ, ଉକ୍‌ଡ଼ୁକୁଟି ଭାବିଲା ।

ମୁଣ୍ଡାମାଝିମାନେ ରାଜିହେଲେ । ପୁଷମାସର ମଝି, କାନ୍‌କଟା ସଙ୍ଗରେ ବାରଜଣ ଦମ୍ଭିଲ ଦମ୍ଭିଲ କନ୍ଧ ଭରୁଆଙ୍କୁ ଦେଇ ବାରଭର ଜିନିଷ ପେନଗଲା । ଜିନିଷ ତା' ମନକୁ ଆସିଛୁ, ଉକ୍‌ଡ଼ୁକୁଟି ମୁଣ୍ଡାମାଝି ଆଦେଶ ଦେଇଥିଲା ।

ସେ ନେଇଛୁ ପାଳୁଅ, ହଳଦୀ, ରାଶି, ସୋରିଷ, ଅଧ ସୁଆଦ କଳା କାନ୍ଦୁଲ (ବଡ଼ ହରଡ଼), ଧଳା ବିରିହ, ମୁଗ, ଧୂଆଁପତ୍ର, ଶୁଖିଲା ଲଙ୍କା, ତା'ଛଡ଼ା ଅନ୍ୟାନ୍ୟ ଫସଲରୁ ଅଳ୍ପ ଅଳ୍ପ । ବଦଳ ଦେଇ ନୂଆ ଜିନିଷ ଆଣିବ କହୁଛି ।

ବାଟେ ବାଟେ ରହି ରହି ଗଲେ । ତା'ପରେ ପହଞ୍ଚିଲେ ଗର୍ଗିମାହାଁ, ରୁଇ ଲୋଉଟୁଥିଲା; ବୁଢ଼ା ହଟି ମାଝି ଖଟ ବୁଣୁଥିଲା, ତା' ଭେଣ୍ଡାପୁଅ ଚୈପା ପାଖରେ ଥାଇ ଧୂଆଁ ପିଉଥିଲା, କନ୍ଧମାନେ ବଣରୁ ଫେରିଥାନ୍ତି, ଆଣିଥିବା କାଠ, ଶାଗ, କନ୍ଦା, ବଣଛତୁ ସଜେଇ ଥୋଇଥାନ୍ତି, ଗପୁଥାନ୍ତି ।

ଉକ୍ତି କହିଲା, "ପୁଣି ଆଉଲୁ ? କୋଉଠୁ ଆଇଲୁ ? କୁଆଡ଼େ ଯିବୁ ?" କାନ୍‌କଣ୍ଠା ବୁଝେଇ ବସିଲା, ମୁଣ୍ଡାମାଝିମାନଙ୍କ ଦସ୍ତାରୁ ଯେ ହୋଇଛୁ ତାଙ୍କ ପାନ୍-ବାଶକା, ଏସବୁ ତାଙ୍କ ଜନପ, ବଦଲ ହୋଇ ସେପାଖ ଦେଶରୁ କେତେ ନୂଆ ଜନପ ଆସିବ, ସେମାନେ ପଠେଇଛନ୍ତି, ବଦଲା ହେବାଯାକେ ତା' ଗାରେ ରଖିଲେ ଭଲ, ଏ କନ୍ଧ ଭାଇମାନେ କେତେଦନ ଆଉ ନକମା ହେବେ ? ଘରକୁ ଫେରିଯାନ୍ତେ । ଯେତେବେଳେ ତାର ଦରକାର ପଡ଼ିବ, ହକ୍ତି ମାଝି ଥରକେ ଦ' ଦନ ପାଇଁ ଦ'ଜଣ ଲୋକ ଦେଲେ ସେ କଚ୍ଛ କଚ୍ଛ କର ବୋହିନେବ—ମୁଣ୍ଡାମାଝିଙ୍କ କାମ ତ, କଏ କ'ଣ କରିବାକୁ ମନା କରିବ ?

ହକ୍ତିର ଆପତ୍ତି ନାହିଁ । କନ୍ତୁ ପଚାରିଲା, "ପଦାରୁ ଆଉ କ ଜନପ ଆମର ଦରକାର ଥିଲା ଯେ ବଦଳା ହେବ ? ଯାହା ଦରକାର ସବୁ ତ ନଜେ କରୁଁ । ଖାଲି ଠିକଏ ସୁସ୍ଥିରେ ରହିଲେ ଭଲ । ସୁଖ ଶାନ୍ତି ତ ଧର୍ମୁ ଧର୍ତ୍ତିମାଙ୍କ ଦସ୍ତା, ତାକୁ କଏ କ'ଣ ବଦଲ ଦେଇ ଆଣିଯାଉବ ? ନା ଏସବୁ କ'ଣ ମୂର୍ଖ ବୁଦ୍ଧି କେଉଁ ସଇତାନ୍ ଦେଇଛୁ !"

କାନ୍‌କଣ୍ଠା ହସିଲା, କହିଲା, "ଥଏ ଧର୍, ସବୁ ବୁଝେଇବ । ଏସବୁ ଏ ଦେଶ ରଇତଙ୍କ ଭଲପାଇଁ । ମୁଣ୍ଡାମାଝିମାନେ ବୁଝିବା ଲୋକ ମାଝି, କେତେ କଥା ବଚାର କରନ୍ତି । ତେମେ ଆମେ ଖାଲି ଆମ ଗାଁଟିମାନଙ୍କ କଥା ଜାଣୁ, ସେମାନେ ସବୁ ବୁଝନ୍ତି, ସବୁ ଗାଁ କଥା, ରାଜ୍ୟଯାକ କଥା, ଦେଶ ବାହାରର କଥା ବୁଝନ୍ତି । ଏଥର ରାଜ୍ୟରେ ସତେ ସୁନା ଫଳିବ, ସୁନା ପଚେଇବାକୁ କେତେ କେତେ ଜାଣିବା ଲୋକ ଆସିବେ ।"

ଆସିଥିବା କନ୍ଧମାନେ କହିଲେ, "ସତ ସତ ।"

ହକ୍ତି ମାଝି କହିଲା, "ହଁ, ଆସିବେ, ପଚେଇବେ, କାଟିବେ, ନେବେ, ଆମର କ ଯାଏ ?"

"ସେମିତ ନୁହେଁ, ସେମିତ ନୁହେଁ", କାନ୍‌କଣ୍ଠା କହିଲା, "ମୁଁ ସବୁ ତତେ ବୁଝେଇଦେବ । ଆଚ୍ଛା କହିଲୁ ଏଠୁ ଆମ ରାଜ୍ୟର ସନ୍ଧ କେତେ ବାଟ ?"

"ସନ୍ଧ ତ ପାଖ, ବଡ଼ ପାହାଡ଼ ଓହ୍ଲେଇ ଓହ୍ଲେଇ ଯିବାକୁ ପଡ଼ିବ, ସେଇଠୁ, ସେଇଠୁ ଗାହଗୀଡ଼ା ଦଇ, ବେଶି ଓସାର ନୁହେଁ, ସେଡ଼େ ଗହର ନୁହେଁ, ପଶିଗଲେ ସେ ଦେଶ । ସକାଳେ ଲଠିଏ ବେଳ ହଦଲେ ଗଲେ ମୁଣ୍ଡେ ବେଳ ଥିବ ପହଞ୍ଚିହେବ । ଥରେ ଯାଇଥିଲି ବଳଦ କଣି, ବଡ଼ ହାଟ ବସେ, ଆମୁଗା କ ଯାମୁଗା କହନ୍ତି, ତେଣର ଭାଷା ମୁଁ ବୁଝିପାରେ ନାହିଁ, ମତେ ଡର ଲଗେ । ଆମେ ଯାଉ ନାହିଁ । ପଦା ଦେଶ ସେଇଟା, ବଣ ଦେଶ ତ ନୁହେଁ !" କାନ୍‌କଣ୍ଠା ମନେ ମନେ ଖୁସି ହେଲା ।

ଥରେ ତଳକୁ ଗଲେ ସେ ବାଟ ପାଇବ । ପର୍ବତ ପର୍ବତ ମଣିଷ ଲଙ୍ଘା ଯାଏ । ତା’ ଜନପଦ ରଚାହେଲା । ଷରୁଆମାନେ ଭଡ଼ିଆ ଆଣିଥିଲେ, ରନ୍ଧବାକୁ ଗଲେ ।

ସଞ୍ଜରେ ସ୍ତ୍ରୀ ପୁରୁଷ ଜମାହେଲେ । କାନ୍‌କଟା କଥା ଗପିବା ଆରମ୍ଭ କଲା । କିଛିମାନେ ରଜା, ଅନ୍ୟମାନେ ଯାହାର ହେଲେ ତଳିଆ ଲୋକ । କିଛିମାନେ ଘୋଡ଼ା, କିଛିମାନେ ଭଲ,—“ସେମାନେ ତା କଥା ପିଇଯାଉଥାନ୍ତି, ସେ ତାଙ୍କୁ ଟେକୁଥାଏ । ତା’ପରେ ସେ ବୁଝେଇଲା, ମଣିଷ—ଜନ୍ମ ପାଇଲେ ଜନପଦ କମାଣି କଲେ ଲୋକ କେତେ ପ୍ରକାର କେତେ ସୁଖ ପାଇପାରେ, ଖାଇବା, ପିଇବା, ପିନ୍ଧିବା, ନାଇବା, ରହିବା, ଚଳିବା ସବୁଥିରେ,—ସୁନା ରୂପା କରି ଭବିଷ୍ୟତ ପାଇଁ ସଞ୍ଚିପାରେ,—ସେମାନେ ଏସବୁ କିଛି ପାରୁନାହାନ୍ତି, ଖଟିବା ସତେ ଅବା ବୃଥା ହୋଇଯାଉଛି । ସେ ଉପାୟ କରିବାକୁ ବସିଛି ଯେମିତି ସେସବୁ ହୋଇପାରିବ, ଏ ଦେଶର ଲୋକ ତଳଦେଶର ଲୋକଙ୍କଠୁଁ ବଳି ସୁଖରେ ରହିବେ, ଧନୀ ହେବେ, ମୁଣ୍ଡାମାରିମାନେ ସେଇଆ ଚାହାନ୍ତି ।

କଥାରେ ସତେକି ସେ କମିଆଁ ଲଗାଇଦିଏ, ଆଖିଆଗରେ ଛବି ଟାଙ୍ଗିଦିଏ, ଛବି ଜୀଇଉଠେ । ଟୋକାଏ ଖୁସିରେ ହସନ୍ତି, ଉଠିପଡ଼ନ୍ତି, ଏକରି ସେକରି ହୁଅନ୍ତି, ବସନ୍ତି; ସ୍ତ୍ରୀଲୋକମାନେ ସ୍ୱପ୍ନ ଦେଖନ୍ତି ।

ହଟି ମନରେ ମନରେ ସମାଲୋଚନା କରି ପଦେ ପଦେ କହେ—“ଧନ ବଢ଼ିବ, ମଣିଷ ଦେହମୁଣ୍ଡ ସଜେଇବ, ନରମ ଆଉ ଆରାମ ଖୋଜି ଖୋଜି ନିଜେ ନରମା ହୋଇଯିବ,...ଅଚିହ୍ନା ପଦାରୁ କିଛି ଲୋଡ଼ା ନାହିଁ କହିଲେ ଚଳେ, ନିହାତି ଦରକାର ପଡ଼େ ଲୁଣ ଟିକିଏ, ଆଉ ସେତେବେଳେ ଯେ,—ଅଭ୍ୟାସ ହୋଇଯିବ, ସବୁ ଲାଗିବ ନିହାତି ଦରକାରୀ ବୋଲି, ନ ମିଳିଲେ ଲାଗିବ ବଞ୍ଚିବା ବୃଥା ।” ହଟି ଖେଁ ଖେଁ ହୋଇ ହସିଲା ।

କିନ୍ତୁ ତା କଥାକୁ କେହି କାନ ଦେଉନଥାନ୍ତି, ଶୁଣୁଥାନ୍ତି କାନ୍‌କଟା କଥା, ସେ ଖପିଯାଉଥାଏ ।

କହିଲା “ପଦାରୁ କିଛି ନ ଲୋଡ଼ି ବଞ୍ଚନ୍ତି ବଣର ଜନ୍ତୁ, ଯେମିତି ହରିଣ, ମାଙ୍କଡ଼ । ତା ବୋଲି ମଣିଷ କ’ଣ ସେଇଆ ହେବ ? ତୁମେ ସୁନା ପିନ୍ଧିବ ନାହିଁ କାହିଁକି ? ରଙ୍ଗରଙ୍ଗର ଲୁଗା ପିନ୍ଧିବ ନାହିଁ କାହିଁକି ? ଜାଢଜାଢକା ବାଜା ବଜେଇବ ନାହିଁ କାହିଁକି ? ତୁମେ କାହିଁକି ଘୋଡ଼ାରେ ନ ବସିବ, ଗାଡ଼ିରେ ନ ଚଢ଼ିବ ? ତଳ ଦେଶର ଲୋକେ ତୁମଠୁଁ କି ବଡ଼, କିବା ଧନୀ ? ସେମାନେ ପାରୁଛନ୍ତି, ସେ ବାଗ ଜାଣିଛନ୍ତି ବୋଲି । ତୁମେ ବି ଶିଖିଯିବ ।”

ହରି କହିଲା, "କର ତୁମେ ଟୋକାଏ ଯାହା କରିବ । କିଏ ତମକୁ ଅଟକାଉଛି ? ଯାହା କର, ଭାବିବ ସେଥିରେ ସୁଖ କେତେ, ଦୁଃଖ କେତେ, ଲାଭ କେତେ, ଲୋକସାଣ କେତେ ।"

ଟ୍ରେପା କହିଲା, "ତା କିଏ ନଭାବିବ, ଓଲୁ ହୋଇଛ ? ତେବେ ଏ ଯାହା କହୁଛ, ଭଲ, ସତ ହେଲେ ହେଲା ।"

ସେମାନେ ସ୍ୱପ୍ନ ଦେଖୁଥିଲେ କଳ୍ପିତ ସୁଖ ସମୃଦ୍ଧିମୟ ନୂଆ ଯୁଗର ।

ପିଣ୍ଡାରେ ନିଆଁ ଆଡ଼କୁ ପାଦ ଦେଖାଇ କୁଟାଗଦା ଉପରେ ଶୋଇ ଶୀତ ଘାଉରେ ଭଲ ନିଦ ହୋଇଥିଲା କାନ୍‌କଟାର, ସକାଳେ ନିଦ ଭାଙ୍ଗିଲା ଶୀତରେ, ଦେଖିଲା, ଘରସାକ ନିଆଁକୁ ବେଢ଼ି ବସିଛନ୍ତି, କାଠ ପକାଇଛନ୍ତି, ଫୁଙ୍କୁଛନ୍ତି, ପିକା ଟାଣୁଛନ୍ତି, ଗପୁଛନ୍ତି । ହିନ୍ତାବୁଢ଼ା କହିଲା, "ମୁଁ କ'ଣ ଭାବୁଥିଲି କି ? ସନ୍ଧ ଆଡ଼କୁ ତ ଯିବୁ, ସନ୍ଧ ଗାହାଗାଡ଼ା ନଇ, ଯେ ଦେଶରେ ଜିନଷ ବଦଳା କରି ଆଉ କ'ଣ କ'ଣ ଆଣିବୁ, ତେବେ ତୋ ଜିନଷ ଏଠି ନରଖି ଡେଙ୍ଗାଗୁଡ଼ାରେ ରଖିଲେ ତତେ ନବା ଆଣିବାକୁ ପାଖ ପଡ଼ିବ । ସେ ଘାଟି ଉପରେ ଅଛୁ ବା କରକୁ ଡେଙ୍ଗାଗୁଡ଼ା, ସେଠି ଆମର ବନ୍ଧୁଲୋକ ଅଛନ୍ତି, ମୋଟେବୁଙ୍ଗା ଗୋଜର, ଏ ଟ୍ରେପା ପାଇଁ ସେଗୁଡ଼ାର ମାଝି କଡ଼ଙ୍ଗର ଝିଅ ସାମ୍ନାକୁ ଠିକଣା କରିଛୁଁ, ଚଇତରେ ବିଭା, ଟ୍ରେପା ବି ଯାଉ, କଡ଼ଙ୍ଗ ତତେ ବସା ଦେବ, ତୋ ଜିନଷ ସାଇତ ରଖିବ, ଯେତେବେଳେ ତୋର ଦରକାର, ବୋହି ନେବାକୁ ଲୋକ ଦେବ, କିଛି ଅସୁବିଧା ହେବନାହିଁ ।"

"କାଲି କହିଥିଲେ ଏକା କ୍ଷେପକେ ଭାରୁଆ ନେଇଯାଇଥାନ୍ତେ ମାଝି ।"

"ଆରେ, ଏତେ ଦନକେ ଶନ୍ଧାକୁଣିଆଁ ଆସିଲୁ, ସବୁଏ ରହ ବୋଲି କହନ୍ତି ନାହିଁ ? ତୁମେ ଏତେଜଣ ଆଇଲ, ଠିଆ ଠିଆ ଯାଆନ୍ତ ? ଖାଆନ୍ତ ନାହିଁ କିଛୁ ? ଗପନ୍ତ ନାହିଁ ଟିକିଏ ? ବଣ ଭିତରେ ଅନ୍ଧାର ହୁଅନ୍ତା, ଅନ୍ଧାରରେ କଡ଼ଙ୍ଗ ଘରେ ପହଞ୍ଚିଲେ ତାକୁ ଅଡ଼ୁଆ ହନ୍ତା । ସେଇ ଭାରୁଆ ଯିବେ, କହିଦେଇଛୁ ।"

କୁଟା ବୋବାଳି ସରିଲା, ମୟୂର ବୋବାଳି ସରିଲା, କୁହୁଡ଼ି ଦୂରେଇ ଦୂରେଇ ଗଲା, ଖରା ତେଜିଲା । ମାଝି ଘରେ ପେଜ୍ ପିଇ କାନ୍‌କଟା ଉଠିଲା, ଭାରୁଆ ଗଲେ, ଆଉ ଗଲେ ମାଝିର ପୁଅ ଟ୍ରେପା, ତା ସାଙ୍ଗକୁ ଡୁଡ଼ୁ ଓ ଦୁଆ ।

ଆଗ ପର୍ବତ ଚଢ଼ାଣି ଚଢ଼ାଣି ଚଢ଼ାଣି, ଗୋଟାଏ ଗଲେ ଆଉ ଗୋଟାଏ ଦାକରେ ଶାଳବଣ ଦୂରେଇ ଦୂରେଇ ଯାଉଛି, ମଝିରେ ସଫା ହୋଇ ଅଳସି କ୍ଷେତ, କାନ୍ଦୁଲ କ୍ଷେତ, ଅଳସି ମର ମର ଆସିଲାଣି, ଶୁଖିଲେ ଅମଳ ହେବ, କାନ୍ଦୁଲ ଗଛ ଫଳଭର୍ତ୍ତି, ଛୁଇଁ ପାକଳ ହେଲାଣି । ସେହି ଖୋଲ ଅଗ୍ରକ ଭିତରେ ବାଟ ପଡ଼ିଛି । ମୁହଁ ଆଗରେ ନେଳ କଇଁପର ଆକାଶ, ଆଉ ନୂଆ ଦନ ।

ଉପରେ ବାଁକୁ ପର୍ବତ ଆହୁରି ଉପରକୁ ଉପରକୁ ଉଠିଯାଇଛି, ଡାହାଣେ ବି ଉଠିଛି ଲମ୍ବିଛି, ସେଡ଼େ ଉଚ୍ଚ ନୁହେଁ, ମଝିରେ ଘାଟି ବାଟ । ଘାଟି ମୁଣ୍ଡରେ ଠାଏ ବଡ଼ ଚଟା ପଥର ଅଛି, 'ଗୁଁଚଗ୍ର', ଗ୍ରାଇ କରିଛି ମୋଟା ଝଂକା ପ୍ରକାଣ୍ଡ ଉଚ୍ଚ ପୁରୁଣା ମହାଲମ୍ବ ଗଛ । ପାତାଳ ପରି କେତେ ତଳେ ଦୂରରେ ଦିଶୁଛି ଧୂଆଁ କଳା ହୋଇ ସମତଳ, ମେଞ୍ଚା ମେଞ୍ଚା ତୋଟା । ଡାହାଣେ ଆକାଶରେ ସୂର୍ଯ୍ୟ । ଚେପ୍ରା କହିଲା, "ପାହାଡ଼ ତଳେ ଆମ ରାଜ୍ୟର ସନ୍ଧ, ଶାହାଗାଡ଼ ନଈ, ଆଢ଼ୁଆରେ ଅଛି, ଆଗକୁ ଦିଶିବ । ଆଉ ହେଲେ ସେ ତଳ ଦେଶ ।"

ପଥର ଗୁଣ୍ଡିରି ଉପରେ ଗ୍ରାଉଁଡଲେ ବସି ସେମାନେ ଝାଳ ମାରିଥିଲେ, ଧୂଆଁ ଟାଣିଲେ ।

କାନ୍‌କଟା ପଚ୍ଚରିଲା, "ସେ ଲୋକେ ଏଣେ ଆସନ୍ତି ନାହିଁ ?"

"ଯୋଖ ପାଖ ଲଗିଛି, ନ ଆସିବେ କେମିତି ? କାଠ ପତର ପାଇଁ ତଳର ବଣକୁ ଆସନ୍ତି, ଲୁଣ, ଶୁଖୁଆ, ଆଉ କେତେ କେତେ ଜିନିଷ ଧରି ଆମ ଜିନିଷ ବଦଳ ନେବାକୁ । ଡେଙ୍ଗାଗୁଡ଼ା ଗାଁକୁ ବି ଆସନ୍ତି, ସେମାନେ ନଅନ୍ତି ବେଶି ଜିନିଷ, ଦିଅନ୍ତି ଅଳ୍ପ, ଲୁଣ ତ ରଖିବାକୁ ହିଁ ପଡ଼େ, ଆଉ ଯାହା ଯାଚନ୍ତି ବେଶି ଦରକାର ନଥିଲେ ଆମେ ନେଉ ନାହିଁ । ପର୍ବତ ଚଢ଼ିଲେ ସେମାନେ ଆମ୍ଭୁକୁ ଡରନ୍ତି । କାହିଁକି ଡରନ୍ତି କେ ଜାଣେ ! ଆମେ ଯେ, ତାଙ୍କ ଭାଷା ତ ବୁଝୁଁନାହିଁ, ତାଙ୍କ ପୋଷାକ, ତାଙ୍କ ଚଳଣି ତ ଭିନେ, ତଳକୁ ଗଲେ ଆମ୍ଭକୁ ଡର । ଡେଙ୍ଗାଗୁଡ଼ାରୁ ଉପରକୁ ବି ଅଳ୍ପ କେହି କେହି ବୁଲିଆସନ୍ତି, କେବେ କେବେ, ସେମାନେ ରହନ୍ତି ନାହିଁ ବୁଲିଗ୍ଲଯା'ନ୍ତି ।"

ଆହୁରି କଥାଭାଷା ପଡ଼ିଲା । ସେମାନେ କହିଲେ, ଏ ପର୍ବତ ଉପରଯାକ ଢାଲୁଯାକ ଏଠି ସେଠି ହୋଇ କେତେ ସାନ ସାନ କନ୍ଧ-'ଗୁଡ଼ା' । ଆଗେ ଏ ଢାଲୁଯାକ ଥିଲା ଘଞ୍ଚ ଅରଣ୍ୟ, ଜନ୍ତୁ ପଲପଲ, ମହାବଳ ବାଘ ରହୁଥିଲେ । ବର୍ଷକୁ ବର୍ଷ କନ୍ଧମାନେ ପୋଡ଼ୁଚାଷ ବଢ଼େଇ ବଢ଼େଇ କରନ୍ତି, ତେଣୁ ଠାଏ ଠାଏ ଅଗ୍ରଏ ଅଗ୍ରଏ ମହାବଣ ଅଛି ସିନା, ବେଶି ଭାଗ ଚନ୍ଦା, ଯେଉଁ ଚାଷ ହୁଏ, ବହୁତ ଫଳ ତୋଟା, ପଣସ, ଆମ୍ବ, କମଳା, ସପୁରି, କଦଳୀ—ପାଣିନାଲ ବହୁତ, ପାଣିର

ଅନ୍ତର ନଥାଏ । ବହୁତ ଶଳପ ଗଛ । ଖାଇ ପିଇ ଲୋକେ ଖୁବ୍ ଧୁମାଧୁମା । ବାଘ ଅଛନ୍ତି, ଆଗ ପର ଏତେ ନୁହେଁ । ଏକେତ ସେତେ ବଣ ନାହିଁ, ପୁଣି ଏମାନେ ଭଲ ବାଣୁଆ, "ସ୍ବାଙ୍କ ଧନୁଶର ଲକ୍ଷ ଫିଟେ ନାହିଁ, ମାତ୍ର ବ ଘର ଟାଣ । ଆଉ ଏମାନେ ବାଘ ଯିବା ବାଟ ଖୋଜି ଧନୁରେ ଶର ଯୋଖି ଯନ୍ତ୍ରୀ ବସାନ୍ତି, ବାଘର ପେଟ ଫୁଟେ ।"

ଓହ୍ଲେଇବା ବାଟ ଭରତର ହୋଇ କଟିଯାଉଥାଏ, ତାହାଣେ କେତେ ତଳେ ପାହାଡ଼ କାଟି କାଟି ଗୋଟାଏ ଝୋଲନଈ ଗ୍ଭଲିଛି । ସ୍ଥାନେ ସ୍ଥାନେ ଉଚ୍ଚ ଜଳପ୍ରପାତ, ସ୍ଥାନେ ସ୍ଥାନେ ଝୋଲ କୂଳେ କୂଳେ ପଥର ଖୋଲରୁ ଓହ୍ଲାଇଛି ବଡ଼ ବଡ଼ ମହୁଫେଣା । କାନ୍‌କଟା ସେଠି ଯାଇ ଠିଆହେଲା, ପଛକୁ ଅନାଇଁଲା—ଭାବିଲା, ଯେଉଁ ଦେଶ ସେ ଛାଡ଼ିଆସିଲା, ତା ଭିତରେ ଯେ ଦେଶ ଭିତରେ ଏ କାଠ ଠିଆହୋଇଛି, ଏଥକରେ ସେ ବେଶ ଲାଗିଲାଣି ସ୍ୱପ୍ନପରି । ଆଉ ଏପଟେ ତାକୁ ଲାଗୁଛି ହାଲୁକା । ପୁଣି ଆପଣାର ସବୁ ।

ଆଉ ପୁଣି ଭାବିଲା, "କାଲୁ ପୁଣି ମୁଁ ଲେଉଟିଯିବି ଯେ ସ୍ୱପ୍ନକୁ, ସେଇ ମୋର ଘର । ଆଉ ସେ ତଳେ, ଯେଉଁଠି ମୋ ଚିହ୍ନା ସମାଜ, ମୋ'ଶପର ଲୋକ, ଯେତେ ହାଲୁକା ଲାଗିଲେ ବି ମୋର ଜାଉଣା ଚଳିବ ନାହିଁ, ମରିବାକୁ ବସିଥିଲେ କେହି ପାଟିରେ ପାଣି ମଦାଏ ଦେବେ ନାହିଁ, ସେଠି କଏ ମୋର ?"

ବାଁ ଆଡ଼କୁ ପର୍ବତର ଟାଲୁ ଉପରେ ଉପରେ ଡେଙ୍ଗାଗୁଡ଼ାକୁ ବାଟ, ପଣସ ତୋଟା, ଆମ୍ବତୋଟା, ଝଙ୍କା ଝଙ୍କା ତେନ୍ତୁଳି ଗଛ, ଶଳପ ଗଛ, ଢିପ ଉପରେ ଡେଙ୍ଗାଗୁଡ଼ା, ଦଶଘର କାନ୍ଧ । ଉପରକୁ ଓ ତଳକୁ ଦିଶୁଛି ଅଗ୍ଭଏ ଅଗ୍ଭଏ କ୍ଷେତ, କେଉଁଠା ଖାଲ, କେଉଁଠି କାନ୍ଦୁଲ, କେଉଁଠି ଜଡ଼ା, ଆଉ କଦଳୀ ବାଡ଼, ତୋଟା, ସପୁରବଣ । ଟେପ୍ରା ପ୍ରଶଂସା କରି କହିଲା, "ଖୁବ୍ ଫଳ ଲଗାନ୍ତି ।"

"ଖାଆନ୍ତି ସବୁ ?"

ଚତୁର ହସ ହସି ଟେପା କହିଲା, "ଖାଆନ୍ତି ଖୁବ୍ । ଆଉ ଥୋଡ଼ାଏ ତଳକୁ ନଅନ୍ତି, ବଦଳାନ୍ତି, ଗୋରୁ ଆଣନ୍ତି, ମଦ ଆଣନ୍ତି, ମିଠେଇ ଆଣନ୍ତି, ରଙ୍ଗରଙ୍ଗର ଲୁଗାପଟା ବି ଆଣନ୍ତି । ଭାରି ସରଳ ।"

"ଓ !" କାନ୍‌କଟା କହିଲା, "ବଦଳ ଗ୍ଭଲେ ଡାହେଲେ ।"

"ବେଶି ନୁହେଁ, ତେବେ ଗ୍ଭଲେ ଟିକାଏ ଟିକାଏ, ସବୁ ତାଙ୍କର ମନ, ତାଙ୍କ ଘର ।"

କାନ୍‌କଣ୍ଟାର ମନ ଡବଗଗଲା, ଭାବିଲା, ଏ ଦୁନିଆଁରେ ନୂଆ ବାଟ ଦେଖାଉଥିବା କାମରେ ପ୍ରଥମ କେହି ନୁହେଁ । ମନକୁ ବୁଝେଇଲା—ତା' ବି ଭଲ, ଥରେ ଲାଗିଥିଲେ ଆଉ ଥରକୁ ଭଲଲାଗେ ।

ଗାଁର ପୁଞ୍ଜୁଣ ହୁରୁଡ଼ ପଳେଇଲେ, ପଛେ ପଛେ ଟିକି ଟିକି ଛୁଆ; ଗାଁର କୁକୁର ଭୁକିଲେ, ଲୋକ ନାହାନ୍ତି । ଖୋସରେ ଖଟରେ ଶୋଇଥିଲା କଉଡ଼ୁଙ୍ଗର ବାପ କୁଣବୁଢ଼ା, ବେମାର ଅଛି, ଉଠି ବସି ଅନାଇଲା, ବହୁତ ବୟସ, ଆଖିକି ଦିଶେନାହିଁ । ବୁଢ଼ୀ ଢନୋଟି ପଦାକୁ ବାହାରିଲେ । ପିଲାଟିଏ ଧାଇଁ ଧାଇଁ କାହାକୁ ଡାକିବାକୁ ଗଲା । ଆସିଥିବା ଲୋକେ ଅପେକ୍ଷା କଲେ । ଡୁଣ୍ଡୁ ଓ ଦୁଆ ହସି ହସି ରଡ଼ିଗ୍ରଡ଼ିଲେ, "ହୋ କଉଡ଼ୁଙ୍ଗ, ହୋ ଗମ୍ଭୁ, କୋଇଁ ଆଇଚ ଆସ ।''

ଦୂରରୁ ଉପରୁ କାନ୍ଦୁଲ କ୍ଷେତଭିତରୁ ଝଣ୍ଟର ହେଣ୍ଟାଲ ପରି ଗର୍ଜନ ଶୁଭିଲା "ରହ ରହ, ଯାଉଛୁଁ ।'' ଟିକିଏ ପରେ ଘରଆଡ଼ୁ ଲୋକ ଗଦାହୋଇ ପଡ଼ିଲେ । କଉଡ଼ୁଙ୍ଗକୁ ଦେଖି କାନ୍‌କଣ୍ଟା ଚମକିପଡ଼ିଲା, ପ୍ରକାଣ୍ଡ ଆକାର, ଡେଙ୍ଗା ଯେମିତି, କାନ୍ଧ ଆଉ ଛାତି ଓସାର ସେମିତି, ଦେହଯାକ ଆବୁ ଅବୁ ହୋଇ ମାଂସପେଶୀ । ବୟସ ପଚିଶ ପାଖ ହେବ, ଯୋଦ୍ଧା ପରି ଚେହେରା । ସବୁ କନ୍ଧ ତା'ର ପରି ଡେଙ୍ଗା ତା ପୁଅ ଗମ୍ଭୁ । ତା ସହିତ ଆଉ ଆଉ ମଣିଷ, ଆଉ ସ୍ତ୍ରୀଲୋକମାନେ, ତା ସ୍ତ୍ରୀ, ତା' ଝିଅ ସାମ୍ବା, ସେହି ଯାହାକୁ କ୍ଷେପା ବନ୍ଧୁହେବ । ଝିଅଟିର ପାତଳ ଦେହ କନ୍ଧ କୁନ୍ଦିଲା କୁନ୍ଦିଲା, ଡେଙ୍ଗୀ ଝିଅ, କ୍ଷେପାଠୁ ବେଶି ସାନ ଦିଶୁନଥାଏ, ମଧୁର ବର୍ଣ୍ଣ, ଚକ୍‌କଣ ଚମ, ହରଣୀପରି ବଡ଼ ବଡ଼ ଫାଲ ଫାଲ ଆଖି, କ୍ଷେପାକୁ ଦେଖି ହସିଲା, ଲାଜଲା, ହେଲା, ବାପ ପିଠିଆଡ଼େ ଲୁଚିଲା ।

ସେମାନଙ୍କୁ ଦେଖିଲାମାତ୍ରେ କାନ୍‌କଣ୍ଟା ଜାଣିପାରିଲା, ନିଶ୍ଚୟ ସେମାନେ ଜିନିଷ ବଦଳରେ କିଛି କିଛି ତଳ ଦେଶର ଜିନିଷ ଆଣନ୍ତି, ବ୍ୟବହାର କରନ୍ତି । କଉଡ଼ୁଙ୍ଗ ଆଉ ତା ଝିଅଙ୍କ କାନରେ ସେ କ'ଣ ପିତ୍ତଳ ଫାସିଆ, ନା ସୁନା ? ସ୍ତ୍ରୀଲୋକମାନଙ୍କ ବେକରେ ଖୋଲା ଛାତି ଉପରେ ଏତେ ସରୁ ସରୁ ରଙ୍ଗରଙ୍ଗର ମାଳି, କାଠର, କାଚର, ତାକୁ କେବେ କନ୍ଧମାନେ ଗଢ଼ିନଥିବେ । ସେମିତି, ହାତରେ ରୁପା ଖଡୁ, କଂସା ବଳା, ରଙ୍ଗରଙ୍ଗଲ 'କାଚ' । ଅନ୍ୟ ଗାଁର ଲୋକଙ୍କୁ ଦେଖି ସେମାନେ ଘର ଭିତରକୁ ଯାଇ ବେକଠୁ ଅଣ୍ଟାଯାକେ ଖଣ୍ଡେ ଖଣ୍ଡେ ରଙ୍ଗ ଖଦାର 'ରେଟା' ଝୁଲେଇଲେଣି, ପିନ୍ଧିଛନ୍ତି ବି ଅଣ୍ଟାରୁ ଆଣ୍ଠୁଯାକେ ଖଣ୍ଡେ ଖଣ୍ଡେ । ଗୋଡ଼ରେ ବଙ୍କା ବଙ୍କା ପିତ୍ତଳ ଖଡ଼ୁ, ହାତରେ ଗୋଡ଼ରେ ତମ୍ବା, ପିତ୍ତଳ, ରୁପାର ମୁଦି । ସବୁ ତଳ ଦେଶରୁ ଆସିଥିବ ।

କ୍ଷେପା ହୃଷ୍ଟି ପଠାଇଥିବା ଖବର କହିଲା, କାନ୍‌କଣ୍ଟା ବି କହିଲା । କଉଡ଼ୁଙ୍ଗ କହିଲା, "କିଛି ଅସୁବିଧା ହେବନାହିଁ । ଘର ଅଛି, ଦେବି, ଜିନିଷ ରଖିବ, ବଦଳେଇବାକୁ

ଗଲେ ବୋହିନେବାକୁ ଘରୁଆ ଦେବ। କିନ୍ତୁ ସେ ତଳଦେଶର ଲୋକଗୁଡ଼ାଙ୍କୁ ମୋର ବିଶ୍ୱାସ ନାହିଁ। ବଦଳ କରିବାକୁ ଲୋଡ଼ିଲେ, ଆମର ଜିନିଷ ଘର ଘର ମାଗିବେ, ତାଙ୍କର ଜିନିଷ ଦେଲାବେଳକୁ ମୁଠାଏ କି ପୋଷେ। ଲୁଣ ଟିକିଏ ନହେଲେ ତ ଚଳେନାହିଁ, ରାଜ୍ୟଯାକ ଲୋକଙ୍କ ପାଇଁ ଥର ଥର ହୋଇ ଘର ଘର ଲୁଣ ନେବାକୁ ଆମ କନ୍ଧଲୋକେ ଆସନ୍ତି, ଏ ତଳ ଦେଶରୁ ତ ନଅନ୍ତି। ଆଉ କୁଆଡ଼ୁ ନଅନ୍ତି ମୁଁ ଜାଣେ ନାହିଁ। ହେଲେ କ'ଣ ହେବ? ଏତେ କାନ୍ଦିଏ କଦଳୀ ଦେଲେ ପୋଷେ ଲୁଣ ଆମୁକୁ ଦେବେ, ମୁଠାଏ କାହ୍ଲା ଶୁଖୁଆ ମାଗିଲେ ବଦଳ ମାଗିବେ ଗୁରଣ୍ଟା ବଡ଼ ବଡ଼ ପଣସ, ଆଉ ଝଣ୍ଡେ କରଥା ମାଗିଲେ—ମାଇକିନାଙ୍କ ପିନ୍ଧା କି ରେଣ୍ଟା, ମାଗିବେ ଦି ଦି ଘର କମଳା କି ସପୁରି, ମହୁ ଠିକ ସେ, ତାଙ୍କ ଭାଷା ଆମେ ବୁଝୁ ନାହିଁ, ଆମ ଭାଷା ସେ ବୁଝନ୍ତି ନାହିଁ, ଯେ ଯାହା ରାଜ୍ୟରେ ରଜା, ପର ରାଜ୍ୟରେ ଛେଳି, ତାଙ୍କର ସେ ନଈ ସେପାଖେ ଥାନ୍ତି, ଆମର ଆମେ ଏ ପାଖେ, ଏ ବୁଝି ପିଲାଏ ଆମ ସଙ୍ଗରେ ଗୋଳ ଲଗାନ୍ତି ବୋଲି ସିନା, ନହେଲେ ଆମେ ଲୁଣ ଟିକିଏ ଛଡ଼ା ଆଉ କିଛି ତାଙ୍କଠୁଁ ଆଣନ୍ତୁ ବି ନାହିଁ।

ସମସ୍ତେ ହସିଲେ। ଆତିଥ୍ୟ ଆରମ୍ଭ ହେଲା, କୁଣିଆଁ ଆସିଛନ୍ତି। ଖାଇପି ଘରୁଆ ଲେଉଟିଗଲେ।

୨

କାନ୍‌କଣ୍ଠାର ସଙ୍ଗରେ ଗଲେ କଡ଼ୁଙ୍ଗର ପୁଅ ଗଗ୍ରୁ ଓ ଦି'ଜଣ ଘରୁଆ। ଅଳ୍ପ କିଛି ଜିନିଷ ନେଲେ। ଗାଡ଼ିଗାଡ଼ିରେ ଆଣ୍ଠିଏ ପାଣି। ଗଗ୍ରୁ ବୁଝେଇଲା, ବର୍ଷା ହେଲେ ଏ ନଈ ମାଡ଼େ, ଓଳିଏ ଗଲେ ପୁଣି ଶୁଖିଯାଏ। ତଳେ ଆଣ୍ଠୁଏ ଗଭୀର, ଆଣ୍ଠୁଏ ଓସାର। କହନ୍ତି, ବର୍ଷାଦିନେ ଏ ନଈରେ ଆସନ୍ତି ଗୋହି, ସାପ ପରି ଲମ୍ବା ଲମ୍ବ, ଦେହ ଲମ୍ବା ଆଉ ମୋଟା, ମଇଁଷି ମୁଣ୍ଡପରି ମୁଣ୍ଡ, ଆଖି, ମୁଣ୍ଡ ଉପରେ ଶିଙ୍ଘ ଦି'ଟା, ଏତେ ଏତେ ଦାନ୍ତ, ମଣିଷ ହଉ, ଜନ୍ତୁ ହଉ, ଯାହାକୁ ଧରେ ତାକୁ ଖାଇଯାଏ। ସେ କୁମ୍ଭୀର ନୁହେଁ, ଅନ୍ୟ କିଛି ଜନ୍ତୁ, କେବେ ଦେଖିନାହିଁ, ତଳେ ଥିବେ, ବର୍ଷାଦିନେ ଏକାଠି ଦି ଦିଟା ହୋଇ ବୁଲନ୍ତି।

ସେପାଖେ ଜାମୁଗୁଡ଼ା, ସବୁ ଜାତିର ଲୋକ ଅଛନ୍ତି, ଆଦିବାସୀ ଗାଁ ଏ ନୁହେଁ। ତୋଟା ବାଡ଼, ଗାଁ ଦାଣ୍ଡ, ସାନ ସାନ ଦୋକାନ ଢନୋଟି। ନଈ ସେପାଖେ ଆମ୍ବ ତୋଟାରେ ଶୁକ୍ରବାର ଦିନେ ହାଟ ବସେ, ସେତେବେଳେ ଭିଡ଼ ହୁଏ।

କାନୁ ହେଇ ଦୂରରେ ତୋଟା ଅନ୍ଧାର ଦଶୁଛୁ, ଶିହ୍‍ପୁର, ସେହ୍ୱ ଏଠି ବଡ଼ ପେଣ୍ଟ ଗାଁ, ସେ ପଗୃର ବୁଝିଁଲ, ସେଇଠି ବହୁତ ବଡ଼ ବସ୍ତି, ବହୁତ ଦୋକାନ, ବଜାର, ବେପାରୀ । ଗୃଲଲୁ ସେଠିକ ।

ସଭ୍ୟ ମଣିଷ, ଲୁଗା ଗାମୁଛା, ଲୁଗା ଚଦର, ଲୁଗା ଉପରେ ଅଙ୍ଗୀ ପିନ୍ଧଛନ୍ତି; ମୁଣ୍ଡବାଳ କାଟନ୍ତି, ମୁଣ୍ଡ କୁଣ୍ଡାନ୍ତି, ଯେ ଯେତେ ଗରିବ ହୋଇଥାଉ ଅଣ୍ଟାରେ ଡୋର କୌପୁନୀ ହୋଇ ବାହାରେ ନାହିଁ । ତେଣୁ ଅନାଉଁଛନ୍ତି ଲୋକେ, ଏମାନେ କେଉଁ ଆଡ଼ର କେଲା କ ଭକାରି, କେଲା ହୋଇଥିବେ । ଭକାରି ଶିକାରର ବୁହେନାହିଁ ।

କାନ୍‍କଟା ବଜାରରେ ବୁଲି ବୁଲି ନାନା ପଦାର୍ଥର ସାଉ ବୁଝିଁଲ; ମୂଲ ହାଙ୍କିଲ, ମୂଲକଲ, ଘରର ଜିନିଷ ତଉଲେଇଲ, ବିକଦେଲ ଓ ଟଙ୍କାକୁ କୌପୁନୀ ଫେରରେ ବାନ୍ଧି ଅଣ୍ଟାରେ ଗୁଞ୍ଜିଦେଲ । ସାଙ୍ଗର ଢନକଣ କନ୍ଧଙ୍କୁ ଗୁଡ଼ିଆ ଦୋକାନକୁ ନେଇ ପେଟେ ପେଟେ ଖୁଆଇଲ ଓ ନଜେ ଖାଇଲ, ପିକା କଣି ଫୁଙ୍କିବାକୁ ଦେଲ, ଗୋଟିଏ ପୋଖରୀ କୂଳରେ ଗଛତଳେ ବସେଇଦେଇ କହିଲ, "ବସିଥା ଏଠି, ଆସିବ ଟିକିଏ ପରେ, ସେଇଠୁ ମଦ ପିଇବା ଓ ଲେଉଟିଯିବା ।"

ଆଗ ଗଲ ଲୁଗା ବଜାରକୁ । ଦ'ଖଣ୍ଡ ଲୁଗା, ଖଣ୍ଡେ ଗାମୁଛା, ନେଳିଆ ଡୋରିଆ ଅଙ୍ଗୀଟିଏ ଓ କନାର ମୁଣିଟିଏ କଣିଲ । ଗାମୁଛା ବଦଳାଇଲ, ଗଲ ଭଣ୍ଡାରି ପାଖକୁ, ବାଳ କାଟିଲ, ଖିଅର ହେଲ, ମୁଣ୍ଡ କୁଣ୍ଡେଇଲ । ଲୁଗା ଆଉ ଅଙ୍ଗୀ ପିନ୍ଧିଲ । ଭଦ୍ରଲୋକ ହେଲ । ତା'ପରେ ବଜାରରେ ବୁଲି ବୁଲି ବଡ଼ ବଡ଼ ବେପାରୀମାନଙ୍କ ସଙ୍ଗେ କଥାଭାଷା ହେଲ—"ଜିନିଷ କଣିବ ? ପାଳୁଅ, ହଳଦୀ, ନାଲି ହଳଦୀ ବାଟିଲେ ରକ୍ତ ଧରି ନାଲି ଦଶିବ, ଲଙ୍କାମରିଚ ଜାଉଜାଉକା, ଲମ୍ବା ଜହ୍ନର, ଧାନୁଆ, ବରହ୍ମ, ସାଧାରଣ ପୁଣି ଧଳା ବର୍‍ହ୍ମ, ଧଳା ବରହ୍ମ ଫେଣେଇ ବଡ଼ ପାରିଲେ ଏତେ ବଡ଼ ଫୁଙ୍କିଦେଲେ ଉଡ଼ିଯିବ, ନାଲି କାନ୍ଦୁଲ, ପୁଣି କଳା କାନ୍ଦୁଲ ଯେ ଖାଇଦେଲେ ପାଟିରୁ ମିଠା ଛାଡ଼ିବ ନାହିଁ । ବଢ଼ିଆ ସୋରିଷ, ସେଥିରୁ ବେଶି ତେଲ ବାହାରେ, ସୋରିଷ ଯେ ଆହୁରି ବଢ଼ିଆ, ଦ' ପ୍ରକାର, ବଡ଼ ପୁଣି ସାନ ସାଇ-ସୋରିଷ, ବେସରକୁ ଯେମିତି ଅସ୍ୱରକୁ ଛାଡ଼ୁବଳି, ଆଉ କେତେ କେତେ ଜିନିଷ । ଶଗଡ଼ ଶଗଡ଼ ବିକଦେବ । ସବୁ ନମୁନା ଦେଖେଇଦେବ । ଆଖିରେ ଦେଖିବ, ଆଖି ଆଗରେ ପରୀକ୍ଷା କରିବ, ତଉଲିବ, କଣିବ, ସବୁ ନଗଦାନଗଦ କାରବାର, ଢନକଆ ନୁହେଁ, ତୁମର ଆମର ଭାବ ପଟୁଥିଲେ ଯବୁଦନଆଁ । ବଜାରଠୁଁ ଶସ୍ତାରେ ପାଇବ, ହାଙ୍କ ଦାମ୍ ।"

ଜଣକଠୁଁ ଆଉ ଜଣକ ପାଖକୁ ଯାଇ ସବୁଠୁ ଚଢ଼ାଦର ପାଇବାକୁ କଥା କରି ଗୃଲଆସିଲ ।

ଗାଁ ଲୋକଙ୍କ ପାଇଁ ପିଜା, ଝିଅମାନଙ୍କ ପାଇଁ, ଛୁଆମାନଙ୍କ ପାଇଁ ଶସ୍ତା ମିଠେଇ କିଣିଲା, ତା'ପରେ ବନ୍ଧୁମାନଙ୍କ ପାଖକୁ ଲେଉଟିଗଲା ।

ତା' ବେଶର ପରିବର୍ତ୍ତନ ଦେଖି ସେମାନେ ତାକୁ ଆଗ ଆଗ ଚହ୍ନିପାରିଲେ ନାହିଁ ।

ସେ ବୁଝେଇଲା, "ଯେଉଁ ଦେଶକୁ ଯିବ ସେ ଦେଶର ଲୋକଙ୍କ ସଙ୍ଗେ ନ ମିଶିଲେ ତାଙ୍କ ସଙ୍ଗେ ବେପାର କରିହେବ ନାହିଁ । ସେମାନେ ଠକିଦେବେ । ସେଥିପାଇଁ ତାଙ୍କର ପରି ବେଶ ହେଲି । ଏ ବେଶ ତମକୁ ଭଲ ଲାଗୁଛି ? ତେବେ କାଲି ଜିନିଷ ଆଣିବା, ବଦଳେଇବ, ତମକୁ ବି ଏମିତି ବେଶ କରିଦେବି ।''

"ଆମର ଲୋଡ଼ା ନାହିଁ, ଲମ୍ବା ଖଦା ପିନ୍ଧି କାମ କରିବାକୁ ପର୍ବତରେ ଚଢ଼ିଲେ କଣ୍ଟା ଝଣ୍ଟା ଲାଗି ଚିରିଯିବ, ମଇଳି ବି ହୁଣ୍ଡିବ,'' ଗଗନ୍ତ୍ର କହିଲା, "ତେବେ, ଘୋରି ହେବାକୁ ଶୀତ ଲୁଗା ମିଳିଲେ ଭଲହୁଅନ୍ତା, କେବେ ପିନ୍ଧିବାକୁ ସାନ ଖଦା ହେଲେ ଚଳନ୍ତା, ଅଙ୍ଗୀ ବି କାମରେ ଆସନ୍ତା, କ'ଣ ଦରକାର ? ତା ବଦଳରେ କେତେ କେତେ ଜିନିଷ ଠକିନେବେ ।

"ମୁଁ ଥିଲେ କେହି ତମକୁ କିଛି ଠକିବେ ନାହିଁ । ମତେ ସବୁ ବାଗ ଜଣା, ରହିଥା ମୁଁ ସବୁ ବଦଳ କରେଇଦେବି ।"

ମଦ ଦୋକାନକୁ ଗଲା, ପୁଣି ପଇସା କାଟିଲା, ସମସ୍ତିଙ୍କି ମଦ ପିଆଇଲା, ଅଳ୍ପ ଅଳ୍ପ, ଯେମିତି ନିଶା ଲାଗିବ ନାହିଁ । ନିଜେ ବି ପିଇଲା । ବାଟ ଧରିଲେ ।

ଜଙ୍ଗଲ ପାରିହେଲେ । ପୁଣି ସେ ବେଶ ବଦଳେଇଲା । ମୁଣ୍ଡିରେ ସବୁ ପଶିଲା, ପିନ୍ଧିଲା, ଖାଲି ଝଣ୍ଡେ କୌପୁନି । ସୋଭେନା କହି ପଚାରିଲେ, "ପୁଣି ଏ କି ବେଶ ?"

ଗମ୍ଭୀର ହୋଇ କାନ୍‌କଟା କହିଲା, "କେଉଁ ଦେଶରେ ଯାହା । ଏଠି ଏସବୁ କି ଲୋଡ଼ା ?''

ତେନ୍ତାଗୁଡ଼ାରେ ରହି ଆଉ ଦ'ଦିନ ସେ ଶିଖିଗୁଡ଼ା ଯାଇ ବେପାରିମାନଙ୍କ ସଙ୍ଗେ କଥାଭାଷା ହେଲା, ଆଉ କିଛି ଜିନିଷ ବିକିଲା । ତା'ପରେ ଦିନେ ଯାଇ ବାକି ସବୁଯାକ ଜିନିଷ ବିକିଦେଲା । ବାର ଭାର ଜିନିଷ, ପାଇଛି ସେ ପନ୍ଦର ଶହ ଟଙ୍କା ପାଖପାଖି । ବନ୍ଧୁମାନଙ୍କୁ କହିଲା ନାହିଁ । ଶହେ ଟଙ୍କାରୁ ଊଣା ହେଲା ବୋଲି ବୁଝେଇଲା । ସେମାନେ ଟଙ୍କା ବୁଝନ୍ତି ନାହିଁ । ଏତିକି ଟଙ୍କାରେ କେତେ ଜିନିଷପତ୍ର ହେବ ବୋଲି ଗୋଟାଏ ଧାରଣା ଦେଲା, ସେମାନେ ତା ବୁଦ୍ଧି ଦେଖି ଆଶ୍ଚର୍ଯ୍ୟ ହେଲେ । ସେ କହିଲା, ସେ ତା ଘରକୁ ଯିବ, ପରିବାର ଓ ବନ୍ଧୁ-କୁଟୁମ୍ବ ନେଇ ଆସିବ, ଆସିଲାବେଳେ ମୁଣ୍ଡାମାଝିମାନଙ୍କ ଜିନିଷ ବଦଳରେ ଜିନିଷ ନେଇଯିବ, ସେତେବେଳେ ପୁଣି ଦେଖାଦେଖି ।

ମନ ଓଟାରୁଥାଏ, ପୁଣି ଦେଖିବ ସେଇ ପୁରୁଣାସ୍ଥଳୀ; ଅମ୍ବାଦୋଳା ପାଖ ବାରିଗୁଡ଼ା, ଯେଉଁଠି ପୁରୁଣା କାନ୍‌କଟା ତନ୍ ମରି ଭୂତ ହୋଇଥିଲା, ଭୂତ ହୋଇ ବାହାରିଯାଇଥିଲା । ବାଟ ଚାଲି ଚାଲି ଠାବେ ଠାବେ ଗା ଗାକେ କାହା ପିଣ୍ଡାରେ ଶୋଇ ନୂଆ ନୂଆ ଗାଁ, ନୂଆ ନୂଆ ମଣିଷ ଦେଖି ଦେଖି ସେ ଚାଲିଥାଏ । ଡମ୍ବ ସାହିରେ ରହେ, ବୁଲେ, କିଏ କପରି ଲୋକ, କି କି ବୃତ୍ତି ଜାଣନ୍ତି, ଧନ୍ଦା ମିଳେ କି ନାହିଁ, ଦୂରରେ, ପର୍ବତ ହେଉ କି ସମତଳ ହେଉ, କେଉଁଠା ପାଇଁ ସୁବିଧା ମିଳିଲେ ଲୋକେ ଯାଆନ୍ତେ କି ନାହିଁ । ଡମ୍ବ ସାହିମାନଙ୍କରେ ଲୋକ ବହୁତ, ଘରେ ଘରେ ବହୁତ କୁଟୁମ୍ବ, ଅଧିକାଂଶ ଅଧା ଉପାସିଆ, ଧନ୍ଦା ମିଳେ ନାହିଁ, ଆଧାର ମିଳେ ନାହିଁ, ଖୋଜୁ ଖୋଜୁ ଧନ୍ଦ ହୋଇ ଖଟଣି ଓ ମଦନ୍ତ୍ରାପରେ ବେଳଯାଏ । ଚୋରି କରିବାକୁ ସମସ୍ତେ ପାରଙ୍ଗମ ନୁହନ୍ତି, ସୁବିଧା ନଥାଏ, ଧରାପଡ଼ିଲେ ମହାଦଣ୍ଡ । ନାନା ବୃତ୍ତି ଜାଣନ୍ତି, ବୃତ୍ତି ପାଇଁ ବଡ଼ ନଥାଏ, ଜିନିଷ ବି ବଜାରରେ ବହୁତ । ମୂଲ ମିଳିଲେ ଲୋକେ ତା' ଉପରେ ତା' ଉପରେ ବାଡ଼ିଆବାଡ଼ି, ନିଜ ଜମି କାହାର କେବା ଥାଏ । ଯିବାକୁ ଲୋକ ଅଛନ୍ତି, ନେଉଁଛି କିଏ ? ସୁବିଧା ଦେଖାଉଛି କିଏ ? ଯେତେ ସେ ଦେଖୁଥାଏ, ଭାବୁଥାଏ ସେ ଠିକ୍ ଅନୁମାନ କରିଛି, ଅବସ୍ଥା ପାକଲ ଅଛି, ଆଙ୍ଗୁଠି ଦେଖାଇଦେଲେ ଏମାନେ ବାହା ଗିଳିବେ ।

କିନ୍ତୁ ସତେ କ'ଣ ସେ ଆଙ୍ଗୁଠି ଦେଖାଇବ ? ଫେରିଯିବ ଲୋକ ନେଇ କନ୍ଧ ରାଜ୍ୟକୁ ? ଯେ ଦୋଦୋପାଞ୍ଚ କରୁଛି, ନିଷ୍ପତ୍ତିରେ ପହଞ୍ଚି ପାରୁନାହିଁ । ଗଲାବେଳେ ସେ ବି ଥିଲା ସ୍ୱାଙ୍କର ଭିତରୁ ଜଣେ ଆତୁର ହୀନମାନିଆଁ, ମାସ କେଇଟାରେ ତା ଅଣ୍ଟାରେ ପ୍ରାୟ ପନ୍ଦରଶହ ଟଙ୍କା । ଜମି କିଣି ଚାଷ କରିପାରେ, କିଛି ବେପାର ଆରମ୍ଭ କରିପାରେ, କିଛି ନକରି ବସି ବସି ଖାଇପାରେ କିଛିଦିନ, ତା'ପରେ ଭାବିବ ଆଉ କ'ଣ କରିବ, ପୁଣି ଭାବେ—ତା ଟଙ୍କା ଧରିଯିବ, ହଜିଯିବ, ଚୋର ନେଇଯିବ, ଆଙ୍ଗୁଠି ସନ୍ଧିରେ କୁଆଡ଼େ ତା ଅନ୍ତର୍ହିତ ହୋଇଯିବ, ପୁଣି ଯେଉଁ କଥାକୁ ସେହି କଥା । ଆଉ ମନେପଡ଼େ, ପାହାଡ଼ ରାଜ୍ୟରେ ତା ପାଇଁ ରହିଛି ସୁଖ ଓ ପ୍ରାଚୁର୍ଯ୍ୟର ନୂଆ ଦୁନିଆଁ, ତା ଭବିଷ୍ୟତ୍ ସେ ଚଳେଇପାରିଲେ ତା' ବଂଶଧର-ମାନଙ୍କର, ତା ବନ୍ଧୁବାନ୍ଧବଙ୍କର ।

ଚାରିଦିନ ଚାଲି ଚାଲି ସେ ବାରିଗୁଡ଼ାରେ ପହଞ୍ଚିଥିଲା । ଡମ୍ବ ସାହିରେ ଏଇ ଖଣ୍ଡିକ ଥିଲା ତା ଘର ଭିଟା ଏବେ ବି ପଡ଼ିଛି । ତା ଉପରେ ମାଟିକୁଢ଼, ଅଧା ଅଧା କାଛି, ତା ବି ଭଙ୍ଗାଭଙ୍ଗା କାଠ, ଚାଳ, ଖୁଣ୍ଟ, ପଥରେ ସବୁ ନେଇଯାଇଛନ୍ତି, ଘୁଙ୍କା ଆଉ ଅରମା ବଢ଼ିଛି । କିଏ କହିବ, ଏଠି ଥିଲା ତା ଘର, ହେଉପଛେ ଦି ବର୍ଷର ସାନ ସାନ ?

ଦୀର୍ଘଶ୍ୱାସ ପକାଇ ଝର୍କରେ ଠିଆହୋଇ ଅନାଇ ରହିଲା । ତା'ପରେ ଘୁଞ୍ଚିଗଲା ।

ଉଜାଡ଼ୁ ତାର ସମବୟସୀ, ତା ବନ୍ଧୁ । ଉଜାଡ଼ୁ ବାହାହୋଇଛି, ଘରେ ତା'ର ସ୍ତ୍ରୀ ରୂଦ୍‌ମା, ଛଅବର୍ଷର ପୁଅ ଠିପ୍ପୁ, ତା' ବାପ ଲେଟା, ତା ମା' ।

ଅଙ୍ଗୀ ପିନ୍ଧିଛି, ଧୋବ ଲୁଗା ପିନ୍ଧିଛି, କାନ୍ଧରୁ ମୁଣି ଝୁଲୁଛି, ହାତରୁ ଝୁଲୁଛି ଗୋଟାଏ ତାଲାପଡ଼ିଥିବା ଝୁଲବାକ୍ସ । କାନ୍‌କଟା ତା ଘରେ ଅଗଣାରେ ଆସି ଠିଆହେଲା, ଗାମୁଛା ଖଣ୍ଡେ ପିନ୍ଧି ଘର ଭିତରୁ ବାହାରିଆସି ଉଜାଡ଼ୁ କହିଲା, "କିଏ ?", ତା'ପରେ ଜାବା ହୋଇ ଅନାଇଁଲା । କହିଲା, "କାନ୍‌କଟା, ତୁ ଆଇଲୁ ? କାହାର କାନ କାଟିଲୁରେ, ସାହୁକାର ପରି ଦିଶୁଛୁ !"

ଦୁଇ ବନ୍ଧୁ କୁଣ୍ଢାକୁଣ୍ଢି ହେଲେ । ଭାବପ୍ରବଣ ଆଖିରେ ତା ମୁହଁକୁ ଅନାଇଁ ଉଜାଡ଼ୁ କହିଲା, "ସତେ ତୁ ଫେରିଲୁ ? ଜୀବନରେ ଅଛୁ କି ନାହିଁ ତା' ବି ଜାଣିନଥିଲି ।"

ସମସ୍ତେ ପଦାକୁ ବାହାରିଲେଣି, କାନ୍‌କଟା କହିଲା, "ଆଗ କିଛି ଖାଇବାକୁ ଦେ, ତୋ'ର କାନ ତ କାଟିବାକୁ ଆସିଲି ।"

ରୂଦ୍‌ମାର ମୁହଁ ଶୁଖିଗଲା, କହିଲା, "ଭାତ କହୁଁ ପାଇବୁ ? ଦି'ଦିନ ଚୁଲି ଜଳି ମୂଳପାଣ ବି ମିଳିଲା ନାହିଁ, ତୋରଣି ମଣ୍ଡେ ପିଇଥା ।"

ସେହି ଉଜାଡ଼ୁ ଘରେ ସେ ଆଶ୍ରା ପାଇଲା । ଲେଟାର ରହିବା ବଖରାକୁ ଲାଗି ଆଉ ଖଣ୍ଡେ ସାନ ବଖରା ଥିଲା, ଆଗେ ତାକୁ ଗୁହାଳ କରିଥିଲା, ବଳଦ ପଟେ ରହୁଥିଲା, ଭଡ଼ାରେ କାହାକୁ ହେଲେ ଚାଷ କରିବାକୁ ଦିଏ ; ଅଭାବ ପଡ଼ିବାରୁ ବଳଦକୁ ବିକି କିଛି ଦିନ ଚଳିଥିଲେ, ଘରଟା ଖାଲିପଡ଼ିଥିଲା । କାନ୍‌କଟା କହିଲା, "ମାହାଳିଆ ରହିବି ନାହିଁ ଭାଇ, ମାସକୁ ଟଙ୍କାଏ କରି ଭଡ଼ା ଦେବି । ମୋ ଖୋରାକି ବି ମୁଁ ଖର୍ଚ୍ଚଦେଇ ଚୁଲେଇବି ।"

ତା'ପରେ, କି ବିଗୁଡ଼ିବ ? ବିଭା ତ ହୋଇପାରିବ, ଝୋଲା (କନ୍ୟାଶୁନା) ଦେବ, କନ୍ୟା ମିଳିବେ । ଫେରିଯିବ କି ନାହିଁ ? ଏ ତ ଚହ୍ଲା ଗାଁ, ଏମାନେ ଚହ୍ଲା ମଣିଷ, ଆପଣାର ସମାଜ ଅଛି, ପୁଣି ପାହାଡ଼କୁ ଯିବ ?

ଦେହ ଅଳସେଇ ହୁଏ, ଇଚ୍ଛା ହୁଏ, ରହିବ, ଆଉ ଥରେ ନୂଆ ଜୀବନ ଗଢ଼ିବାକୁ ଚେଷ୍ଟା କରିବ, ଏଇଠି—ପୁଣି ମନ ଭିତରେ ଖୁଜୁବୁଜୁ ହୁଏ, ମନେପଡ଼େ ସେଠିକାର ପ୍ରାଚୁର୍ଯ୍ୟ, ଆହୁରି ଆହୁରି ସମୃଦ୍ଧିର ସମ୍ଭାବନା ।

ସଞ୍ଜପହରେ ଘରଯାକ ସମସ୍ତେ ବସିଲେ, ଉଜାଡ଼ୁ କହିଲା, "ପଦେ ପଦେ କହିଥିଲୁ । ସେ ପର୍ବତ ରାଜ୍ୟରେ ତୁ କ'ଣ କାମ ପାଇଛୁ, ଜମିବାଡ଼ି ପାଇଛୁ ବୋଲି, ଏଥର ତୋର ସବୁ କଥା କହ ।"

କେତେ ରୋଜଗାର କରୁଛୁ ଯାଉଚ୍ଛୁ ସେସବୁ କଥା ଖୋଲି କହିବାକୁ କାନ୍‌କଟାର ଉଦ୍ଦେଶ୍ୟ ନଥିଲା, ବାକି ଆଉ ସବୁ ବଢ଼େଇ ବଢ଼େଇ କହିଗଲା, କହିଲା, "କଣିକିଆ ହୋଇଗଲା, ରାଜ୍ୟଯାକ ସମ୍ପଦ ପଡ଼ିଛି, ଗୋଟେଇ ଆଣିବାକୁ ମୋ ହାତରେ ବଳ ନାହିଁ, ଖାଇବାକୁ ପେଟ ନାହିଁ, ସମ୍ଭାଳିବାକୁ ମଣିଷ ନାହାନ୍ତି । କନ୍ଧ ମୁଣ୍ଡାମାଝି ମତେ ଶରଧା କରନ୍ତି, ବିଶ୍ୱାସ କରନ୍ତି, ମୁଁ ଯାହା କହିବି ତା' କରିବେ । କହିବି 'ଏହାକୁ ଏ ଜମି, ଏ ତୋଟା ବାଡ଼ି, ଏ ଜିନିଷ ଦେଇଦିଅ, ସେ ଖାଉ', ଦେଇଦେବେ । ଭାରି ସରଳ ଲୋକ, ଭାରି ଭଲ ଲୋକ, ଛନ୍ଦମନ୍ଦ ନାହିଁ । ଶଗଡ଼ ଶଗଡ଼ ଫସଲ ପଚେଇ ପଡ଼ୁଛନ୍ତି, ଯାଉଛନ୍ତି, ତୋଟାରୁ ଆଣୁଛନ୍ତି ଗଦାଗଦା ଫଳ, କେତେ ଖାଇବେ ? ସଢ଼ି ଖତ ହେଉଛି । ପଇସା ଚହ୍ନନ୍ତି ନାହିଁ, ବେପାର କରିଆସେ ନାହିଁ, ପାଇଲେ ନାନା ଜିନିଷ କିଣନ୍ତେ, ବେପାରୀ ବି ନାହାନ୍ତି, ଦୋକାନ ବଜାର ନାହିଁ । ସବୁ ସୁବିଧା ଥିଆ-ହୋଇଛି, କିଏ ଘର କରି ରହିବାକୁ ଯାଆନ୍ତେ ମୁଁ ରଖେଇ ଦିଅନ୍ତି, କିଛି ଅଭାବ ନାହିଁ । ଖାଲି ବଣ ପର୍ବତ ବେଶି, ଏଠୁ ଦୂର, କେହି ତ ଯିବେନାହିଁ, ମୁଁ ଏକୁଟିଆ କାହିଁକି ସେଠି ପଡ଼ିରହିଥିବି ?"

ଲେଙ୍ଗଟା ମନଦେଇ ଶୁଣୁଥିଲା, କହିଲା, "ବାଟରେ ସୁନାମୁଣ୍ଡା ପାଇ ତୁ ଯଦି ଗୋଇଠା ମାରି ଚାଲିଆସିବୁ, ତେବେ ତୁ ଓଲୁ, ତତେ କେହି ରକ୍ଷା କରିପାରିବେ ନାହିଁ । ଗାଁ ଗାଁକେ ଆମେ ଗଦାଗଦା ଲୋକ ଭୋକ ଉପାସରେ ପଡ଼ିରହିଛୁଁ, ଜମି ନାହିଁ, ଭାଗ ନାହିଁ, କାମ ନାହିଁ, କେବେ ଖାଇଲେ କେବେ ନାହିଁ । ଆଉ ତୁ କହୁଚୁ କ'ଣ ନା ଚାଲିଆସିବୁ, ଏଠି କ'ଣ ଖାଇ ବଞ୍ଚିବୁ ? ମୁଁ ତ ଭାବୁଚି ଆମେ ସମସ୍ତେ ଯିବା । ଆରେ, ପାଖ କ'ଣ ? ଦୂର କ'ଣ ? ପର୍ବତ କ'ଣ ? ତଳ କ'ଣ ? ଯୋଉଠି ଖାଇବା ମିଳିବ ସେଇଠି ଆମେ ଘର କରିବୁଁ । ଗାଁ ବସେଇବୁଁ । ମିଳିଲେ ହେଲା । ଯିବା, ଚେଷ୍ଟା କରିବା, ଭଲ ନ ଲାଗିଲେ ପଳେଇ ଆସିବା । ଗୋଡ଼ରେ ଚାଲି ଚାଲି ତ ଯିବା, ମନ ହେଲେ ଗୋଡ଼ରେ ଚାଲି ଚାଲି ଲେଉଟି ଆସିବା, ଗୋଡ଼ ଦି'ଟା କିଏ ନେଇଯିବ ?"

ଉଜାଡ଼ୁ କହିଲା, "ଠିକ୍ କହୁଚ ମୋ ବାପା, ମୁଁ ତ ଆଗ ଭାବୁଥିଲି ତୋ ସାଙ୍ଗରେ ଯିବି ବୋଲି । ଏଠି କିଛି ମିଳୁନାହିଁ । ଘରେ ଆମେ ପାଞ୍ଚପ୍ରାଣୀ କୁଟୁମ୍ବ, କାମ କମାଣି ତ କିଛି ନାହିଁ, କେବେ ମୂଲ ଲାଗିଲେ ପୋଷେ ମାଣେ ଆଣିଲେ ଦିନ ଯାଉଚି, କି ସୁଖ ଏଠି ?"

ଲେଙ୍ଗଟା କହିଲା, "ପଇସା ଥାନ୍ତା, ଏଠି କିଛି ବେପାର ଦେଖନ୍ତି, ସୂତା କିଣିବାକୁ ପଇସା ନାହିଁ ତ ଏଠି ବୁଣାବୁଣି ? କୋଉ କାମ ଅଛି ? ତୁ ତ ବାବୁ, ଯାହା କହୁଚୁ ସେ ସରଗ-ସୁଖ ! ଫଳ ପାଚୁଛି ତୋଳି ଆଣ ଆଉ ଖାଅ, ଜିନିଷ କ୍ଷେତରୁ ଆସୁଚି, ବୋହିନଅ ଆଉ ବିକ, ଯାହା କରିବ କର, ସବୁ ବିକା ହବ, ଏ କ'ଣ ସତ !"

କାନ୍‌କଟା କହିଲା, "ମିଛ କାହିଁକି କହୁଛନ୍ତି ? ସବୁ ଅଛୁ, କରି ଖାଇବାକୁ ମଣିଷ ନାହାନ୍ତି । ଶହେ ଲୋକ ଆସନ୍ତୁ, ହଜାର ଲୋକ ଆସନ୍ତୁ । ସେମାନେ ରାଜି ହୋଇଛନ୍ତି ଆଗ ପନ୍ଦର ଘର ଯିବେ ବୋଲି । ବାଛି ବାଛି ଜଣାଶୁଣା ଲୋକ ନେବା ଭଲ, ଯାହାଙ୍କର ବୁଦ୍ଧି ଥିବ, କନ୍ଧ ଲୋକଙ୍କୁ ଚଢ଼େଇବେ ନାହିଁ, ଆମକୁ କଥା ଆସିବ ନାହିଁ । ମୁଁ ଯେମିତି ବତେଇବି ସେମିତି ଚଳିବେ, ସବୁ ବାଗ ବତେଇବି, କଥା ହେବା ଯେ । ସବୁ ସୁବିଧା; ମାଝି କନ୍ଧଙ୍କୁ ରଗେଇବାକୁ ହେବ ନାହିଁ, ମୁଣ୍ଡା-ମାଝିଙ୍କି ରଗେଇଦେଲେ ସମସ୍ତିଙ୍କର ଅନାସ୍ଥା, ଆମେ ଧନ କମେଇଚୁଁ ସିନା, ରଜା ତ ସେମାନେ, ତାଙ୍କ କଥାରେ କେହି ପାଟି ଫିଟେଇବେ ନାହିଁ ।"

ଉଜାଡ଼ୁ କହିଲା, "ସେଇଟା ଆଉ ବଳେଇଯିବ ? ବୁଦ୍ଧି ନଥାଇ ମଣିଷ ବାଟ ଚାଲିପାରିବ ?"

ଲେଟା କହିଲା, "ତମ ଲୋକଙ୍କର ଧନ ନାହିଁ ସିନା, ବୁଦ୍ଧିରେ କେହି ପାରିବ ନାହିଁ । କାହାକୁ ଖୁସି କରେଇ ରଖିବା କଥା ଯାହା କହିଲୁ, ସେଇଟା ତ ଅସଲ ସିଆଣା କାମ । ସେଥିରେ ଅଡ଼ୁଆ କ'ଣ ? ଯୋଉଠି ପେଟକୁ ଖାଇବାକୁ ମିଳିବ, ସେଠି ପିଠିରେ ପଡ଼ିଲେ ବି ସହିହେବ ।"

କେଇଟା ଦିନରେ, ଆଖପାଖ ତମ ଗାଁମାନଙ୍କରେ ଖବର ଖେଳିଗଲା, ପାହାଡ଼ ଉପରେ ଅଛି କନ୍ଧରାଜ୍ୟ, ସେଠି ଲକ୍ଷ୍ମୀ ଦୁରିରହିଛି, ସେଠିକି ତମ ଡାକିନେବାକୁ ନିଜେ କନ୍ଧମାନେ ତାଙ୍କ ମନ୍ତ୍ରୀଙ୍କୁ ପଠେଇଛନ୍ତି, ସେ ବି ତମ ଲୋକ, ସେଠି ସବୁ ସୁଖ ସୁବିଧା କରେଇଦେବା ଲୋକ ସେ, ତା'ରି ହାତରେ ସବୁ ।

ବାରଗୁଡ଼ାର ଲେଟା, ଉଜାଡ଼ୁ, ବାମୁନୁ, କାମୁନୁ, ଗୃଚଡ଼, ଚମ୍ପୁ ଲାଗିପଡ଼ିଥିଲେ, ନିଜ ନିଜ ବନ୍ଧୁ ସମ୍ବନ୍ଧୀମାନଙ୍କୁ ଖବର ପଠାଉଥିଲେ । କଥା ରଟୁଥିଲା, କାନ୍‌କଟା କିଛି ନଥିବା ଲେଙ୍ଗୁଟି ମରା ଗରିବ ହୋଇ ଚାଲିଯାଇଥିଲା, ଧନୀ ହୋଇ ଲେଉଟି-ଆସିଛି, ତା'ର ସେ ଦେଶରେ କ୍ଷେତ, ତୋଟା, ବେପାର, ତାପ, କ୍ଷମତା ଆଉ ପ୍ରତିପତ୍ତି, ସେ କନ୍ଧ ଦେଶର ମନ୍ତ୍ରୀ ।

କଥା ପଡ଼ିଥାଏ କଦମ୍‌ପାଲିର ହାଟରେ, କାନ୍‌କଟା ନଥାଏ । ଟିଲପାଲିର ଡଲିଆ ତମ ବାରଗୁଡ଼ାର ବାମୁନୁ ତମକୁ କହିଲା, "ଶୁଣୁଛୁଁ ଯେ, ସେ କାନ୍‌କଟା ଆମରି ଲୋକ ତ, ତମ୍ ଲୋକର କଥାରେ କି ସତ ? କହି ପୋଛି ଡାକି ହାକି ନେଇଯିବ, ପଛେ ମୁଣ୍ଡ ପିଟି ସବୁ ଛଡ଼େଇ ନନେବ କିଏ କହିବ ? ଯଦିବା ଆମକୁ ଭୂଇଁବାଡ଼ କରେଇଦେବ, ବେପାର କରେଇଦେବ, ତା' ନିଜର ଭାଗ କେତେ ? ନିଜର ଲାଭ ନଥାଏ ତମ୍ ଲୋକ ତୁଚ୍ଛାରେ କ'ଣ କରିବାକୁ ବସିଛି ?"

ଖଲିଆପାଲିର ଗବ୍‌ଡ଼ା ଡମ୍ କହିଲା, "ମତେ ବି ସେଇ କଥା ଅଡ଼ୁଆ ଅଡ଼ୁଆ ଲାଗୁଛି । ଆମେ ନିଜେ ତ କେତେ ଫିସାଦ କରିଥାଉଁ, ଫିସାଦ ନକଲେ ପେଟ ନପୂରେ, ନା ମାଗିଲେ କିଏ ଦେବ ? ସେ ବି ସେମିତି କୁମୁକ୍ (ଫିସାଦ) କରି ଆମକୁ ଭୁଲେଇ ନେଇଯିବ, ପଛକେ ଆମେ ବିପଦରେ ପଡ଼ିଲାବେଳକୁ ସେ ଆଉ ଚାହିଁବ ନାହିଁ ନା ।"

କଲାରଟିକିଲିର ନୂଆ ଜନ୍ମ କହିଲା, "ମୁଁ ବି ସେମିତି ଭାବୁଛି । ସତ ବାଟରେ କିଏ ଚାଲୁଛି ? ଆମେ ନିଜେ ତ ବୁଝୁଁ ଛୁଁ । ପୂର୍ବ ଦିଗରେ ଗାଁଟାଏ ଥିବ, କିଏ ବାଟ ପଚାରିଲେ ପିଲାମାନେ ବି ପଶ୍ଚିମ ଦିଗ ଦେଖାଇବେ । ଏ ତ ଦୁନିଆର ମଣିଷ ହୋଇଥିବ, ବାରଘର ବୁଲି ବୁଲି ମାଗି ଖାଇ ଖାଇ ଶେଷରେ କ'ଣ ଆଡ଼ିବାଡ଼ ପାଇଛି । ଏତେ କନ୍ଧ କନ୍ଧ ହେଉଛି ଯେ, ଆମେ ଶୁଣିଥାଉଁ କନ୍ଧ ବୋଇଲେ ଅନ୍ଧ, ରାଗିଲେ ହାଣି ପକାଇବେ । ଅଚିହ୍ନା ଦେଶ, ବଣ ପାହାଡ଼, ବାଘ ହାତୀ, କି ଭରସା ଅଛି କାହା କଥାରେ ?"

ବାମୁଲୁ ବୁଝେଇଲା, "ତୁମେ ଆମେ ଡରିବା କଥା ସତ । ତେବେ ଏଠି ନିଜ ଅବସ୍ଥା କଥା ଦେଖ । ଗା ଗାଁକେ ଏତେ ଏତେ ଲୋକ, ଘରେ ମଣିଷ ମଣିଷ ରହିବାକୁ ଜାଗା ହଉନାହିଁ । ଜମିବାଡ଼ି ନାହିଁ । ମୂଳପାଠ ନାହିଁ । ଅଧେଦିନ ଭୋକରେ ବିତୁଛି । ଆମେ ବୁଦ୍ଧିଥିବା ଲୋକ, କେତେ କେତେ କାମ ଜାଣିଥିବା ଲୋକ, ପଇସା ନାହିଁ କି ସୁବିଧା ନାହିଁ ଯେ କିଛି କରିବା । ଶୁଖି ଶୁଖି ମରୁଛୁଁ, ଆମର ଭିତରୁ ଜଣେ ଆସି ସିଧ ଗୋଟାଏ ନୂଆବାଟ ବତେଇଲା, ଯାଇ ଚେଷ୍ଟା କରିବାନାହିଁ କାହିଁକି ?"

ଗୃଚେଡ଼ି ଡମ୍ବ କହିଲା, "ସେମିତି ଅନ୍ଧାରରେ ବାଡ଼ି ବୁଲେଇ ବୁଲେଇ ତ ଆମ ଡମ୍ ଲୋକଙ୍କ ଝଡ଼ଣା ଚାଲେ ଖାଲି, ଦଶ ଜାଗା ବୁଲିବା, ନ' ଜାଗାରେ କିଛି ମିଳିବ ନାହିଁ, ଗୋଟାଏ ଜାଗାରେ ପାଣିମନ୍ଦେ ମିଳିବ, ସେଇଠୁ ଆରମ୍ଭ କରିବା । କିଏ କୋଉ ଗାଁରେ କାଲିକାଲିକୁ ପଡ଼ିଥାଏ ? ଲଖିଗଲେ ଲଖିଯାଉ, ଉପୁଡ଼ିଗଲେ ପୁଣି ଉଡ଼ୁଥାଉ । ବଞ୍ଚେଇଛି ଆମର ସାହସ, ଯାହା ମନ ତା କରିବା, ଯେମିତି ହେଲେ ବଞ୍ଚିବା ।"

ଉଜାଡ଼ୁ ଚୁନିଥିଲା, କହିଲା, "ହଏ ହୋ, ସେ କାନ୍‌କଟା କୋଉ ସୁନାଖଣି ଅଛିବୋଲି କହୁଛି କି, ତା କଥାକୁ ଏତେ ସନ୍ଦେହ ? ତା କଥା ତ ମୋ ମନକୁ ପାଉଛି, ଆମେ ଘର ବଉଁଶ ଯିବାକୁ ବାହାରୁଛୁଁ । ସେ କହୁଚ—ଏଠି କାମ ନାହିଁ, ସେଠି କାମ କମାଣି ମିଳିବ, ଝଟିବ ଖାଇବ, ହେଲେ—ସେଠି ଲାଭ ମିଳିବ ବେଶି । ସେ କନ୍ଧ ଲୋକ ଅନ୍ଧ ସତ, ଅନ୍ଧ ବୋଇଲେ—ପଇସା ଚିହ୍ନିନାହାନ୍ତି, ଏଣର ଭାଷା ବୁଝନ୍ତି ନାହିଁ, ଏଣ ଲୋକଙ୍କ ସାଙ୍ଗେ ବେପାର କରି ଜାଣିନାହାନ୍ତି । ତୁମେ ତାଙ୍କର ବିଶ୍ୱାସୀ ହୋଇ ରହିବ, ତାଙ୍କର ଜିନିଷ ଆଣିବ, ବଦଳେଇବ, ବିକିବ, ତାଙ୍କର ଯାହା ଯାହା ଲୋଡ଼ା ତାଙ୍କୁ ଯୋଗେଇବ, ନିଜେ ଦି' ପଇସା ଲାଭ କରିବ ।

ତୁମେ ତାଙ୍କର କହିବା କଥା ପଦାଲୋକଙ୍କୁ ବୁଝେଇବ, ପଦାଲୋକଙ୍କ କଥା ତାଙ୍କୁ ବୁଝେଇବ, ତାଙ୍କୁ ବୁଦ୍ଧିଦେବ, ତାଙ୍କର ମନ୍ତ୍ରୀ ହେବ । ତୁମେ ତାଙ୍କର ଲୋକଙ୍କୁ ନୂଆ ନୂଆ ବୁଦ୍ଧି ଶିଖେଇବ, ସେମାନେ କାମ କରିବେ, ତାଙ୍କର ଆଦୁର ଭଲହେବ, ମଣିଷ ପରି ଚଳିବେ । ତୁମେ ତାଙ୍କର ଉପକାର କରିବ, ସେ ତମକୁ ଶରଧା କରିବେ, ଗାଁ ବସେଇବାକୁ ଜାଗା ଦେବେ, ଚାଷକରି ଖାଇବାକୁ ଜମି ଦେବେ, ଜମି ତୁମର ହେବ । ତୁମେ ତୁଣ୍ଡରେ ତାଙ୍କୁ ବଡ଼ବୋଲି ମାନିଥିବ, ସେ ତମକୁ ଶରଧା କରୁଥିବେ । ଏ ତ ଦିଆନେନା ବେପାର, ଏଥିରେ ସନ୍ଦେହ କରିବାର କାରଣ କ'ଣ ଅଛି ? ସେମାନେ ତ ସତ୍ ଲୋକ, ସରଳିଆ ଲୋକ, ତାଙ୍କୁ କି ଡର ? ଏତେ ମଣିଷ ଅଛନ୍ତି, ତମକୁ ବାଛି ବାଛି ବାଘ ଖାଇବ ? ଯିବା, ରହିବା, ନୂଆ ଦେଶକୁ ଆମର ଦେଶ କରିବା, ଏ ବସୁଧା ସମସ୍ତଙ୍କର । ସ୍ୱାକୁ ମଣିଷ କଲି କି ମାହାପୁରୁ କଲି : ମନ ନମାନିବ, ପଳେଇ ଆସିବା । ସେ ଜଣେ ଲୋକ ଯାଉଛି, ଡରୁନାହିଁ, ଆମେ ଏତେ ଲୋକରେ କି ଡର ?''

ଗୃହେଡ଼ କହିଲା, ''ମୁଁ ତ ସେଇ କଥା କହୁଛି, ଯାଇ ଦେଖିବା । ସେ ଜଣେ ଲୋକକୁ ସେମାନେ ବିଶ୍ୱାସ କରିଛନ୍ତି, ଆମେ କହିବା, ସେ ବି କହିବ, ଆମେ ତା'ର ଲୋକ । ସେ ବଡ଼ ହେଉ, ସେଇ ଛତା ତଳେ ଆମେ ବି ପଶିବା । ଯେ ଯାହା କର ଭାଇ, ନିଜ ଭିତରେ ଦଗଲ୍‌ବାଜି କରିବ ନାହିଁ, ନଇଲେ ସମସ୍ତଙ୍କୁ ବିପଦ ।''

ପନ୍ନାପଲିର କୁଟି ଡମ୍ବ କହିଲା, ''ଆମେ କ'ଣ ଗାଁକୁ ଗାଁ ଏକା ସଙ୍ଗେ ଉଠିଯିବା ?''

ଉକାଡ଼ୁ କହିଲା, ''ତା କେମିତି ହେବ ? ସେତେବେଳେ ସେଇଟା ଭିନେ ରାଜ୍ୟ । ଆଠ ମୁଣ୍ଡାମାଝି ସେଠି ରାଜ୍ୟ ଚଳାନ୍ତି, ପୁଣି ଗାଁକୁ ଗାଁ ଗାଁ-ମୁଣ୍ଡିଆଳ । ସଭା କରି ନିଷ୍ପତ୍ତି କରନ୍ତି । ଏବେ ତାଙ୍କର ଆଜ୍ଞା ହୋଇଛି ଡାନ୍‌କାଟା ପନ୍ଦର ଘର ଲୋକ ନେବ । ବାଛି ବାଛି ଲୋକ ନେବ । ଆଗ ଯେ ଯେ ଯିବେ ସେମାନେ କାମ ଦେଖେଇ ବାଟ ଫିଟେଇଲେ ପଛେ କିଛି କହିବ ଆଉ ଲୋକ ଡାକ । ଦୁସିଆର ଲୋକ ଦରକାର, ବୁଦ୍ଧିଆ ଲୋକ, ପାଇଟିଆଳ ଲୋକ ଦରକାର । ବୁଣ୍‌କାର୍, କୁମ୍ଭାର, ବଢ଼େଇ, ବାଇଦ୍‌କାର୍, ଯେ ଯାହା ଜାଣେ, ଅସଲ ତ ବେପାରୀ, କାମିକା ଲୋକ, ସାହସୀ ଲୋକ । ଡେଣେ ସୁବିଧା କଲେ ସମସ୍ତେ ଯିବେ । ନଇଲେ ଏକାଠି ସବୁ ଲୋକ ଉଠିପଡ଼ିଲେ କିଏ କିଏ ଖେଦିଦେବ ନାହିଁକି ? କହିବ କୁଆଡ଼ୁ ଏ ଝଙ୍କାର୍ କି କୁଇଆ ଆସି ପଶିଗଲେ, ମାର, ତଡ଼ ।''

ଗବଡ଼ା କହିଲା, ''ପଛେ ଖେଦିଲେ ?''

ଉକାଡ଼ୁ କହିଲା, ''ସେକଥା ବି ପଗ୍ଭରିଥିଲି । ସେ ତ ଆମର ବଶ ହେବ, ଆମକୁ ତଡ଼ିବ କାହିଁକି ? ବଶ ନକରି ପାରିଲେ କି ଡମ୍ବ ହେଇଚ ? ତା'ର ମନ-

ମାଉଁସ ରଙ୍ଗରଙ୍ଗର ଝଡପଟା ଅଳଙ୍କାର ଏଇଟା ସେଇଟା ଲୋଡ଼ା । ଦଅ । ସେ ତା' ସୁଖରେ ବୁଡ଼ିରହୁ, ଆମେ ଆମ ସୁଖ କରିବା । ତହିଁରେ ପୁଣି, ତା'ର ଗୋଟାଏ ବନ୍ଧନ ଅଛି, କଥା ଦେଲେ କଥା ଭାଙ୍ଗେନାହିଁ, କହେ ପାପ ହେବ, ମିଛ କହେ ନାହିଁ, ଅନ୍ୟାୟ କରେ ନାହିଁ । ସେହି ଧର୍ମମାନ ଚଳିବାକୁ ତାକୁ ବଡ଼ ସୁଖ । ତମୁକୁ କଥାଦେଲେ କଥା ଆଉ ଭାଙ୍ଗିବ ନାହିଁ, ତା'ର ସେ ଇଚ୍ଛା ନାହିଁ କି ସେତେ ବୁଦ୍ଧି ନାହିଁ । ଭାବି ଦେଖ ତମ୍ଭମାନେ, ସ୍ୱାଠୁ ବଳି ଆଉ ଅଧିକ ସୁବିଧା ମିଳିବ କୋଉଠୁ ?''

ତାଲିଆ କହିଲା, "ଆମେ ନଜେ ଦୁର୍ନିଆ କଲେ ?''

ନୂଆ ଜନ୍ମ କହିଲା, ''ତା ବି ତ ଗୋଟେ କଥା । ଦୁର୍ନିଆ ନକରି କି ବେପାର୍ ? ସେ ସଗିଲେ ?''

ଉଜାଡ଼ୁ କହିଲା, ''ଆରେ ଦୁର୍ନିଆ କୋଉ କଥାକୁ କହୁଚ ? କୋଉଟା ନ୍ୟାୟ କି ଦୁର୍ନିଆ ଯେଉଟା କୋଉଠି ଲେଖାହୋଇଛି କି ? ଦେଖ କାକୁଡ଼ିକୁ ଲୋକ ଶହେଥର ଚୋରି କରୁଛି, ଧରା ନପଡ଼ିଲେ ଭଲଲୋକ, କେହି ଦୁର୍ନିଆ ବୋଲି କହିବାକୁ ନାହିଁ । ଥରେ ଚୋରିକଲା, ଧରାପଡ଼ିଲା, ଲୋକେ କହିଲେ ଦୁର୍ନିଆଟା ! କାହାକୁ ବଶ କରିପାରିବ ନାହିଁ, ନିଜର ବୁଦ୍ଧି ହଜିଯିବ, ସେ କହିବ ଏଇଟା ଦୁର୍ନିଆ । ବଶ କରିଦେବ, ବୁଝେଇଦେବ, ତୁମ ଉଦ୍ଦେଶ୍ୟ କେହି ଜାଣି ପାରିବେ ନାହିଁ, କେହି ତମୁକୁ ଦୁର୍ନିଆ ବୋଲି କହିବେ ନାହିଁ । ତୁମର ବୁଦ୍ଧି ନଥିଲେ ତୁମେ ଭିନେ ଦେଶକୁ ଯିବ କାହିଁକି ?''

ତାଲିଆ କହିଲା, ''ଦୁର୍ନିଆ କରି ଧରାପଡ଼ିଲେ କ'ଣ ହେବ ?''

ଉଜାଡ଼ୁ କହିଲା, ''ଏଠି କ'ଣ ହୁଏ ? ସେଇଆ । ନିଜକୁ ବଞ୍ଚେଇ ଶିଖିବ, ନପାରିଲେ ଭୋଗିବ । ଯେ ତୁମେ ମୂଳରୁ ଦୁର୍ନିଆ କରିବ ବୋଲି କହୁଥିଲ କାହିଁକି ? ତୁମେ କାମ କରିବାକୁ ଭିନେ ଦେଶକୁ ଯିବ, କହିବ ଆମେ ସତରେ ଚଳିବା ଲୋକ, ମିଛ, ଫନ୍ଦ ପାଖ ପଶୁନାହିଁ, ଆମେ କାମ କରିବୁ, ରହିବୁ, ଖାଇବୁ, କାମ ଦିଅ ।''

ତାଲିଆ କହିଲା, ''ସତ, ସତ, ଏବେ ବୁଝିଲି ।''

ତମ୍ଭମାନେ କାଉପରି ଘାଉ ଘାଉ ହେଲେ । କଥା ଉଠିଲା, ନୂଆ ବାଟ ଦିଶୁଛି, ଚେଷ୍ଟା କରିବା ଦରକାର । ଆଗ ଦଳେ ଯିବେ । ସେଠି ରହିବେ । ସେ ଦେଶରୁ ଏ ଦେଶ ଯିବାଆସିବା ଲାଗିଥିବ । ସୁବିଧା କରେଇ ଅନ୍ୟମାନଙ୍କୁ ନେବେ । କେତେବେଳେ ସେଠି କ'ଣ ହେଉଛି ସେ ଖବର ଆସୁଥିବ । ଯେତେ ବେକାର, ଅଭାବୀ, ଦୁଃସାହସୀ ତମ୍ଭ ସମସ୍ତେ ନିଜ ନିଜ ବାଗରେ ଭାବି ଭାବି ସ୍ୱପ୍ନ ଦେଖି ଦେଖି ଗଲେ । ସମସ୍ତେ ବୁଝିଥିଲେ, ନୂଆ ବାଟ ସତ; କିନ୍ତୁ ସବୁ ନିର୍ଭର କରୁଛି କାନ୍‌କଟା ଉପରେ ।

ତା ନାଁ ଡମ୍ବ ଗାଁମାନଙ୍କରେ ନାନା ରଙ୍ଗରେ ରଞ୍ଜିତ ହୋଇ ବ୍ୟାପିଯାଇଥିଲା ।

ହକାଡ଼ୁ ଘରକୁ କାନ୍‌କଣ୍ଟା ହିଁ ପୋଷୁଥିଲା । କହୁଥିଲା, "ବେଶି କଛୁ କରପାରନାହିଁ ଭାଇ, ଯାହା ବା କମାଣି ସବୁ ସେ ପର୍ବତ ଉପରେ, କନଆଁ ଖୋଳିବ ସେଥିପାଇଁ କନ୍ଧ ଦେଇଛନ୍ତି ଝୋଲା (କନ୍ୟାପୁନା) ଟଙ୍କା ଗଣିଦେବାକୁ ଯାହା ଦ' ଛନ କୋଡ଼ି, କନଆଁ କାନକୁ ଫାପିଆ ଦ'ଟା, ଆଉ ମୋ ବାଟଖର୍ଚ୍ଚ, ପୁଣି ତାଙ୍କ ପାଇଁ ଜାନସ ଦେବାକୁ ହେବ, ସେଥିପାଇଁ ଯାହା । ଶୋକରେ ମରୁଥିଲି, ପୋଷିଲେ ପାଲଲେ, ମୋର ବାପ ସେ ମା' ସେ, କେମିତ ଅସରଆ ହେବ ? ଅସରଆ ହେଲେ ଏଣେ ରହିଯିବାକୁ ପଡ଼ିବ । ଯାହାହେଉ, ଯେତେଦନ ଅଛୁ ଏଠି, ତୋ ଘର କଏ ମୋ ଘର କଏ, ପଛେ ମୋର ସରଲେ ତୋର ହେଲେ ତୁ ମତେ ଦବୁ ନାହିଁକ ?"

ହକାଡ଼ୁ ଘରର ବିଶ୍ୱାସ ହେଲା, କାନ୍‌କଣ୍ଟା ପ୍ରକୃତରେ ଧନୀ ହୋଇପାରିଛି । ଭାବିଲେ, କଏ କେମିତ ଉପାୟ କଲା ତା' ସେ ଜାଣେ, ଯେତେ ବିଶ୍ୱାସୀ ହେଉ ସବୁ କଥା କହିବ ନାହିଁ, ସବୁ କଥା ଖୋଲଚାଡ଼ି ପଚାରିବାର ବି ନୁହେଁ, ତେବେ ଯେତେହେଲେ କାନ୍‌କଣ୍ଟା ତାଙ୍କର ବନ୍ଧୁ, କନ୍ଧ ଦେଶକୁ ଗଲେ ସେ ହେବ ତାଙ୍କର ବଡ଼ ସାହା ।

କନଆଁ ପାଇଁ ସେ କଣିଥିବା ସୁନାଫାପିଆ ହକାଡ଼ୁର ସ୍ତ୍ରୀ ରୁଦ୍‌ମା ଦେଖିଲା, ଆଖି ଖୋସିଦେଲା—"ସୁ—ନା !"

କାନ୍‌କଣ୍ଟା କହିଲା, "ଥରେ ଯା, ସେଠି ରହ, କେତେ ସୁନା ତୁ ନଜେ ଲଗେଇବୁ ।"

ରୁଦ୍‌ମା ପ୍ରସ୍ତାବ ଦେଲା, "ତା ଦାଦହିଅ ଭଉଣୀ କାମ୍ବସରୀ ଅଛୁ, ଦେଉଳା ଗାଁର କୋର୍କୋଣିଆ ଗୋଟର ପିଲପେଟା (ପେଟ୍ରୁ) ଡମ୍ବର ଝିଅ, ଭଲ ଡଉଲ ଡାଉଲ ଗଢ଼ଣ, ସବୁ କାମକୁ ମଙ୍ଗବୁତ୍, ବୟସ ଅଠର ହେବ କି କୋଡ଼ିଏ ହେବ । ପିଲପେଟା ବଡ଼କୁଟୁମ୍ବୀ ଲୋକ, ପାଞ୍ଚପୁଅ ପାଞ୍ଚଝିଅ, ଝିଅମାନଙ୍କ ଭିତରେ ଏଇଟି ସାନମଝିଆଁ, ସମସ୍ତେ କୁଲକର ଖାଇବା ଲୋକ, କନ୍ତୁ ଝିଅଟି ହୀରା (ସୁନ୍ଦର), ବାପ ଝୋଲା ମାଗିପାରେ ପାଞ୍ଚକୋଡ଼ି । ହାଙ୍କିବ ଦଶକୋଡ଼ି ।"

"ହଁ, ଏତେ ପାଞ୍ଚକୋଡ଼ି ଦଶକୋଡ଼ି କଏ ଦେଉଚି ? ସୁନାଫାସିଆ ପାଇବ, ଝିଅ ତା'ର ଜନ୍ମଜନ୍ମାନ୍ତରେ ପାଟ୍‌-ବାଣରାଣୀ ହେବ, ଧନକୋଡ଼ିରୁ ବେଶି ନାହିଁ । ହଁ ହେଲେ ହଁ ନାଇ ହେଲେ ନାହିଁ ।"

"ଗୁଲ୍ ଭୁଇ ଆଉ ମୁହିଁ ଦୁହେଁ ଯାଇ କହିଦେଖିବା, ସେମାନେ ସେଠି ରହିବାକୁ ଗଲେ ତ ଆଞ୍ଚର ଭଲ ହେବ ।"

କାନ୍‌କଟା ବି ଦେଖିଗଲା । ସତ, ଭୁଦ୍‌ମା ବଢ଼େଇ କହୁନାହିଁ । ମନ ମାନିଲା, କଥା ଛିଣ୍ଡିଲା, ଦିନେ ସତକୁସତ କାନ୍‌କଟା ବାଘ ହେଲା ।

କାମ୍‌ପସ୍ ସୁନାଫାସିଆ ନାଇ ଉଜାଡ଼ୁ ଘରକୁ ଆସିଲା ।

ଲେଟା ଡମ୍ବର ଗୁହାଳ ଘରର କବାଟ ବନ୍ଦକରି କାନ୍ଥଉପରର ବାଉଁଶ ଜାଲର ସନ୍ଧବାଟେ ଆସୁଥିବା ଗ୍ରୀଷ୍ମକାଳେକଟା ବେଳର ଆଲୁଅରେ କାନ୍‌କଟା ତା ନୂଆ ଘରଯାର ରୂପକୁ ଅନାଇଁ ରହିଲା । ସ୍ନେହରେ ପ୍ରଶଂସାରେ ତା ମନ ପୂରିଗଲା । ପଲେଇଗଲା ଘରଯାଟା ତା'ର, କମ୍ପିଲା, "ସେ ଥିଲା ଗୋରଆଟା, ଏଟା ନହେଲେ ଶ୍ୟାମଳ ବର୍ଣ୍ଣ", କିନ୍ତୁ କେଡ଼େ ମଧୁର, କେଡ଼େ ଚିକଣ ! ତା ମୁହଁଠୁଁ ସ୍ତ୍ରୀ ମୁହଁ କେଡ଼େ ସୁନ୍ଦର ! ତା ଆଖି ଥିଲା ଡେବା ଡେବା, ଯେମିତି କ'ଣ ଖୋଜୁଚି, କୁଆଡ଼େ ଧାଇଁ ପଳେଇବ, ଏମିତି ଯେ ଆଖିର ଗୁହାଣି, ସ୍ତ୍ରୀ ଆଖିରେ ଅଛି ମୋହିନୀ, ଓଟାରୁଚି । ଏ ଗୁହାଣି ଶାନ୍ତହୋଇ କହୁଚି, ମୁଁ ତମର, ମୁଁ ତମର, ମତେ ଯାହା କର ମୁଁ ତମର, ମୋର ଆଉ କେହି ନାହିଁ । ସେଟା ଥିଲା ଡେଙ୍ଗୀ, ଧଡ଼ଧଡ଼ିଆ, ବରୁଡ଼ଟାଏ ଲେଞ୍ଜରେ ଠିଆହେଲେ ଯେମିତି ଦିଶନ୍ତା । ସ୍ତ୍ରୀ ଦେହ ଯେ କୁନ୍ଦିଲା ପରି, ଗୋଡ଼ର ପେଣ୍ଡା କେଡ଼େ ଗୋଲ ଆଉ ମୋଟ ! ସେ ଜଙ୍ଗଲ ଚଢ଼ିବ, ବାଟ ଗ୍ରୁଲିବ, ଦେହସାକ ଗୋଲ ଗୋଲ ପିଣ୍ଡୁଳା, କାମ କରି କରି ଦେହ ଗଢ଼ିଚି, ଦମ୍ଭ ଅଣ୍ଟା ।"

ସେ ହସିଦେଲା ।

କାନ୍‌କଟା ମୁଗ୍ଧ ହେଲା । "କି ସୁନ୍ଦର ଦାନ୍ତ ! ମୁହଁରେ ଧୋବ ଫୁଲ ଫୁଟି-ଗଲା । ଏକା ମଗ୍ରୁକେ ଦାନ୍ତ, ଅଳ୍ପ ଗୋଜିଆ ଗୋଜିଆ । କି ଫୁଲ ନାଁ ମନେପଡ଼ୁନାହିଁ, ଯେମିତି ତାରି କଡ଼ର ହାର ଉପରେ ଖରା ଝକ୍‌ଝକ୍ କଲା ! ହସିଦେଲେ ମୁହଁସାକ କେତେ କୁଁଚୁ କୁଁଚୁ ପଡ଼ୁଚି, ଆଖି ଯେମିତି ନାଚୁଚି, ଗୋଲ ନାକ ବି କୁଞ୍ଚ କୁଞ୍ଚ ହୋଇଯାଉଚି ।"

ପୁଣି ତା'ର ହସ, ଫୁସ୍ ଫୁସ୍ କରି କହିଲା, "ଛି, କ'ଣ ଏତେ ଦେଖୁଛୁ ? ମୁଁ ଯାଏ, ଅପା କ'ଣ କହିବ !"

"ବଣକୁ ଯିବୁ ?"

ସେ ମୁଣ୍ଡ ହଲାଇ ହଁ କଲା, ଲୁଗା କାନି ଝେବେଇଲା ।

"ବଣରେ ବାଘ ଅଛି, ଜାଣୁ ?"

"ଭୁଇ ବାଘ ?" ସେ ଆହୁରି ହସିଲା ।

"ସତ ଯେ, ଆମର ବାଘ-ବଣ", କାମ୍‌ସଖି କବାଟ ଖୋଲି ଧାଇଁ ପଳେଇଲା । କେଡ଼େ ସୁନ୍ଦର ସ୍ୱର ତା'ର ! ଯେମିତି କେଉଁ ଚଢ଼େଇ ଡାକୁଛି ! କେମିତି ତା ଦେହର ବାସ୍ନା ! କ'ଣ ନିଭୃତ, ଅତି ଆପଣାର, "ଯେମିତି—ଯେମିତି—କଅଁଳ ମକା ପୋଡ଼ା ହେଇଚି ।" ତା'ର ସବୁ ସୁନ୍ଦର ।

କାନ୍‌କଣ୍ଟା ଶୋଇ ଶୋଇ ଭାବିଲା, ମହାପ୍ରଭୁ ଦୟାଳୁ, ତାକୁ ସୁଖ ଦେଇଛି । ସେ ଫାଲେ ଥିଲା, ଏଥର ହେଲା ଗୋଟା । ତା' ଘର ପୂରିବ, ଛୁଆପିଲା ହେବେ, ପୁଣି ପୁଅର ପୁଅ ଝିଅର ପୁଅମାନେ । ସେ ମଣିଷ ହୋଇ ରହିବ, ତା'ର ସୁଖ ବଢ଼ିବ, ବନ୍ଧୁ କୁଟୁମ୍ବ ବଢ଼ିବେ । ଆଉ ସେଥିପାଇଁ, ଆପଣାର ସେହି ସୁଖର ସଂସାର ଗଢ଼ିବା ଲାଗି, ତାକୁ ବୁଦ୍ଧି ଖଟାଇ ଦେହ ମେହେନତ୍ କରି ଲାଗିପଡ଼ିବାକୁ ପଡ଼ିବ ଦିନ ଉପରୁ ଦିନ, କାମ୍‌ସଖିର ଆଖିର ମାୟାରେ ବୁଡ଼ିଗଲେ ସବୁ ବୁଡ଼ିଯିବ । ଅଥଚ ସୁଖ ଦେଉଛି ସେଇଆ, ମଣିଷର ଜୀବନଟା ଏଡ଼େ ବିଚିତ୍ର ଯେ ସୁଖକୁ ସାଇତି ରଖିବାକୁ ହେଲେ ସେ ସୁଖକୁ ସବୁବେଳେ ଭୋଗ କରିହୁଏ ନାହିଁ, ତହିଁରୁ ଦୂରେଇ ଯିବାକୁ ପଡ଼େ ।

କାନ୍‌କଣ୍ଟା ଏକୁଟିଆ ଯାଇ ଦୂରି ବଜାରରେ ନିଜ ପାଇଁ ସାତଶହ ଟଙ୍କାର ସୁନା କିଣିନେଲା । ଭାବିଲା, ଅଳ୍ପକେ ଏ ଧନ ପାଖରେ ରଖିହେବ, ପଛେ ଆହୁରି ବଢ଼ାହେବ, ସମ୍ପତ୍ତି ରହିଗଲା, ଦରକାରବେଳେ କାମରେ ଆସିବ । ସେ ଦୂରକୁ ଭାବୁଥାଏ—ପଛେ କନ୍ଧ ପଇସାର ମୂଲ୍ୟ ବୁଝିବେ, ନିଜେ ସୁନାକୁ ବାଇହେବେ, ଏବେ ନହୁଅନ୍ତୁ । ନିଜ ପାଇଁ ଓ କାମ୍‌ସଖି ପାଇଁ ସେ କିଣିଆଣିଲା ଲୁଗାପଟା, ବିଛଣା, ନାନା ଘରକରଣା ଜିନିଷ, ଦରକାରୀ ଜିନିଷ । ଦୁଇଶହ ଟଙ୍କା ସେ ଖର୍ଚ୍ଚ କଲା କନ୍ଧମାନଙ୍କ ପାଇଁ ଜିନିଷ କିଣିବାରେ । ଡମ୍ବରୁଣା ମୋଟା ଖଦୀରେ ରଙ୍ଗ ରଙ୍ଗର ପାନ ପାନ ଖଣ୍ଡୁଆ, କେଉଁଟା କନ୍ଧ ମୁଣ୍ଡରେ ବାନ୍ଧିବ, କି ଦେହରେ ପକାଇବ,

କେଉଁଠା ତା ସ୍ତ୍ରୀ କ ହିଁଅ ପିନ୍ଧବେ କ ଗ୍ରୁଡରେ ବାନ୍ଧବେ, ନାନା ବର୍ଣ୍ଣରେ ଆଖି ଝଲସିବ, ବୋହ୍ଂ ବୋହ୍ଂ ରଙ୍ଗ ରଙ୍ଗର, ଜାଠ ଜାଠ କାଚମାଳ, କଣ୍ଠି, କାଠମାଳ, ହାତ ପାଇଁ ବେକ ପାଇଁ, ନାକ କାନ ପାଇଁ, ମୁଣ୍ଡପାଇଁ ଅଲ୍ପ କଛୁ ରୁପା ଅଲଙ୍କାର, ବେଣି ଗିଲ୍ଟ୍ର, ପିତ୍ତଳର, କଂସାର, ବହୁତ ସୁନାପାଣିଦଆ ପିତ୍ତଳର ହାର, କାନଫୁଲ, ମୁଦ, ସାନ ସାନ ଦର୍ପଣ, ପାନଆ, ବାସ୍ନାତେଲ, ଗୁଡ଼ ଯଆଶ ମିଠେଇ, ମୁଆଁ, ଶୁଖୁଆ, ବଡ଼ି, ଲୁହା ଜନଷ, ଲୁଣ ବହୁତ ଜନଷ । ଆଠଜଣ ମୁଣ୍ଡାମାଝି ପାଇଁ ସେ ଆଠଟା ଶସ୍ତା କମ୍ବଳ ବ ନେଲା ।

ନାନା ଗାଁରୁ ଗୋଟାଗୋଟି ବଗ୍ରବଗ୍ର ହୋଇ ତା ନଜ ଛଡ଼ା ତା ସାଙ୍ଗରେ ଅନ୍ୟ ପନ୍ଦରଟି ଡମ୍ବ ପଶବାର ବ ଗଲେ, ଗୋଟିଏ ଗୋଟିଏ ପଶବାରରେ ବାପ ପୁଅ ହୋଇ ପୁଣି ଦୁଇତନ ପଶବାର । କାନ୍‌କଟାର ଉପଦେଶ ମାନ ଅନେକେ ନଜ ସଙ୍ଗରେ କାମକଶବା ସାଜ ନେଲେ, ଅଧିକାଂଶ ବୁଣ୍‌କାର ଲେକ, କଏ କୁମ୍ଭାର, କଏ ବଢ଼େଇ, କଏ ଢୋଲ ଯଆଶ କରେ, କଏ ମହୁର କରେ, ସଙ୍ଗରେ ଡମ୍ ବାଇଦ ବ ଗ୍ଲଲ । କେହି କେହି କାନ୍‌କଟ ଠୁ କଛୁ ଟଙ୍କା ଉଧାର ନେଲେ ।

ସ୍ତ୍ରୀ ପୁରୁଷ ପିଲ୍ଲ ବୁଢ଼ା ମିଶି ପ୍ରାୟ ଶହେଜଣ ଡମ୍ବ । ତାଙ୍କ ଭିତରେ ଥିଲେ ଲେଟା, ଉଜାଡ଼ୁ, ତା ମା', ତା ସ୍ତ୍ରୀ ବୁଦ୍‌ମା, ଡଲିଆ, ଗୃଚେଡ଼, ଚମ୍ପୁ, ଗବ୍‌ଡ଼ା, ପାଇଲୁ, ନୂଆଜମ୍ମ, ବାମୁଲୁ, କାମୁଲୁ, କାନ୍‌କଟାର ବଡ଼ଶଳା ସାଆଁଲ୍ (ଶାଗୁଣା) ଓ ତା ପଶବାର, ତା ସ୍ତ୍ରୀର ଭଣେଇମାନେ, ଝିଟି, ସାରୁ, ଜାମଧର ଓ ତାଙ୍କ ପଶବାର, ଡାଲ୍‌ବନ୍ଧୁ, ସୋନାଖାଉ, କତାରୁ, ମେଟା, କେତେ କେତେ, ଆଉ ପରଟ୍ଟରଙ୍କ ବନ୍ଧୁବାନ୍ଧବମାନେ ।

ନାନା ଜନଷପତ୍ର ବୋହୁ ଗୋଟିଏ ପଟୁଆର ।

ସେମାନେ ନାନା ଗୋତ୍ରର—ଟାର୍ନି, କାଡ୍ରି, ବାର୍ନି, ବଗ୍ରର୍, କୋର୍ଲ୍ଲିଆ, ବଡ଼କା, ପାଲ୍‌କଆ, ବର୍ଧିକାଲଆ, କୋର୍‌କୋଶ୍ବ, ବାଘ, ଖଶ୍ବ—ପୁଅପିଲ୍ଲ, ଝିଅପିଲ୍ଲ ଅଛନ୍ତ, ନାନା ଗୋତ୍ର ଥିବାରୁ ବଶହେବା ଅସୁବଧା ହେବ ନାହିଁ ।

ଯାମୁଗୁଡ଼ା ଗଲ୍ଲ, ଗ୍ରାହଗାଡ଼ା ନଈ ଟପିଲେ । ପର୍ବତ ମୂଳରେ ଖୋଲ୍ଲଜାଗାରେ ଟିକଏ ଅଟକଲେ । କାନ୍‌କଟା ଡାକହାକ ବୁଝେଇ କହଲ୍ଲ—

"ଏବେ ବାଟ ହେଲ୍ଲ । ମୋ କଥାକୁ ଧ୍ୟାନ ଦଅ । ମାଇକନା ପିଲ୍ଲ ତାଙ୍କର ଲୁଗାପଟା ପିନ୍ଧଥାନ୍ତୁ । ପୁରୁଷମାନେ ଭୁଚ୍ଛା କୌପୁନି ମାର, ଦେଖ, ଯେମିତ ମୁଁ କୌପୁନି ମାରୁଛି, ସେମିତ । ଲଜସରମ ନଈ ସେପାଖେ ରହଲ୍ଲ, ଏଣିକ ଆମେ ଜଙ୍ଗ ପର ଦଶିବା, ଜଙ୍ଗ ସଙ୍ଗରେ ଜଙ୍ଗହୋଇ ମିଶିଯିବା । ଘରେ ଥିଲେ ଲୁଗା ପିନ୍ଧ, ଅଙ୍ଗୀ ପିନ୍ଧ ମନଇଚ୍ଛା, କ ଏ ନଈପାର ହୋଇଗଲେ, ତା ଆଗରୁ—ଏମିନ୍ତ ।

ପଛେ ଆମେ ସବୁ ପିନ୍ଧିବା, ଭଳା ପଣ ବେଣ ପକାଇବା, ଅଗ କହର ଅଖି ଅଭ୍ୟାସ ହୋଇଯାଉ ।

ଯେ ନ ଶିଖିଛୁ, ମର ସର କହଭାଷା ଜଲ୍‌ଦି ଶିଖ, କିଛି କଷ୍ଟ ନାହିଁ, ଏଜୁ କହିଲେ ପାଣି, ହିଚୁ କହିଲେ ନାହିଁ, ଓ୍ୱାମ୍ମୁ କ ବାମୁ କହିଲେ ଆସ, ଯେମିତି ଏ ଭାଷା । ଭାଷା ନଶିଖିଲେ କହକୁ ବଶ ମନେଇ ପାରିବ ନାହିଁ, ଆପ୍ତି କମେଇ ପାରିବ ନାହିଁ, କିଛି ପାଇବ ନାହିଁ । ଯେ ନଶିଖିଛୁ ମୋଠୁ ଶିଖ, ସବୁ ବତେଇଦେବି । ବାଟରେ କେତେ ଶିଖିବ ଦେଖ ।

ତୁମେ ଦେଖିବ କହର ସାନ କେମିତି ଭନେ ଭନେ, ତୁମେ ଭାବିବ ମଣିଷ ନୁହେଁ, ଜନ୍ତୁ । ତାକୁ ଦେଖି ହସରେ ଉଡେ଼ଇଲେ, ଥଟ୍ଟା କଲେ, ସେ ତୁମର ଶତ୍ରୁ, ସହିଲେ, ଶରଧା କଲେ ସେ ତୁମ ବନ୍ଧୁ । ତୁମେ ବି ତା'ପରି ଚଳ, କ୍ଷତି ନାହିଁ । ସେ ଛୁଅଁଛି ହୁଏନାହିଁ, ତୁମେ ଯଦି କହିବ, ତା'ପରି ଘାସରେ ପୋଛିଦେବ, ପତ୍ରରେ ପୋଛିଦେବ, କ୍ଷତି କ'ଣ ? ଘାସରେ କଣ୍ଟା କି ବିଛୁଆତି ନଥିଲେ ହେଲା ।"

ମାଇପେ ହୋ ହୋ ହସିଲେ । କାମ୍‌ସରର ସାଙ୍ଗ ଜାବ୍ ( ଶୁଆ ) ହସି ହସି କହିଲା, "ହେ କାମ୍‌ସର, ଏମିତି ବରକୁ ତୁ ବାହାହେଉଛୁ, ଛି' ଲୋ ।"

କାନ୍‌କଟା କହିଲା, "ହସର କଥା ନୁହେଁ, ତା ମାଇକିନ ଲଙ୍ଗଳା ହୋଇ ବାଟ ଚାଲିବ, ଖାଲି ଝଣ୍ଟେ କୌପୁନି, ଠିଆଠିଆ ମୂତିବ, ମୂତୁ ଯେତେ ଇଚ୍ଛା, ତୁମେ ତାକୁ ହସିବ ନାହିଁ, ତା ଆଡ଼େ ଅନା ନାହିଁ । ମନେରଖିଥାଅ ଭେଣ୍ଡିଆମାନେ, କେହି କେବେ କହ ମାଇକିନିଆକୁ ଝିଅକୁ ଝାପ୍ସ ଆଖିରେ ଅନେଇଛ କି, ତୁମ ଗଣ୍ଡିରୁ ମୁଣ୍ଡଟା ଛିଣ୍ଡେଇଦେବେ, କେହି ରକ୍ଷା କରିପାରିବେ ନାହିଁ । ତୁମେ ବାଇଦ ବଜାଅ, ତା'ର ଧାଂଡ଼ୀ ନାଚ୍‌କରୁ, ତୁମେ ଅନାଅ ନାହିଁ । କଷ୍ଟକାମ ସତ, ଯେ ନପାରିବ ଏଇଠୁ ପଳାଅ, କହ ଦେଶରେ ତୁମର ଠାବ ନାହିଁ ।"

ଜାବ୍ କାମ୍‌ସରର କାନପାଖେ ହସି ହସି ଫୁସ୍ ଫୁସ୍ ହେଲା, "ଛିଃହେଲେ,— ନହେଉ, ତୋର ମନୁଷ୍ ଭଲଟା, କୁକୁର୍ ନୁହେଁ, ମୋର୍‌ଟା ଯେ—"

ଟୋକା କନିଷ୍ଟଡମ୍ କାନ୍‌କଟାକୁ କହିଲା, "ହଇ ଯେ ମମା ( ମାମୁ ) ।"

କାନ୍‌କଟା ସ୍ୱର ଲମ୍ବେଇ କହିଲା, "କାଏ କୁରୁ ( କାହିଁକି ) ରେ ? କେତେ ବଲିଆ ( ବେଳେ ) ମୁହିଁ ତୋର୍ ବୁଆର୍ ( ବାପର) ଭାଟ ( ଶଳା ) ହିଲେ ( ହେଲି ) ଯେ ସାଟାର୍ ପାଇଁ ( ସେଥିପାଇଁ ) ମୋକେ ( ମତେ ) ମମା

ଡାକ୍‌ତେ ଆଛେଇ ( ଡାକୁଛ ) ? ନା ତୋକେ ମୋର୍ ଝି ( ଝିଅ ) କେ ଦଆକଲେ ଦାନକଲ ) ?''

''ପାଡ୍ରା ଆଇଲେ ( ମୋର ଭୁଲ ହେଲା ) ମମା ।''

''ଫିର୍ 'ମମା' ? କାଏଁ ଟା (କ'ଣ) ତୋର୍ ନା, ଲେନ୍ଧା (କୋଚଆ) କା ଛୁଚ୍ (ଚୁଚୁ ନ୍ଦ୍ରା) ?''

ସମସ୍ତେ ହୋ ହୋ ହସିଲେ ।

''କାଏଁ ( କ'ଣ ) କହ୍‌ତାସ୍ ( କହୁଚୁ ) ? ଖେଳ୍ ଲଗ୍‌ତେଛ ? ( ଖେଳ କରୁଚ ) ।'' ପୁଣି ହସ ।

କନିଷ୍ଠ କହିଲ, ''ତାଙ୍କର ମାଇକିନିଆମାନଙ୍କୁ ଅନେଇଁବ ନାହିଁ କହିଲୁ ଯେ, ଠିକ୍ କହିଲୁ । କିନ୍ତୁ ଆମ ଝିଅ ପିଲାଙ୍କୁ ସେମାନେ ଅନେଇଁଲେ କ'ଣ କରିବା ?''

କହିଦେଇ ପଛକୁ ପଳେଇଲା, ତାକୁ ଲାଜମାଡ଼ିଲା ।

କାନ୍‌କଟା ଗମ୍ଭୀର ହୋଇ କହିଲ, ''ତାକେ (ତାକୁ) ହାପ୍‌ପାର୍ (ଡାକ) ହାପ୍‌ପାର (ଡାକ) । ମେଣ୍ (ନିଶ) ଉଠିନାହିଁ ସିନା, କହିଲ ପଦେ । ତମେମାନେ ସଭେ (ସବୁ) ଲେକ୍ ଶୁନା (ଶୁଣ) । ତମେମାନେ ଚତୁର୍ ହୋତାସ (ହେବ) । ଆଟାର୍ ଲଗି (ଏଥିପାଇଁ) ମୁଇଁ କ'ଲେ (ମୁଁ କହିଲି), ଭଲ୍ ଖଦପଟା ପିନ୍ଧାସ୍ (ପିନ୍ଧ) ନାଇଁ, ପିନ୍ଧ୍‌ଲେ (ପିନ୍ଧିଲେ) କହିଦେନ୍ତ୍ (ସେମାନେ କହିବେ), ତାକେ (ତାକୁ) ଡାକେ—ବନାଆଛେ (ଭଲ ସୁନ୍ଦର ମାନୁଛୁ), ମୁଷାହିର୍ (ଲେଖି) ଲେକର ଆଖି ପଡ଼୍‌ଦେ (ପଡ଼ିବ) ।''

ପ୍ରାଚୀନ ଡମ୍ବ-ଭାଷାରେ ସେମାନେ କଥାଭାଷା ହେଉଥିଲେ । କାନ୍‌କଟା ବୁଝେଇଲା, ''ପରର ସ୍ତ୍ରୀକୁ ଅନେଇଁବା କିନ୍ତୁ ଘୋର ପାପ ବୋଲି ମନେକରେ, ସେ ନିଜ ଜାତ ଗ୍ରୁଡ଼ି ଭିନେ ଜାତର ଝିଅକୁ ଲେଭେଇବା ମୁଁ ଶୁଣିନାହିଁ । କିନ୍ତୁ ମଦ-ନିଶାରେ ବୁଦ୍ଧି ରହେ ନାହିଁ, ଏକା କହିର ବୋଲି ନୁହେଁ, ମଣିଷ ମାତ୍ରେ । ସେଥିପାଇଁ ଆମେ ନିଜେ ହୁସିଆର ହେବା, ମାଇପେ ହୁସିଆର ହେବେ, ନିଜ ଇଜ୍ଜତ୍ ନିଜେ ରଖିବେ । ପୁରୁଷକୁ ମୁହଁ ଦିଏ କିଏ ? ଆଗ ମାଇକିନିଆଁ ମୁହଁ ଦଅନ୍ତି ।''

ମାଇପେ ଆପତ୍ତି କଲେ, ମିଛ କଥା, ଯେତେ ଦୁଷ୍ଟାଗୁଣ୍ଡା ସବୁ ଏ ପୁରୁଷମାନେ । ପୁରୁଣା ଲେକ ପୁନଆଁ ଡମ୍ କହିଲ ''ଏଇଟା ମନେରଖିବା କଥା, ଆମ ଭିତରେ ଆମ ପୁରୁଷ ଲେକ ହେଉ କି ସ୍ତ୍ରୀଲୋକ ହେଉ, ନିଜ ଚରିତ୍ରକୁ ନିଜେ ଠିକଣା ରଖିଥିବ, ନହେଲେ ସବୁ ବିପଦ । ଆମେ ଯେତେ ସମସ୍ତେ ବଣ ପାହାଡ଼କୁ ଯାଉଛୁଁ ଲଭ ପାଇଁ, ବେପାର୍ ପାଇଁ, ଖାଇ ବଞ୍ଚିବୁଁ ବୋଲି, ଦୁଷ୍ଟାମି କରିବା ମହା ଅନ୍ୟାୟ ।''

ସମସ୍ତେ ଏକମତ ହେଲେ ।

ପୁଣି ପୁନଆଁ କହିଲା "କିନ୍ତୁ ଗୋଟିଏ କଥା । ମଣିଷ ଆମେ ସମସ୍ତେ, କାହାର ଯଦି କିଛି ଭୁଲ୍ ହୋଇଗଲା, ତେବେ ସମସ୍ତେ ମିଶି ତାକୁ ଚଳେଇନେବା ।"

କାନ୍‌କଟା କହିଲା, "ସତ, କିନ୍ତୁ କାଲି ଝିଅବୋହୂଙ୍କ ସାଙ୍ଗେ କେହି ଲାଗିଲେ ମୁଣ୍ଡକାଟ, ଆମେ କେହି ବଞ୍ଚେଇ ପାରିବୁ ନାହିଁ ।"

ପୁନଆଁ କହିଲା, "କିଏ ଲାଗିବ ? କାହାର ଜୀବନକୁ ଭୟ ନାହିଁ ? କିନ୍ତୁ ଯଦି ଆମର କେଉଁ ଝିଅ କାହାଘରେ ରହିଗଲା, କି ତା ଘରରେ କେଉଁ କାହା ଆସି ତା ସାଙ୍ଗରେ ଦୋସ୍ତି କଲା, ଆମେ ତାକୁ କି ତା ପିଲାକୁ ଅଜାତ କରିବୁଁ ନାହିଁ । ତାଙ୍କୁ କୁଳରେ ଚଳେଇ ନେବୁଁ । ମନକଲେ ଆଉ କେହି ତାକୁ ବଗ ହେଉ ।"

କାନ୍‌କଟା କହିଲା, "ମୋର ଆପତ୍ତି ନାହିଁ ।"

ଉଜାଡ଼ୁ କହିଲା, "ସେଇଟା କିବା ବଡ଼ କଥା ? ନୂଆ ଅବସ୍ଥାକୁ ଗୃହିଁ ନୂଆ ସମାଜ ଆପେ ହୋଇଯିବ ।"

କାନ୍‌କଟା କହିଲା, "ଅସଲ କଥା ପଡ଼ୁ । ଆମେ ଯାଉଚୁ, ସମସ୍ତେ ଏକାଠି ରହିପାରିବେ ନାହିଁ, ସମସ୍ତେ ଏକା କାମ କରିବେ ନାହିଁ, କିଏ ହେବ କେଉଁ ଗାଁର ବାରିକ୍, କିଏ କରିବ କେଉଁ ବୃତ୍ତି, କି ବେପାର, କି ଚାଷ । ତୁମେ ଲାଭ ଖୋଜି ଯାଉଛ, ନିଜ ନିଜ ଲାଭର ବାଟ ଧରିବ । କିନ୍ତୁ ମନେରଖିଥାଅ, ବାଘ ବାଘର ମାଉଁସ ଖାଏ ନାହିଁ, କୋଲିଆ (ବିଲୁଆ) କୋଲିଆର ମାଉଁସ ଖାଏ ନାହିଁ । ତୁମେ ଯେମିତି ଚଳିବ, ତୁମେ ନିଜେ ଦାୟୀ; କିନ୍ତୁ ମାନିଥିବ ପଦେ କଥା, ତମ୍ବି ହୋଇ ଅନ୍ୟ ତମ୍ବିକୁ ତମେ ଠକିବ ନାହିଁ, ଧରି ପକେଇବ ନାହିଁ, ତା ବିରୁଦ୍ଧରେ କାହା ଆଗରେ କିଛି କହିବ ନାହିଁ । ଆମେ ଯେ ଯେଉଁଠି ଥାଉଁ ଆମର କୁଳସମାଜ ରଖିବା, ନିଜ ଭିତରେ କଳି ଲାଗିଲେ ଆମ ସମାଜରେ ପକାଇ ପଞ୍ଚାୟତ ବସାଇ କଳି ତୁଟାଇବା, ଆମେ କାହାକୁ ଭେଦ ବତାଇବା ନାହିଁ, ତା ସାହାଯ୍ୟ ନେଇ ଜଣେ ଆଉ ଜଣକର ତଣ୍ଟି କାଟିବା ନାହିଁ ।"

"ସେ ନିଶ୍ଚୟ କଥା, ସାର କଥା, ଧରମ୍ କଥା"—ସମସ୍ତେ କହିଲେ ।

କାନ୍‌କଟା କହିଲା, "ଆମ ଭିତରେ ବଡ଼ ସାନ ରହିବେ, କିଏ ବେଶି ଧନୀ ହେବ, କିଏ ଊଣା, ସବୁ ଲୋକର ଭାଗ୍ୟର ଫଳ ଆଉ ଉଦ୍ୟମର । ଯେ ଆଜି ଗରିବ ଅଛି, କପାଳ ଥିଲେ କାଲି ବଡ଼ଲୋକ ହେବ, କେହି କାହାରିକି ଈର୍ଷା କରିବ ନାହିଁ ।"

ସମସ୍ତେ ରାଜି ।

କାନ୍‌କଟା କହିଲା, "ନିଜର ଧନ ଦେଖେଇ ହେବ ନାହିଁ, ଲୁଚେଇବ । ଦେଖେଇ ହେବ ତମେ କିନ୍ତ-ଋଇତର ସେବକ, ଦେଶର ସେବକ, କନ୍ଧର କୁକୁର । ମୁଁ କହେଁ ମୁଁ କନ୍ଧର କୁକୁର । ମତେ ଦେଖିବ, ମୁଁ କ'ଣ କହେଁ ଶିଖିବ । ତାକୁ ଖୁସି କରିବ, ନଚେଇବ, ଖେଳେଇବ । ନିଜକୁ ସେବକ ନକହିଲେ ତେମେ କିଛୁ ପାଇ-ପାରିବ ନାହିଁ ।"

"କହିବୁଁ କହିବୁଁ," ଅନେକେ ହସି ହସି କହିଲେ, "ଆମେ ଦେଶର ସେବକ, କନ୍ଧର ସେବକ, କନ୍ଧର କୁକୁର ।"

ହିକାଡ଼ୁ କହିଲା, "ସେବକ ହେଲେ ହେବ କନ୍ଧର ମନ୍ତ୍ରୀ, ତାକୁ ନାଟ କରେଇବ । ମୁଁ ଗୋଟିଏ କଥା କହୁଚି, ଆମ ସମସ୍ତିଙ୍କୁ ଡାକନେଉଚ୍ଛ କାନ୍‌କଟା, ଆମେ ସମସ୍ତେ ତାକୁ ସବୁବେଳେ ବଡ଼ବୋଲି ମାନିଥିବା, ଆମର ବି ମଣ୍ଡଳ ଗଢ଼ିବା, ସବୁ କଥା ଭାବି ବିଚ୍ଛି କରିବା, ବାହାର ଲୋକ କେହି ଜାଣିବେ ନାହିଁ ।"

"ଋଜ—ଋଜ—ଋଜ" ସମସ୍ତେ ପାଟିକଲେ. ପୁନିଆଁ ଡମ୍ କାନ୍‌କଟାକୁ କହିଲା, "ଆମେ ସବୁ ନଥିବା ହତଭାଗା ଲୋକ, ତୁ ଆମୁକୁ ଲକ୍ଷ୍ମୀ ଠାକୁରାଣୀଙ୍କ ପାଖକୁ ନେଉଚୁ, ତତେ ବଡ଼ ବୋଲି ମାନିବୁଁ ନାହିଁ ତ ଆଉ କାହାକୁ ?"

ଡମ୍‌ଦଳ ସେହି ପ୍ରଥମ ଥରକ କନ୍ଧ ଋଜ୍ୟର ପ୍ରଥମ ଗାଁ ଡେଙ୍ଗାଗୁଡ଼ା ପାଖେ ପହଞ୍ଚିଗଲେ, ଗାଁ ଦିଶିଲା । ବେଳ ଅଳ୍ପ ଥାଏ । କୁଆଡ଼ୁ ଶୁଭିଲା ହଳଦୀବସନ୍ତ ଚଢ଼େଇର ବୋବାଳି ।

ପୁନିଆଁ କହିଲା, "ଆଏନ୍ (ଆଜି) ପିଓ-ଚଢ଼େଇ ( ହଳଦୀବସନ୍ତ ଚଢ଼େଇ ) ପିଆଇଡାଇ" ( ବୋବୋଉଛି ), ଶୁଭ ଲକ୍ଷଣ । "କାଏ ( କ ) ଉଥି ହୋ ?"

ଲେଟା କହିଲା, "ଜନ୍ (ଜହ୍ନ) ଭାଙ୍ଗାଗଲି (ଲୋପ ହେଲା) ଉଆଁସ୍ (ଅମାବସ୍ୟା) ହେଲି (ହେଲା) ।"

କାନ୍‌କଟା କହିଲା, "ବାଇଦ୍ ବଜା ହୋ ।"

ଡମ୍ ବାଇଦ ବାଜିଉଠିଲା, ମହୁରି ଫୁଙ୍କାହେଲା, ଆଗେ ଆଗେ ଗାଁ ଭିତରକୁ ଦୌଡ଼ିଯାଇ କାନ୍‌କଟା ପାଟିକଲା—

"ହେ କଡ଼ଞ୍ଜି ମାଝି ! ହେ ଗଗ୍‌ଡ଼ା ମାଝି !"

ଏତେ ଲୋକ ରହିବାକୁ ଗାଁରେ ଘର ନାହିଁ । କନ୍ଧମାନେ ସାହାଯ୍ୟ କଲେ, ତାଙ୍କ ସଙ୍ଗେ ମିଶି ଡମ୍ବମାନେ ଗାଁ ବସ୍ତିପାଖେ ଡାଳପତ୍ରର କୁଡ଼ିଆ ତିଆରି କରି-ପକାଇଲେ; ଉପରେ ତଳେ ଶୁଖିଲା ପିରି ଘାସ ବିଛାହେଲା, ଆଗରେ ଶୁଖିଲା କାଠ ରଖାଗଲା, ନିଆଁ ଜଳିବ । କେତେ ଲୋକ କନ୍ଧମାନଙ୍କ ପିଣ୍ଡାରେ ରହିଗଲେ, ଆଉ କେତେ ରହିଲେ ପତ୍ର କୁଡ଼ିଆରେ । କାନ୍‌କଣ୍ଟା ତା'ର ଜିନିଷପତ୍ର ଧରି କଉ୍‌ଞ୍ଜି ଘର ପିଣ୍ଡାରେ ରହିଲା ।

କଉ୍‌ଞ୍ଜି ପାଇଁ, ଗରଡ଼ି ପାଇଁ, ଚ୍ରେପାର ଭଜା ସ୍ତ୍ରୀ ପାଇଁ ସେ ଫର୍ଣ୍ଣେ ଫର୍ଣ୍ଣେ ରଙ୍ଗ ରଙ୍ଗ ଓଢ଼ଣି ଆଣିଥିଲା, ଦେଇଦେଲା, ଭାରି ଖୁସିହେଲେ, ସାମ୍ରା ପାଇଁ ମାଳି ଆଣିଛି, କାନଫୁଲ ଆଣିଛି, ଚ୍ରେପାକୁ ଦେବ, ସେ ଖୁସି ହେବ ।

ଖୁସି ହୋଇ କନ୍ଧ କଉ୍‌ଞ୍ଜି ମାଝି ଆୟୋଜନ କଲା ମଦ, ମାଂସ । କାନ୍‌କଣ୍ଟା ଚହ୍ନେଇଦେଲା, ଏମାନେ ତା ଲୋକ, କେତେଥର ଆସିବେ ବେପାର କରି ଯିବା ବାଟରେ, ତା ପାଇଁ ବଦଳ କାରବାର କରିଲ ବି ତା'ର ଓ ତା ଗାଁ ଲୋକଙ୍କର ଉପକାର କରିବେ ।

"ସମସ୍ତେ ତୋର ସେବକ, ତୋ କୁକୁର୍" କାନ୍‌କଣ୍ଟା ବୁଝେଇଦେଲା । ଜୁଆଁସ ସଞ୍ଜରେ କନ୍ଧରାଜ୍ୟରେ ପ୍ରଥମଥରକ ଡମ୍ବ ବାଇଦ ବାଜିଲା । ନିଆଁପାଖେ କନ୍ଧ ନାଚିଲେ । ଆରମ୍ଭ ହେଲା କନ୍ଧ ଦେଶରେ ନୂଆଯୁଗ ।

ରାତିରେ ଖାଇ ବସିଲା ପରେ ଗବ୍‌ଡ଼ା ଡମ୍ କାନ୍‌କଣ୍ଟାକୁ ଡାକି କହିଲା—

"ଶୁଣ୍, ପଦେ କଥା ଅଛି । ଆମେ କେତେଜଣ ଭାବୁଛୁ ଏ ଡେଙ୍ଗାଗୁଡ଼ାରେ ଆମେ ରହିଯିବୁଁ । କନ୍ଧଙ୍କ ଲୋଡ଼ାରେ ବି ଆସିବୁଁ, ବେଶି ଦୂର ବି ହେବ ନାହିଁ ।"

"କିଏ କିଏ ରହିବ ?"

"ଅନ୍ତତଃ ମୁଁ, ଡଲିଆ, ସୋନାଖାଉ, ଚିନ ଘର ତ କଥା ହୋଇଛୁଁ, ଆଉ ଯଦି କିଏ ବାହାରିବେ ।"

"କଜ୍‌ଞ୍ଜି ମାଝି ସାଙ୍ଗରେ କଥା ହେଇଚ ?"

"ଆମେ କ'ଣ ତା ଭାଷା ଜାଣିବୁଁ ? ତୁ କହିଦେବୁ ନା ।"

"ହଁ, ଏଠି କ'ଣ ଖାଇବ ? କିଏ ଦେବ ?"

"ଏମାନେ ଫସଲ ବେପାର କରିବେ ନାହିଁ ? ଏତେ ଫଳ ତୋଟା ଅଛୁ, ଫଳ ନେଇ ବିକିଲେ ତ—"

"ଦେଇଦେବେ ମନେକରିଛ, ନା ? ଜାଗା ବି ଦେବେ ଘର କରିବାକୁ, ଭୂଇଁ ଚଷିବାକୁ ? ପାଖ ବି ହେବ, ଏଠି ରହିବ, ଘରକୁ ଯାଉଥିବ, ଏଠୁ ସବୁ ଲୁଟିକରି ଖାଇବ, ନୁହେଁ ?"

"ତୁ ସେମିତି କହୁଚେ—"

"ମୁଁ କହୁନାହିଁ କହୁ, କହିବ । ତୁମେ ଚାହେଁ କାଲି ସକାଳୁ ଉଠିକରି ପଳାଅ, ଏଠି ତୁମର ସ୍ଥାନ ନାହିଁ । ତୁମେ ଆପୁ ଆପୁ ନିଜ ବାଟରେ ଚାଲିବ ଭାବିଲଣି, ନୁହେଁ ? ଜାଣିଚ, ମୁଁ ଚେଷ୍ଟା ନଦେଲେ ଏ କିନ୍ତୁ ତମକୁ ମାରପିଟି ଫେଡଦେବେ । ଆଉ ମୁଁ ତ ଜାଣି ବନ୍ଧାପଡ଼ିଚୁ । ମୁ ଗ୍ରାମାଧିମାନଙ୍କ କଥା ନମାନିଲେ, ତାଙ୍କର ଦୟା ନହେଲେ, ମୋର ବି ଏଠି ସ୍ଥାନ ହେବ ନାହିଁ । କିଏ କୋଉଠି ରହିବ ସେକଥା ତାଙ୍କୁ ପଚାରି ମୁଁ ଠିକଣା କରିବି । ତୁମର ରାଜ ନାହିଁ, ତୁମେ କାଲି ଯାଅ ।"

"ନାହିଁ ନାହିଁ ନାହିଁ—"

"ଆଉ ବଳା ନାହିଁ ମତେ । ସମସ୍ତେ ମୋ କଥା ମାନି ଚାଲିଲେ ଭଲ, ନିଜବାଟ ଧରିବ, ଏବେ ଧର, ଆଉ ଦଣ୍ଡେ ନାହିଁ ।"

"ଦୋଷ୍ ହେଲି ପାଟ୍-ବାରକ, ତୁ କ୍ଷମା ଦେ । ଆଉ କହିବୁଁ ନାହିଁ । ଏଠି ତ ଏଡ଼େ ଶୀତ, ଆଉ ଉପରକୁ ବେଶି ଥିବ । ମାଇକିନା ପିଲିମାନେ—"

"ବହୁତ ଶୀତ, ଘୋର ବଣ, ବଣରେ ବାଘ, ଭାଲୁ । ବହୁତ ଦୂର ବି ଏଠୁ । ପର୍ବତ ଚଢ଼ି ଓହ୍ଲେଇ ଗୋଡ଼ ବଥା ହେବ, ପାଦରୁ ଛାଲ ଛାଡ଼ିବ, କଷ୍ଟ ଢାମ । ମୋ କଥା ମାନ, ପଳାଅ ।"

"ନାହିଁ ନାହିଁ ନାହିଁ—"

"ତାହେଲେ ଆଉ ଦନେ ତୁମ ତୁଣ୍ଡରୁ ଓଜର ଆପତ୍ତି ଶୁଣିବି ନାହିଁ । ପରରାଜ୍ୟରେ ନିଜ ଇଛାରେ ଯୋଉଠି ସେଇଠି ବସିପଡ଼ିବ ଭାବିଚ ? ତାଙ୍କର ମଞ୍ଜୁର ନହେଲେ ହେବ ନାହିଁ । କିନ୍ତୁର ଧନୁଶର ଲକ୍ଷ ଫଟେ ନାହିଁ । ରାଜ୍ୟର ଲଢୁଆ ଥାଟ ଦେଖିଲେ

ତୁମ ପିଲେଇ ପାଣି ହୋଇଯିବ । ସିଧାସିଧା କାରବାର କର, ମୋ କଥାରେ ଚଳ, ବିପଦ ନାହିଁ ।"

"ସମସ୍ତେ ତୋ'ର ହେକରେ ବନ୍ଧା ହେଉଛନ୍ତି ପାଟ-ବାଗକ, ଭୁ ବୁଝିବୁ ।"

"ଯାଅ ଶୁଅ ।"

ଘରରେ କଉ୍ଡ଼ୁ ଘର ପିଣ୍ଡାରେ କାନ୍‌କଟା ଓ ତା' ସ୍ତ୍ରୀ ବସିଥିଲେ । କଉ୍ଡ଼ୁ, ତା' ସ୍ତ୍ରୀ, ତା' ଝିଅ ସାନ୍ନା ଘର ଭିତରେ ଶୋଇଥିଲେ, କବାଟ ମେଲା ଥିଲା, ଗଡ଼ ଜଆଁ ଧାସରେ ନାଲି ଚହଟିଥିଲା ।

କାନ୍‌କଟା କହିଲା, "ଶୋଇବା ।"

କାମ୍‌ସଣ୍ଡ ଘର ଭିତରକୁ ଆଙ୍ଗୁଠି ଦେଖାଇଲା, କହିଲା, "ଛି ! ଲାଜ ।" କାନ୍‌କଟା କହିଲା, "ଏଠି କଛି ଲାଜ ନାହିଁ ।"

"ଲାଜ ।"

"କଛି ଲାଜ ନାହିଁ, ଏ ଦେଶରେ ଲାଜ ଖାଲି ମିଛକୁ , ଅଜାଡକୁ ।"

"ଉଠିପଡ଼ିବେ ନାହିଁ ?"

"ଲୋଡ଼ା ଥିଲେ ଉଠିବେ, ବାଟେ ବାଟେ ଯିବେ, ଅନେଇଁବେ ନାହିଁ କେହି-ହେଲେ । ସେମାନେ ଜାଣନ୍ତି, ବୁଝନ୍ତି, ତାଙ୍କର ବିକାର ନାହିଁ ।"

ଶୋଇପଡ଼ି କାମ୍‌ସଣ୍ଡ କହିଲା, "ଖୁବ ଶୀତ ।"

"କମ୍ବଳ ଯୋଡ଼ି ହୋଇପଡ଼ିବା ।"

ନିଶା ଘୋରରେ କାମ୍‌ସଣ୍ଡର ନିଦ ଭାଙ୍ଗିଗଲା । ଅନ୍ଧାର । କ'ଣଟାଏ ବୋବାଉଛି, ନୂଆ ଶବ୍ଦ । ଦୀର୍ଘଶ୍ୱାସ ପକାଇଲା । ଭାବିଲା, କୁଆଡ଼େ ସେ ବୁଲୁଛି ! ବଣ ପର୍ବତ, ଅଚିହ୍ନା ମଣିଷ, ଅଚିହ୍ନା ରାଜ୍ୟ । କ'ଣ ହେବ ତା'ର ? ଅଣ୍ଡାଳିଲା କାନ୍‌କଟା ଶୋଇଛି । ନିଦ ବାଉଳାରେ ତା'ର ଗୋଟାଏ ହାତ ସ୍ତ୍ରୀ ଉପରେ ପଡ଼ିଗଲା । କାମ୍‌ସଣ୍ଡ ଆଖି ବୁଜିଦେଲା । ପୁଣି ସେହି ଅନ୍ଧାର ଭିତରେ ଧୀରେ ଧୀରେ ବୁଡ଼ି ବୁଡ଼ି ଗଲା ।

ଆରଦିନ ସକାଳୁ ଉଠି ଚାଲିଲେ ଗନ୍ଧମାର୍ଦ୍ଦନ । ପର୍ବତ ଚଢ଼ିବା ଅଭ୍ୟାସ ନଥିଲା; କିନ୍ତୁ ଦେହକଷ୍ଟ ସହିବା ବହୁତ ଅଭ୍ୟାସ । ଗୋଡ଼ ପେଣ୍ଡା ଆଉ ଜଙ୍ଘ ଫାଟିପଡ଼ୁଥାଏ, ଶୀତଦିନ ସକାଳ, ତଥାପି ଦେହରୁ ଝାଳ ବୋହୁଥାଏ, ଧୀରେ ଧୀରେ ସେମାନେ ଚଢ଼ିଯାଉଥାନ୍ତି । ଗବ୍‌ଡ଼ା ଭାରି ଫୁର୍ତ୍ତିରେ ଚାଲୁଥାଏ । କହିଲା, "ଚାଲ ଚାଲ, ଆଜି ଚାଲୁଥାଉଁ ପୋଢ଼ ଚାଲିଲା ପରି, ଅଭ୍ୟାସ ପଡ଼ିଲେ କାଲି ଧାଇଁ ଧାଇଁ ଯିବା ହରିଣ ପରି ।"

ହସଖୁସିରେ ବାଟ କଟୁଥାଏ । ତମ୍ବୁମାନେ ଦେଖି ଦେଖି ଯାଉଥାନ୍ତି, ଯାହା ଦେଖୁଥାନ୍ତି ସଙ୍ଗେ ସଙ୍ଗେ କହୁଥାନ୍ତି ସେ ପଦାର୍ଥକୁ ନେଇ କେମିତି ପଇସା କମେଇ-ହେବ ସେହି କଥା ।

"ଆଉ ପର୍ବତ, ଆଉ ବଣ, ବଣରେ ବାଘ ଥାଉ, କପାଳରେ ନଥିଲେ କାହାକୁ ବାଘ ଖାଏ ? କପାଳରେ ଥିଲେ ଫିଟିଯିବ କିଛି ? ଘରେ ଶୋଇଥିଲେ ବି ଯମ ଛାଡ଼ିବ ?"

କନିଷ୍ଠ ପଚାରିଲା, "ବାଘ ବାହାରିଲେ କ'ଣ କରିବା ?"

ଚବ୍‌ଡ଼ା କହିଲା, "ପାଟ ବାରିକ ତା ସଙ୍ଗରେ କନ୍ଧ ଭାଷାରେ କଥା ହେବ ।" ହସ ଲାଗିଲା । ଚମ୍ପୁ ତମ୍ କହିଲା, "ସେମିତି ନୁହେଁ । ସମସ୍ତେ ଏକାଠି ହେବା, ବାଇଦ ବଜେଇବା, ମହୁରି ଫୁଙ୍କିବା, ମାଇକିନା ପିଲାଏ ଗୀତ ଗାଇବେ, ବାଘ ଗୀତ ଶୁଣି, ବାଇଦ ଶୁଣି ଶରଧାରେ ଚାଲିଯିବ, ଶିକାର ଆମକୁ ଦେବ ଆଣି ଗୋଟାଏ ବଡ଼ ସମ୍ବର, କହିବ ଖାଅ ।"

ଲେଟା କହିଲା, "ଦେଖ ଏ ଦେଶକୁ । ଲକ୍ଷ୍ମୀ ଭଣ୍ଡାର ପୂରିଛି । ବେତ ଭର୍ତ୍ତି, ବାଉଁଶ ଭର୍ତ୍ତି, କେତେ ବୁଣିବ ବୁଣ, କେତେ ବିକିବ ବିକ । ଏ ଶିଆଳୀ ପତରେ ଖଲି ବୁଣି ବିକିଲେ କେତେ ଲାଭ । ପଟି ମସିଣା ବୁଣିବକୁ ଜାତି ଜାତି ପଦାର୍ଥ ଅଛି, କେତେ ଜାତିର ଘାସ, କେତେ ପତ୍ର । ବଣରୁ ମହୁଲ, ତେନ୍ତୁଳି, ଟୋଲ, କରଞ୍ଜ, ହରଡ଼ା, ଏଇଟା ସେଇଟା ଗୋଟେଇ ଗୋଟେଇ ବିକିଦେଲେ ତ ସୁନାଗଦା କରିବ ହୋ, ପୁଣି ମହୁ, ଝୁଣା, କାଠ, ବାଉଁଶ, କେତେ କେତେ, କ'ଣ ନାହିଁ ?"

କାନ୍‌କଟା କହିଲା, "ଆଉ ଫସଲ, ଗଦା ଗଦା ଫସଲ, ପାହାଡ଼ ଛାଲୁସାକ, ପୁଣି ଡିପରେ, ବେଢ଼ାରେ । ଫଲ ତୋଟା ତ ଦେଖିଲ, ଆହୁରି, ଦେଖୁଥିବ, ପଣସର ଜଙ୍ଗଲ, ଆମ୍ବର ଜଙ୍ଗଲ, ବଡ଼ ବଡ଼ କଦଳୀ ବାଡ଼୍, ସାନ ସାନ କଦଳୀ, ଚମ୍ପାକଦଳୀ,

ଭଙ୍ଗ କଦଳୀ, ହାତେ ହାତେ ଲମ୍ବ ପୋଡ଼ଶିଙ୍ଘା କଦଳୀ, କେତେ ଜାତ । ସପୁରି ଅଛୁ, କମଳା ଅଛୁ । ଆଉ ହଳଦୀ, ଅଦା, ଜଡ଼ା, କାନ୍ଦୁଲ, କାଟିଂ, ଅଳସି, ପୋଶପ, ରାଶି, ମୁଗ, ବର୍‌ଗୁଡ଼, ମକା, ଜୋଣା, ଲଙ୍କା, ଧାନ, ମାଣ୍ଡିଆ, ସୁଆଁ, କୋଶଲ, ଡାଙ୍କୁ, ଓଃ କେତେ କେତେ ! ପାଞ୍ଚଶହ ଲଦା ବଳଦ ଲଗିଲେ ବି ବୋହିପାରିବେ ନାହିଁ, ଏତେ ଫସଲ ।''

ମହିଂର ମହିରେ ଯେ କହେ, ତା' ବର୍ଣ୍ଣନା ଶୁଣୁ ଶୁଣୁ ବାଟ ହାଲୁକା ହୋଇ-ଯାଏ, ସେମାନେ ଝେପା ମାର ମାର ଚଢ଼ନ୍ତି ।

ହଜାଡ଼ୁ କହିଲା, "ସବୁ ଅଛୁ, ଆମୁକୁ ଦେଲେ ହେଲା । ବେଇଦଉଥିଲେ କେତେ ଲୋକ ଆଗରୁ ଆସିଥାନ୍ତେ, ନଉଥାନ୍ତେ, ବେପାର କରୁଥାନ୍ତେ, ନଆସିଲେ କେମିତ ? ଭେକ ବାଧା ହେଲେ ତ ଲୋକ ବଣ ଜଙ୍ଗଲରେ ପଶନ୍ତି ! ଆମେ ଏକା-ଭୁକା ଲୋକ ।''

କାନ୍‌କଟା କହିଲା, "ସେଇଟା ଭାବ । ଆମେ ସବୁରୁ ଆମେ ହିଁ ନୂଆହୋଇ ପଦାରୁ ଆସିଲୁ । ଆଗରୁ କେତେ ଆସିଥିବେ, କ ନ ଆସିଥିବେ, କଏ ଜାଣିଛୁ ? ଯଦ ଆସିଥିବେ କନ୍ଧ ଯାଙ୍କରେ କନ୍ଧ ହୋଇ ମିଶିଯାଇଥିବେ, ନହେଲେ ଗୁଲିଯାଇ-ଥିବେ । ବୁଦ୍ଧିରେ ହାରିଗଲେ ଗୁଲିଯିବାକୁ ପଡ଼ିବ ତ ? ଏଇଟା ସାମାନ୍ୟ ଖେଳ ନୁହେଁ । କନ୍ଧର ବିଶ୍ୱାସ ହେବ, ସେ ଆମୁକୁ ପୋଷିବ, ପାଳିବ, ଆମୁକୁ ବେପାର ଦେବ, ଜିନଷ ପଦାକୁ ନେବାକୁ ଛାଡ଼ିବ, ଆମ କଥା ମାନିବ, ତେବେ ଆମେ ସାହାସ୍ର (ଧନୀ) ହେବା । ପୋଷା ମନେଇବାକୁ ପଡ଼ିବ କଲେ କଲେ (ଆସ୍ତେ ଆସ୍ତେ) ତେବେ ସେ ଆସିବ କଥା ଶୁଣିବ । ତୁମେ ତରତର ହେଲେ ହେବ ? ଦେଖ, କେହି ଦେଖା-ନଥିଲେ, ଆମେ ଷୋଳ ଘର ଆସିଲୁଁ । ସେ ଆମ କାମ ଦେଖିବ, ଦେଖିବ ତା' ମନ ମାନୁଛି, ତା'ର କଛି ସୁବିଧା ହେଉଛି, କହିବ ଆଉ ଲୋକ ଆଣ । ଆସ୍ତୁର ଆଣିବୁ, ଗାଏଁ ଗାଏଁ ଆମ ଲୋକ ରହିବେ, ଷୋଳରୁ ହେବେ ଷୋଳଶହ ।''

ଗୁଡେଇ କହିଲା, "ହେ ବାପା, ଏତେ ଲୋକ ଆଇଲେ କଏ କ'ଣ ପାଇବ ?''

କାନ୍‌କଟା କହିଲା, "ସମସ୍ତେ ଖାଇବେ, ଚଳିବେ, ନାନା ଧନ୍ଦାରେ ଲଗିବେ, ଧନ ଅର୍ଜିବେ । ସମସ୍ତେ ପାଇବେ ବଳ, ସାହସ । ଊଣା ଲୋକ ଥିବେ ସିନା ଭୟ ଥାଏ, ବେଶି ଲୋକ ଥିଲେ କ ଭୟ ? କନ୍ଧ ବି ଜଉ, ଆମେ ବି ଜଇବା ।''

ପାଇଳୁ କହିଲା, "ସେ ଫସଲ ପକ୍ଷେଉ, ଫଳ ଲଗାଉ, ଆମେ ତାକୁ ନେଇ ବେପାର କରିବା ।''

ନୂଆ ଜନ୍ଧା କହିଲା, "ଆମୁକୁ ଜମି ଦେଉ, ସେ ତାକୁ ଡାଡ଼ୁ, ଖୋଳୁ, ଆମେ ମୂଲ ଦେବା ।''

ଲେଟା କହିଲା, "ଏତେ କଥା କାହିଁକି ? ସେ ଝଗା ପିନ୍ଧି ଶିଖୁ, ଆମେ ଝଗା ବୁଣୁଥିବା, ସେ କିଣୁଥିବ ।"

କାନ୍‌କଟା କହିଲା, " ତା'ର ଭେଦ ଅଛି । ତା'ର ମଦ ଦରକାର, ମାଉଁସ ଦରକାର । ମହୁଲ ମଦ ତାକୁ ଭଲକରି କରିଆସେ ନାହିଁ, 'ବଡ଼ି' କି 'ଧରଣି ହାଣ୍ଡି', ଚାପ୍‌ନି କି ନଳା ଗଢ଼ିଆସେ ନାହିଁ, ଆମେ ଅଳ୍ପକେ ମାଠିଆଏ ମଦକଲେ ସେତିକି ମହୁଲରୁ ସେ ଦଳ ଦଳ ଲଗି କାଢ଼ିବ ପୋଷେ । ଗୋରୁ ମଇଁଷି ତ ସରିଆସୁଛି । ଆମେ ପଦାକୁ ଗଲେ ଯେତେ ବୁଢ଼ା ହଡ଼ା କିଣି ଆଣିପାରିବା । ସେ ରାଜାହେଲେ ହେଲା । ଏ ଗୋଟାଏ ଭେଦ ଧରି ପଶିପାରିଲେ—ମୁଁ ତ ଭାବୁଛି ସେ ସବୁ ଦେଇ ଦେଇ କନା ଖୋଲି ଖାଇବାକୁ ଧାଇଁ ପଳାନ୍ତା । ଯେ ଏତେ ଅଧର୍ମ ପାଞ୍ଚ ନାହିଁ, ସେ ଜିଉ, ଆମେ ଜିଇବା, ଦୁହାଁଳ ଗାଈକୁ ହାଣି ଖାଇଲେ ଦୁଧ ଆଉ ମିଳିବ ?"

ପାଇକୁ କହିଲା, "କିଏ ତୋ ଦୁହାଁଳ ଗାଈକୁ ହାଣି ପକାଉଛି ଯେ ସେମିତି କହୁଛୁ ? କିଏ ଆମକୁ କ'ଣ ଦେଲାଣି ? ଆଗରେ ଯାଉଛୁଁ, ଦେଖିବା ।"

କାନ୍‌କଟା କହିଲା, "ତୁମେ ଅସ୍ଥିର ହୁଅନାହିଁ, ଏକାଥରେ ହାତର ଆଙ୍ଗୁଠି ଗୋଡ଼ର ଆଙ୍ଗୁଠି ପାଟିରେ ପୂରାଅ ନାହିଁ, ଦେଖ, ଶିଖ, ଭାବ, ଅପେକ୍ଷା କର । କନ୍ଧକୁ ଦେଖିବ, ରଜାକୁ ଦେଖିଲା ପରି ସେବା କର, ମାନ୍ୟ କର । ସବୁବେଳେ କହ, ତୁ ଭଲ, ତୁ ବଡ଼, ତୁ ବୁଦ୍ଧିଆ, ଭେଟି ଦିଅ । ତା'ର ଘରର ଜିନିଷକୁ ଲୋଭ କର ନାହିଁ । ରଖୁ ସେ ତା'ର କୁକୁଡ଼ା, ଘୁଷୁରି, ଛେଳି । ସେ ନଦେଲେ ତା' ଜିନିଷକୁ ଛୁଅଁ ନାହିଁ, ତା' ଜିନିଷ ସେ ଗଛ ଉପରେ ଗଦେଇଥିବ, ପର୍ବତରେ କୁଢ଼ଆ ଭିତରେ ଥୋଇଥିବ, ଜଗୁଆଳି ନଥିବେ । ସେ ତା' ତୁଣ୍ଡରେ କହୁ, ତୁମେ ନେବ । ତା'ର କାଠପଥର ଦେବତାମାନେ, କୋଉଟା ଭୂଇଁରେ ବି ଅଛି, କୋଉଟା ପାଣିରେ ବି ଅଛି । ସେ ପୂଜା କରିବ, ତୁମେ ବି ପୂଜା କର, ମାନ୍ୟକର, ଥଟ୍ଟା କରିବ ନାହିଁ ।"

ସୋନାଖାଉ ପଚାରିଲା, "ଆମେ ଯାଉଛୁ ଯେ, କି କି କାମ କରିବାକୁ ହେବ ?"

କାନ୍‌କଟା କହିଲା, "ଆଗେ ମୁଁ ଯେଉଁ ଗାଁରେ ଅଛି, ସେଠି ଘର ବାନ୍ଧି ରହିଛନ୍ତି, ଭାଷା ଶିଖି, ଗାଁ ଚିହ୍ନି, ମଣିଷ ଚିହ୍ନି ।"

"ଖାଇବୁଁ କ'ଣ ?"

"କାହିଁକି ? କନ୍ଧର କାମ କରିବା, କ୍ଷେତରେ ଫସଲ ଜଗିବା, ତା'ର ଭୂଇଁ ତାଡ଼ିବା, ଲୁଗା ବୁଣିବା, ହାଣ୍ଡି ଗଢ଼ିବା, ସେ ନେବ । ଖାଇବାକୁ ଦେବ ସେ ।"

"ପଛେ ?"

"ପଛେ ବାଣ୍ଟି ହୋଇଯିବା । ମୁଁ ହିନା ପାଟ୍-ବାଗଳ, ଆଠ ମୁଣ୍ଡାମାଝି ପାଖେ ରହିବାକୁ ଆଠ ବାଗଳ ଲୋଡ଼ା, ସେଉଠୁ ବଡ଼ ବଡ଼ ଗାଁରେ ଜଣେ ଜଣେ, ପଛେ ସବୁ ଗାଁରେ ଜଣେ ଜଣେ । ସବୁଠି ଆମ ଲୋକ ରଖିଦେବା, କାମ ତ ଅସୁମାରି, ଗାଁ ସଫା କର, ଗୋରୁ ଜଗ, ଜନ୍ତୁ ଜଗ । ରହିଲେ ଚେର ମଡ଼େଇବା, ସେଉଠୁ ଜମି କଅ, ବେପାର କର, ଦୋକାନ କର, ଯେ ଯାହା ପାରିଲା । ଅଛିଯୁ ସେସବୁ କହୁ ଗୁଣ୍ଡରେ କହ ନାହିଁ । ପଚାରିଲେ କ'ଣ କହିବ ?"

ସୋନାଖାଉ କହିଲା, "ଯାହା ତୁ ଶିଖେଇଚୁ ସେଇଆ । ଆମେ ତୋର ସେବକ ମାହାପ୍ରୁ, କାମ ଜାଣିଚୁ, ଯୋଉଟା କହିବୁ—କାମ ଦେ, ଖାଇବାକୁ ଦେ, ଆମେ ତୋର କୁକୁର, ଗୁ ମୂତ୍ର ଖାଇ ପଡ଼ିଥିବୁଁ ।"

"ଠିକ୍ ଠିକ୍, ସେଇଆ ସେଇଆ । ଆଉ, ଯାହାକୁ ଜିନିଷ ଦେଇ ବେପାର କରିବାକୁ ପଠାହେବ ମୁଁ ତାକୁ କହିଦେବି, ଯିବ, ବଦଳରେ ନୂଆ ଜିନିଷ ଆଣିବ, ଲାଭ ଲୋକସାଣ ତମର, ତେବେ ଗୋଟିଏ କଥା—ଜିନିଷ ଧରି ପଳେଇଗଲେ ତୁମ ପିଲା କୁଟୁମ୍ ରହିଲେ, ଶାସ୍ତି ଭୋଗିବେ ।"

"କିଏ ଏମିତି ପଳେଇବ ପାଟ୍-ବାଗଳ୍ !" ସୋନାଖାଉ କହିଲା ।

"ଆଗରୁ କହିଦେଲି । ଆମ ତମ୍ ଲୋକର କଥା ତ !"

ଗର୍ଗିମାହାଁ ହେଲା । କାନ୍‌କଟା ଆଗରୁ କହିଥିଲା, "କୋଉ ଗାଁକୁ ଗଲେ ସେଠି କୁଣିଆଁ ପରି ବସି ରହିବ ନାହିଁ, ଲୋକଙ୍କର କିଛି ହେଲେ କାମ କର । କିଛି ନପାରିଲେ କାଛ, ପିଣ୍ଡା ହେଲେ ଲିପିଦିଅ, ଗୁହାଳ ସଫାକର, ଦାଣ୍ଡ ସଫାକର । କାଠ ହାଣ । ଲୋକେ ନଭାବନ୍ତୁ ଯେ ତୁମେ ଟାଳ ମାଗି ମାଗି ବସି ବସି ଖାଇବା ପାଇଁ ଆସିଗଲ ।" ହିଚ୍ଚି ମାଝି, ତା' ପୁଅ ଚ୍ରେପା, ଅନ୍ୟାନ୍ୟ ବନ୍ଧମାନେ ଆସିଗଲେ । କାନ୍‌କଟାକୁ ଦେଖି ସେମାନେ ଖୁସି ହେଲେ; କିନ୍ତୁ ସଙ୍ଗରେ ଏତେ ଲୋକଙ୍କୁ ଓ ଶାଢ଼ିପିନ୍ଧା ତମ୍ବୁ ଝିଅପିଲାଙ୍କୁ ଦେଖି ବାବା ହେଲେ ।

ହିଚ୍ଚି ମାଝି କାନ୍‌କଟାକୁ ଅଲଗା ଡାକିନେଇ ପଚାରିଲା, "ଏତେ ଲୋକ କୁଆଡ଼େ ଗୁଲିଲେ ତୋ ସଙ୍ଗରେ ?"

କାନ୍‌କଟା ବୁଝେଇଲା, "କହିଥିଲି ଯେ, ମୁଣ୍ଡାମାଝିମାନେ ବରଗିଥିଲେ, ମୁଁ ତମର ଗୋଟାଏ ଦ୍ବକର ଥିଲି, ଏବେ ଏ ସମସ୍ତେ । ତୁମର କାମ କରିବେ, ନାନା ଧନ୍ଦା କରିବେ, ଖଟିବେ ଖାଇବେ । ଏମାନେ ସମସ୍ତେ ମୋ ଲୋକ ।"

"ଏତେ ଗୃକର ଆମର କ'ଣ ହେବେ ପାନ୍-ବାଉକା ? ଆମେ ତ ନଜେ କାମ କରୁ ।"

"ଦେଖିବୁ ମାଝି, ଲୋକ୍‌ଭା କ ନାହିଁ । ଆଜ ତ ତୋ ଗାଁରେ ରହବେ, ତାଙ୍କ କାମ ଦେଖିବୁ ।"

ସେ ହଡ୍ରିକୁ ଟ୍ରେପାକୁ ରଙ୍ଗ ରଙ୍ଗର କଉଆ ଖଣ୍ଡେ ଖଣ୍ଡେ ଦେଲ, ଟ୍ରେପା ହାତରେ ଦେଲ ସାମ୍ନା ପାଇଁ ଆଣିଥିବା ଜନଷ, ଝିଅମାନଙ୍କୁ ସଉଏ ସଉଏ ମାଳ ଦେଲ । ସମସ୍ତେ ଖୁସି ହୋଇଗଲେ ।

ସମସ୍ତେ ଲଗିଗଲେ, ଗାଁ ସଫା କଲେ । ତମ୍ବୁ ମାଇପେ କନ୍ଧମାନଙ୍କ କାନ୍ଥ ପିଣ୍ଡା ଲେପିବାକୁ ଆରମ୍ଭକଲେ । ଦ'ଜଣ ତନ୍ତ ସଜେଇ ବୁଣିବାକୁ ଆରମ୍ଭକଲେ, କନ୍ଧମାନେ ଆଁ କର ଦେଖୁଥାନ୍ତି । କେତେଜଣ ଲଗିପଡ଼ଲେ, ଏକାଠି ମିଶି ମାଟିହାଣି ଗୋଟାଏ ଘାନ ବାଉ ଚିଆର କରବାକୁ ଲଗିଲେ । କେତେଜଣ ବାଉଁଶ ପାଉଥା କର ବୁଣାବୁଣି ଆରମ୍ଭ କରଦେଲେ ।

କନ୍ଧମାନେ କଛୁ କଛୁ ଖାଦ୍ୟ ଦେଲେ, କେତେଜଣ ମିଶି ସମସ୍ତଙ୍କ ପାଇଁ ରୋଷେଇ କରବାରେ ଲଗିଗଲେ ।

ହଡ୍ରି ମାଝି ବୁଲ ବୁଲ ଦେଖୁଥାଏ ।

କାନ୍‌କଟା ପଗ୍ଭରଲ, "ଏ ଲୋକ କେଉଁଠ ଲୋକ ତୁ ଦେଖୁଚୁ ?"

ହଡ୍ରି କହଲ, "କାମ କରବା ଲୋକ ଏମାନେ, ସୁତୁଘ୍ନ କାମ, ବାଗରେ କାମ କର ଜାଣନ୍ତି । ବସିବା ଲୋକ ନୁହନ୍ତି ।"

କାନ୍‌କଟା ପଚାରଲ, "ମଦ ପାଇଁ ମହୁଲ୍ ଫାସ୍ ପଟେଇଛୁ ? ସଢ଼ିଛି ?"

ହଡ୍ରି କହଲ, "କାହିଁକ ?"

"ଯେତେ ଅଚ୍ଛି କାଢ଼୍, ଏମାନେ ନୂଆ ବାଗରେ ମଦ ରାନ୍ଧିଦେବେ, ତୁମେ ଯେତେ ମଦ କାଢ଼ିଥାନ୍ତ ଏମାନେ ତା'ର ଶହେଗୁଣ କାଢ଼ିଦେବେ, ଦେ କାଢ଼୍ କାଢ଼୍ ।"

ଗ୍ଭରଜଣ ଲୋକ ସଙ୍ଗରେ ଆଣିଥିବା ମଦରନ୍ଧା ହାଣ୍ଡିମାନ ଓ ନଳା ନେଇ ଗଲେ, ପାଣି ବୋହୁଥିବା ଝରଣା ପାଖେ ଚୁଲି ଜାଳ ମଦରନ୍ଧା ଆରମ୍ଭ କଲେ ।

କନ୍ଧମାନେ ବେଢ଼ିଯାଇ ଦେଖୁଥାନ୍ତି ।

ସଙ୍ଗରେ ଡମ୍ବବାଦ୍ୟ ବାଜଲା, କନ୍ଧମାନେ ମଦ ପିଇଲେ, ନାଚଲେ । ଡମ୍ବ-ମାନଙ୍କୁ ଆହୁରି ପ୍ରଶଂସା କଲେ ।

ରାତିକ ରହି ସକାଳକୁ ପୁଣି ବାଟ । କନ୍ଧମାନେ ଅଟକାଉଥିଲେ, କହୁଥିଲେ, "ଦି'ଜଣ ହେଲେ ରହ, ଆହୁରି ମଦ ରାନ୍ଧିବ ।"

ସେମାନେ ଅଟକିଲେ ନାହିଁ ।

ବାଟରେ ଯେଉଁ ଗାଁ ପଡ଼େ ସେଠି କାନ୍‌କଟା ଲୋକଙ୍କୁ ଯେମିତି ମାଗିଯାଏ, କହେ, "ମୁଁ ପାଟ୍-ବାଉକା, ମୁଣ୍ଡାମାଝିମାନେ ଏ ପଦ ଦେଇଛନ୍ତି । ଏମାନେ ମୋ'ର ଲୋକ, ମୁଣ୍ଡାମାଝିମାନେ କହିବାରୁ ମୁଁ ଆଣିଛି, ଏ ଦେଶରେ ନାନା କାମ କରିବେ, ତୁମର ଭଲ ହେବ । ଦିଅ ମାଣେ ପୋଷେ ଯେ ଯାହା ଦେବ, ଏମାନେ ରାନ୍ଧି ଖାଇବେ ।"

ଗର୍ଗିମାହାଁ ଗଲା, ରାତିଏ ବନ୍ଦରରେ, ରାତିଏ ଗୁମ୍ଫାପାଇଲେ, ସେଠି ବି ଗାଁ ଲୋକଙ୍କର କିଛି କିଛି କାମ କରିଦେଲେ, ଲୋକଙ୍କୁ ଭେଳାଇଲେ, ଭୁଲାଇଲେ, ମତାଇଲେ, ନଚାଇଲେ, ବୁଝି ବୁଝି ଗଲେ କନ୍ଧଙ୍କ ଝିଅ ଗୀତ, ଆଗର ବଗର, ଯେତିକ ପାରିଲେ । କେତେଜଣ ଲାଗିପଡ଼ିଥିଲେ କିଛି କିଛି କନ୍ଧଭାଷା ଶିଖିବାକୁ, ପାଞ୍ଚି ଲେଉଟାଉଥିଲେ, ଅଭ୍ୟାସ କରୁଥିଲେ ।

ସବୁଠି ସେମାନଙ୍କ ପ୍ରଶଂସା, କନ୍ଧମାନେ କୁହାକୋହି ହୁଅନ୍ତି, କେଡ଼େ ନିରାହି ଦନ୍ଧୁସ୍ୱଭାବ ଏମାନଙ୍କର ! ଭାଷା ବୁଝନ୍ତି ନାହିଁ ସତ, ଉପରେ ପଡ଼ି କାମ କରନ୍ତି । ମାଇପେ କନ୍ଧ ସ୍ତ୍ରୀଲୋକଙ୍କ ମୁଣ୍ଡରୁ ଉକୁଣି ବାଛନ୍ତି, ମୁଣ୍ଡ କୁଣ୍ଡାଇ ଦିଅନ୍ତି, ପିଲାଙ୍କୁ ସଫା କରନ୍ତି, ଘର ଲିପନ୍ତି, ମାଣ୍ଡିଆ ଗୁଆଁ ପାଛୁଡ଼ନ୍ତି, କୁଟନ୍ତି, ଯେମିତି କେତେ କାଳର ଚିହ୍ନା । କନ୍ଧ ସ୍ତ୍ରୀ-ପୁରୁଷ ସେମାନଙ୍କ ପିନ୍ଧା ଲୁଗାକୁ, ଅଳଙ୍କାରକୁ ଧରି ଧରି ଦେଖନ୍ତି, ସେମାନେ ଆପତ୍ତି କରନ୍ତି ନାହିଁ, ଖୁସି ହୁଅନ୍ତି । ମିଶିପେ କନ୍ଧ ପୁରୁଷଙ୍କ ପରି ପରିଶ୍ରମ କରିବାକୁ ପ୍ରସ୍ତୁତ, ସମସ୍ତିଙ୍କୁ ମାନ୍ୟ, ବିନମ୍ର, କେଡ଼େ ସୁନ୍ଦର ବାଜା ବଜାନ୍ତି, ଗାନ ତନ୍ତ୍ରରେ ଲୁଗାବୁଣା ଦେଖାନ୍ତି, କେଡ଼େ ଆଶ୍ଚର୍ଯ୍ୟ !

ଏମାନେ କାହା ଧନକୁ କାହା ସ୍ତ୍ରୀ ଲୋକକୁ ଅନାନ୍ତି ନାହିଁ, ଦେବତା ସ୍ଥାନ ଦେଖିଲେ ଦୂରେଇ ଠିଆହୋଇ ଜୁହାର୍ କରନ୍ତି, ଅଣ୍ଡାଲୋକ, ଭଲଲୋକ, ଯାଇଚିଆଲ ଲୋକ । ଖବର ଖେଳି ବୁଲୁଥାଏ । ବାଟରେ ଘୂରରାଣ ବଟେଇ ଆଉଦିନ ଦୁଇ ଲଠି ବେଲ ବେଲକୁ ଗୁଡ଼୍‌ଡ଼ୁଙ୍ଗି ପହଞ୍ଚିଗଲେ । ସମସ୍ତେ ଯାଇ କାନ୍‌କଟାର ଘରପାଖେ ରୁଣ୍ଡହେଲେ । କାନ୍‌କଟା ଉଜାଡ଼ୁକୁ, ଲେଟାକୁ, ସାଆଁଲ୍, ଟିଟି, ସାରୁ ଓ ଜାମ୍‌ଧରଙ୍କୁ ସଙ୍ଗରେ ଯେମିତି ଉକ୍‌ଡ଼ୁକୁଟି ପାଇଁ ଆଣିଥିବା ଜନପତିକ ବୋଝରୂଳଲା ତାକୁ ଦେଖାକରି ।

ଢକ୍‌ଡ଼ୁକୁଟି ଥିଲା । ସମସ୍ତେ ଲମ୍ବ ଲମ୍ବ ଗୋଡ଼ଡାଳେ ପଡ଼ିଲେ ।

"ବାର ଭାର ଜିନିଷ ନେଇଥିଲୁ ପରା, ଦେଖା କ'ଣ କ'ଣ ଆଣିଲୁ ?"

କାନ୍‌କଟା ଆଗ ଭାରେ ଲୁଣ ଥୋଇଦେଲା ।

ଢକ୍‌ଡ଼ୁକୁଟି ଖୁସିହେଲା । କହିଲା, "ଏଡ଼େ ଶସ୍ତା ! ଏତକ ତ କୋଡ଼ିଏ ଭାର ଜିନିଷ ଦେଲେ ବି ମିଳେନାହିଁ ! ଦେଖ ଦେଖ, ବାଃ ବାଃ ପାଟ୍-ବାଉଳା, ବାରଭାର ଜିନିଷ ବଦଳରେ ଭାରେ ଲୁଣ ପାଇଗଲୁ ! ତୁ ଭଲ ପାଉଁବାର ଲୋକ ।"

"ସେତିକି ନୁହେଁ ମାହାପ୍ରୁ, ତୁ ଧର୍ମ ରଖିବା ଲୋକ, ତୋ ସଙ୍ଗେ ଧର୍ମ କାରବାର, ଆହୁରି ଅଛି, ଆହୁରି ଅଛି ।"

ହାଟ ପରି ଲୋକ ଗଦାହେଲେ । ଆଗ ସମସ୍ତିଙ୍କ ଆଗରେ ଢକ୍‌ଡ଼ୁକୁଟି ବେଶ ହେଲା । ମୁଣ୍ଡରେ ବାନ୍ଧି ନାଲି କଇଁଆ, ଦେହରେ ପକାଇଲା ରଙ୍ଗ ରଙ୍ଗର ଖଣ୍ଡୁଆ, ବେକରେ କଣ୍ଠି ବାନ୍ଧିଲା, କାଠ କାଠ କାଚମାଳି ପକାଇଲା, କଂସା ଖଡ଼ୁ, ଗିଲ୍‌ଟି ବଳା, ପିତଳ ବାହୁଟି ପିନ୍ଧିଲା, ମିଠେଇ ଖାଇଲା, ବଡ଼ି ଫୁଙ୍କିଲା, ଦର୍ପଣରେ ନିଜ ମୁହଁକୁ ଅନାଇଁ ବଡ଼ ବଡ଼ ଆଖିକଲା । ତା' କାନ୍ଧରେ କାନ୍‌କଟା ପକେଇଦେଲା କମ୍ବଳ ଖଣ୍ଡ, କହିଲା, "ଏ ଗଙ୍ଗୋଲି, ଶୀତକଲେ ଏଇଟା କାମ ଦେବ ।" ଢକ୍‌ଡ଼ୁକୁଟି ମୁଣ୍ଡାମାରି ଆନନ୍ଦରେ ଗର୍ବରେ କୁଉଳି କରି ଡିଆଁ ଟାଏ ମାରିଲା । ରଡ଼ିଲା, "ପାଟ୍-ବାଉଳା !"

"ମୁଇଁ ତୋର କୁକୁର୍ ମାପ୍ରୁ ।"

ରଙ୍ଗ ରଙ୍ଗର ଲୁଗା, ଚେଟା ପିନ୍ଧି ଆଗ ତା'ର ଭାରିଯା ବେଶ ହେଲା, ନାଇଲା ମାଳି, କାନଫୁଲ, ଅଲଙ୍କାର, ଯେତେ ଯାହା ଆସିଥିଲା ସବୁ ପ୍ରକାର । କିଛି କିଛି ଅନ୍ୟାନ୍ୟ ସ୍ତ୍ରୀଲୋକମାନେ ପାଇଲେ । ମିଠେଇ, ଶୁଖୁଆ, ବାସ୍ନାତେଲ, ଦର୍ପଣ, ବଡ଼ି, ଲୁହା ଜିନିଷ, ନାନା ପଦାର୍ଥ ଢକ୍‌ଡ଼ୁକୁଟି ଆଜ୍ଞାରେ ବଣ୍ଟାହେଲା । ଚହଳ ପଡ଼ିଗଲା ।

ଢକ୍‌ଡ଼ୁକୁଟି ଆଶ୍ଚର୍ଯ୍ୟ ହୋଇ କାନ୍‌କଟାକୁ ଅନାଇଁ ରହିଲା, କହିଲା, "ତୁ ! ତୁ ! ମୋତେ ବାର ଭାର ଜିନିଷ ନେଇଯାଇଥିଲୁ ସେଦିନ, ଆଜି ଦେଖିଲାବେଳକୁ ଏତେ ଜିନିଷ ଆଣିଛୁ ?"

"ସବୁ ସେ ବାର ଭାର ଜିନିଷ ବଦଳରେ ଆସିନାହିଁ ମାହାପ୍ରୁ, କଥାହେଲା, ମୋ ଶଶୁରଘର ତୋ ପାଇଁ ଦେଲେ, ଆଉ ସେ ବାର ଭାର ଜିନିଷର ବଦଳ ବି । ମୋର ନିଜର ଲୋକଙ୍କୁ ତୋ ପାଇଁ ନେଇଆସିଲି ମାହାପ୍ରୁ, ରହିବାକୁ ଜାଗା ଦେ, ଚଷିବାକୁ ଭୂମି ଦେ, ବଳଦ ବେପାର କରିବାକୁ ଜିନିଷ ଦେ, ଯେତେଲୋକ କହିବୁ ସେତେ ଲୋକ ଆଣିବି, ଯେତେ ଆସିବେ ସେତେ ତୁମର ଲାଭ ହେବ, ଯେ ଆସିଛନ୍ତି ତାଙ୍କୁ ଦେଖିବୁ ଚାଲ୍ ।"

ଢକ୍‌ଡୁକୁଟି ବେଶ ହୋଇ ଧାଇଁଲା, ତା ସଙ୍ଗେ ସଙ୍ଗେ ଗାଁ ଲୋକେ, ବୁଢ଼ା-ପିଲା, ସ୍ତ୍ରୀ-ପୁରୁଷ ସମସ୍ତେ । ଡମ୍ବ ସ୍ତ୍ରୀ-ପୁରୁଷ ଲମ୍ବ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଲେ । ମୁଖସ୍ଥ କରିଥିଲେ, ଏକାଠି ପାଟିକଲେ—

"ମା ମୃ ନ'ବା ନେ'ଢଡ଼୍‌କା" (ଆମେ ତୁମର କୁକୁରମାନେ)

ବୃର୍ଷା କନ୍ଧ ଅଟ୍ଟାକରି କହିଲା, "ନେ'ଡଡ଼ି ହରେ କଚନେ" (କୁକୁର ଶୀଘ୍ର କାମୁଡ଼ା) ।

କାନ୍‌କଣ୍ଟା କହିଲା, "ସେମିତ କହନା, ସେମିତ କହନା ।"

କନ୍ଧ ଡମ୍ବ ମିଶିଗଲେ । କାନ୍‌କଣ୍ଟା କହିଲା, "ଏଥର ଶୁଣ ଆମର ବାଦ୍ୟ । ନାଚ, ଗୀତ ଗାଅ ।" ବାଜା ବାଜିଲା । କନ୍ଧ ପୁଅ ଝିଅ ନାଚିଲେ, ଗୀତ ଗାଇଲେ, ଦାନବେଲେ ଉତ୍ସବ ଲାଗିଗଲା ।

ଡମ୍ବ ସ୍ତ୍ରୀଲୋକମାନେ ଘରେ ଘରେ ପଶି ବୁଲି ଦେଖିଲେ, ଭାଷା ନବୁଝିଲେ, ହସ ଓ ଠାରଠାରରେ ଆଳାପ ବଢ଼ିଉଠିଲା ।

କୁମ୍ଭିଡାଳ ପଡ଼ିଆରେ ଡମ୍ବ ଗୁଡ଼ିଣି ପଡ଼ିଲା । ଆଗ ରହିଗଲେ ଡାଳପତ୍ରର କୁଡ଼ିଆ ଘର ବାନ୍ଧି, ଗାରୁ ଡାଟି ତଳର ଛୁଆଣି—ଘାସ ଆଣି ଯୋଡ଼େଇ ପକାଇଲେ । ତା'ପରେ ଖୁଣ୍ଟି ପୋତିଲେ, ଗାର ଟାଣିଲେ, ଘର, ବାଡ଼, ସାହି, ଦାଣ୍ଡ ପାଇଁ ଜାଗା ଚିହ୍ନଟ କଲେ, ବଣରୁ ଆଣିଲେ କାଠ, ବାଉଁଶ, ପଥର, ମାଟି ଚକଟିଲେ, ଘର ତୋଳା ଆରମ୍ଭ ହେଲା । ସାନ ସାନ ବଖରା, କେବି ଘରଠୁଁ ବଡ଼ ବଡ଼, ଉଚ୍ଚ, ନଦା ନଦା କାନ୍ଥ, ଉଚ୍ଚ ପିଣ୍ଡା, ଓଜାର, ଆଢୁ ଉପରେ ଘୁଡ, କାନ୍ଥରେ କେତେ ଠଣା, ଖୋଲ, ମାଟିତଳେ ବି ଖୋଲ, ପୁଣି ଘର ଭିତରେ ଅନ୍ଧାରୁଆ ଗୋବ୍ର ଖୋପ, ଭଣ୍ଡାର । କେଉଁଟା କ'ଣ ଓ କାହିଁକି ତା ଡମ୍ବ ବୁଝନ୍ତି, କନ୍ଧ ବୁଝନ୍ତି ନାହିଁ, ଗୁହିଁ ଦେଖନ୍ତି ଏ ତାଙ୍କ ଘରଠୁଁ ଭିନେ ।

ପତ୍ରକୁଡ଼ିଆ ଗୁଡ଼ିଣିରେ ଥାଉ ଥାଉ ଡମ୍ବ କାମ ଆରମ୍ଭ କଲେ । ଲୁଗାବୁଣା ତନ୍ତ ପଡ଼ିଗଲା. କୁମ୍ଭାର ତାଙ୍କ ହାଣ୍ଡିକୁଣ୍ଢେଇ ଗଢ଼ିବାରେ ଲାଗିଗଲେ, ତିଆର କଲେ ଜାତ ଜାତ ହାଣ୍ଡି, ମାଠିଆ, ପଲମ ଆଉ ଡମ୍ବମାନଙ୍କ ବ୍ୟବହାର ଲାଗି ମଦରନ୍ଧା ହାଣ୍ଡି ଓ ମାଠିଆ, ନଳା, ବଢ଼େଇ ତାଙ୍କ ଶାଳ ଖୋଲିଦେଲେ, ବେତ ବାଉଁଶ ବୁଣାଳମାନେ ଆରମ୍ଭ କଲେ ତାଙ୍କ କାମ । ଲାଗିପଡ଼ିଲେ ସ୍ତ୍ରୀ-ପୁରୁଷ । ଖାଲି ଏ ଗାଁ ଲୋକ ନୁହନ୍ତି, ଅନ୍ୟାନ୍ୟ ଗାରୁ ବି କନ୍ଧମାନେ ଆସିଲେ, ଦେଖିଲେ, ଜିନଷ ନେଲେ, ବଦଳରେ ଫସଲ ଅଜାଡ଼ି ଦେଇଗଲେ ।

କାନ୍‌କଣ୍ଟା ପଞ୍ଚା ପଞ୍ଚା ଡମ୍ବଙ୍କୁ ଘେନି ଗାଁ ଗାଁ ବୁଲେ, ତା ନିଜ କାମ ବଢ଼ାଏ, ଗଡଗାଡ ବଢାଏ, ତାଲିମ୍ କରେ । ତାଙ୍କର ଭିତରୁ ସେ ମନେ ମନେ ଲୋକ

ବାଛୁଥାଏ, ପରୀକ୍ଷା କରୁଥାଏ । ଗୁଡ୍‌ଡୁଡ଼ିରେ ସବୁଦିନେ ସମସ୍ତେ ନଥିବେ, ଅଲଗା ଅଲଗା ଦାୟିତ୍ୱ ପାଇବେ, ପ୍ରସ୍ତୁତ କରୁଥାଏ ।

ଅଷ୍ଟ ମୁଣ୍ଡାମାଝି ମଣ୍ଡଳକୁ ଗଦର୍‌ଗୁଡ଼ିକୁ ସେ ବଡ଼ ବଡ଼ ଲୋକଙ୍କ ଡାକ ନେଇଥିଲା । ଉକ୍‌ତ୍ରୁକୁଟି ଓ ଅନ୍ୟାନ୍ୟ କଥା ତମ୍ବୁମାନଙ୍କ ପ୍ରଶଂସା ଗାଇଥିଲେ । କାନ୍‌କଣ୍ଟାର ପାରଦର୍ଶିତାର କାହାଣୀ ବର୍ଣ୍ଣନା କରିଥିଲେ । କାନ୍‌କଣ୍ଟା ମୁଣ୍ଡାମାଝି-ମାନଙ୍କୁ କମ୍ବଳ, ରଙ୍ଗ ଖଦା ଓ ଅନ୍ୟାନ୍ୟ ଭେଟି ଦେଇଥିଲା । ମୁଣ୍ଡାମାଝିମାନେ ଆଶ୍ଚର୍ଯ୍ୟ ହୋଇଥିଲେ ।

"ଏ ଖଦପଟା, ଏ ବଡ଼ି, ଏ ଅଳଙ୍କାର, ଏ ମାଳି, ଦର୍ପଣ, ଏ ଏତେ ପ୍ରକାର ଜିନିଷ, ଏ ସୁଆଦ ମୁଆଁ, ଲୁଣ, ଶୁଖୁଆ, ଏ ସବୁ ତ ଆମର ଦରକାର", ଟାଂଗ୍ରା କହିଲା, "ଆମେ ଏଠି କ'ଣ ପାଉଚୁ ? ମାଙ୍କଡ଼ ପରି ଅଛୁ ।"

ସୁଡ଼ସା କହିଲା, "ଦରକାର, କିନ୍ତୁ ଏଠି ହବ ନାହିଁ, ବେଶି ଜିନିଷ ଦେଲେ ବଦଳରେ କିଏ ଆଣି ଦେବ ?"

"ବେଶି ଆଉ କ'ଣ ?" ଉକ୍‌ତ୍ରୁକୁଟି କହିଲା, "ପାଟ୍‌-ବାରିକାକୁ ଭାର ଦେଲେ, ସବୁ ଶସ୍ତାରେ ଆଣି ଦେଉଛୁ, ସେ ତାଙ୍କର ଭାଷା ବୁଝେ, ବେପାର ଜାଣେ ।"

କାନ୍‌କଣ୍ଟା କହିଲା, "ମୋ ପରି ଆହୁରି ଲୋକ ଆଣିଛୁ ମାହାପ୍ରୁ, ତୁମର କିଛି ଅସୁବିଧା ହେବନାହିଁ ।"

ଡ୍ରାମ୍ବା କହିଲା, "ମୋର ବି ପାଖେ ପାଖେ ଜଣେ ବାରିକ୍ ଦରକାର", ଚତୁର ଆଖିରେ ସମସ୍ତଙ୍କୁ ଅନାଇଁ ଦେଇ କହିଲା, "ଆମ ସମସ୍ତଙ୍କର ଦରକାର ।"

କାନ୍‌କଣ୍ଟା କହିଲା, "ଆଠ ମୁଣ୍ଡାମାଝିଙ୍କି ଆଠଜଣ ବାରିକ୍ ଦେବ ମାହାପ୍ରୁ, ତାଙ୍କୁ ତମର ଭାଷା ଶିଖାଉଛୁ, ତାଲିମ୍ କରୁଛୁ । ମୁଁ ସମସ୍ତଙ୍କ କାମ ଦେଖୁଥିବି, କେହି ଅଳସ ହେବେ ନାହିଁ । ମୁଁ ତ କହୁଛୁ, ଗାଁ ଗାକେ ଜଣେ ଜଣେ ବାରିକ୍ ରଖ, ସବୁ କାମ କରିବେ, କେଡ଼େ ସୁବିଧା ହେବ । ପଦାରୁ ଜିନିଷ ଲୋଡ଼ା, ଆମ୍ଭକୁ ଜିନିଷ ଦିଅ, ଯେ ଯାହା ଦେବ ତାକୁ ନେଇ ତା ପାଇଁ ଜିନିଷ ଆଣିଦେବୁଁ, ଜଳେ ବି ଗଢ଼ିଦେବୁଁ ଗଦା ଗଦା, ବେପାର ଦିଅ । ଆହୁରି ଲୋକ ଆଣିବ, ଅନୁମତି ଦିଅ ।"

ଡଟ୍‌କା କହିଲା, "ବେପାର ଦେବୁଁ, ଯେତେବେଳେ ଲୋଡ଼ା ଜିନିଷ ଦଉଥିବୁଁ । ତୋ ଲୋକ କେମିତି କାମ କରୁଛନ୍ତି ଦେଖୁଁ ଆଗ, ସେଉଠୁ ଆଉ ଲୋକ ଆଣିବାକୁ କହିବୁଁ । ଆଗ ଆଠ ମୁଣ୍ଡାମାଝିଙ୍କୁ ଆଠ ବାରିକା, ଆଉ ଛ' ସାତଜଣ ବଡ଼ ବଡ଼ ଗାଁରେ ବାରିକା ହିଅନ୍ତୁ । ସେଠୁ ଖବର ଆସୁ ସେମାନେ କେମିତି କାମ କରୁଛନ୍ତି । ପରେ ପୁଣି ଲୋକ ଆସିବେ ।"

ତୁମ୍ବ୍ରଡ଼ି କହିଲା, "ସତ, ସତ, ଆରେ ଶରଧା ଲୋକ ସଙ୍ଗରେ ଶରଧା, ଏ ତ ଜଣାଶୁଣା କଥା, ତୁମେ ଆମର ହିତ କରିବ, ଆମେ ତମର ହିତ କରିବୁଁ ନାହିଁ ? ରାଜ୍ୟ ତ ପଡ଼ିଛି, ଯେତେ ମଣିଷ ବଢ଼ିବେ, ସେତେ ଅଧିକ କାମ କରିବେ, ସେତେ ଅଧିକା ଫସଲ ଲଗେଇବେ । ଏ ରାଜ୍ୟ କାହାର ? ଆମର କା ? ଏ ରାଜ୍ୟ ଆମଠୁଁ କିଏ ଛଡ଼େଇ ନେବ ? ତୁମେମାନେ ଆସି ରହିଲେ ଆମର କ୍ଷତି କ'ଣ । ହଜାରେ ରଇତ ଅଛନ୍ତି, ତୁମେ ବି ରଇତ ହେବ, ଜମି ଚଷିବ, କାମ କରିବ, ଖାଇବ, ବେପାର କରିବ, ଆମର କି ଆପତ୍ତି ? ତେବେ, ଆମେ ତତେ ଚିହ୍ନିଲୁ, ତୋ ସାଙ୍ଗରେ ଲୋକଙ୍କୁ ଚିହ୍ନିନାହୁଁ, ଚିହ୍ନାଜଣା ହେବା, ତୁମ ଲୋକ ଭଲ ଲୋକ ବୋଲି ଜାଣିବା, ସେଇଠୁ କହୁଥିବା—ଆଉ ଲୋକ ଡାକ, ଆଁଉ ଲୋକ ଡାକ ।"

ସମସ୍ତେ ସମର୍ଥନ କଲେ ।

କାନ୍‌କଟା କହିଲା, "ବେପାର କରିବୁଁ ନା ? ଆଠଜଣ ମୁଣ୍ଡାମାଝି ଆଠ ରଜା ବସିଛ, କ'ଣ କହୁଛ ।"

"ଗାଁ ଗାଁକେ ଯାହା ଜିନଷ ବଦଳେଇବାକୁ ଦେବେ, ତାକୁ ତୁ ନେଇ ବଦଳା କି କାହାକୁ ଦେଇ ପଠା, ତୁ ଦାୟୀ, ତତେ ଧରିବୁଁ", ତଟିଲି କହିଲା, "ତୁ ଦାୟିତ୍ୱ ନେଲେ ସେପରି କର୍ ।"

ସମସ୍ତେ ମୁଣ୍ଡ ହୁଙ୍କାରିଲେ, ଏ ଉଚିତ କଥା ।

କାନ୍‌କଟା ହାତଯୋଡ଼ି ଠିଆହେଲା । କହିଲା, "ମୁଁ ତ ତମୁକୁ ମୁଣ୍ଡ ବିକିଛି, ମୁଁ ସବୁଥିରେ ରାଜି । ଆଉ ଗୋଟିଏ ଗୁହାରି ମାହାପ୍ରୁ, ଆମୁକୁ ଭୂମିବାଡ଼୍, ତୋଟା ବାଡ଼ି, ବଣ ଜଙ୍ଗଲ କିଛୁ କିଛୁ ଦଅ, କରି ଖାଇବୁଁ । ଆମେ ତୁମ ରାଜ୍ୟ ଭିତରେ ରଇତଙ୍କୁ ତାଙ୍କର ଲୋଡ଼ା ଜିନଷ ଦେବୁଁ, ବଦଳରେ ଜିନଷ ନେବୁଁ, ଭୂମିବାଡ଼ି ଟିକିଏ ଟିକିଏ ଦେଲେ ନେବୁଁ, ଅନୁମତି ଦଅ । ଆମୁକୁ କେହି ହେଲେ ହଇରାଣ କଲେ ଆମେ ତମୁକୁ ଗୁହାରି କରିବୁଁ, ତୁମେ ଆମୁକୁ ରକ୍ଷା କରିବ । ଆମେ ବେପାର ବାଟ କରିବାକୁ ଦେଶ ବାହାରକୁ ଯିବାଆସିବା କରିବୁଁ । ଅନୁମତି ଦଅ ।"

ତଟିଲି କହିଲା, "ଏଇଟା କି ବଡ଼ କଥା ? ଏ ତ ଜଣାଶୁଣା ।"

କାନ୍‌କଟା କହିଲା, "ତୁମ ତୁଣ୍ଡରୁ ପଦେ ବାହାରିଲେ ଆମେ ନିର୍ଭୟ, ମାହାପ୍ରୁ, ତୁମ କଥା ଘାଲଟେ ନାହିଁ ।"

ମୁଣ୍ଡାମାଝି ମଣ୍ଡଳ କହିଲେ, "କଥା ଦେଲୁଁ ।"

କାନ୍‌କଟା ଯାଇ ବୁଝେଇଦେଲା । ସବୁ ତମ୍ପୁ ଖୁସିହେଲେ ।

ଧନେ ପଛରେ କାନ୍‌କଟା ସଭା ଡାକିଲା । କହିଲା, "ଗୁଡ଼୍‌ଗୁଡ଼ ଗାଁରେ ବସା ବାନ୍ଧିଲ, ମାସେକରୁ ଉପର ହେଲା । ଘର ଠିଆହେଲା । ସମସ୍ତେ ଏ ଗୋଟାଏ ଗାଁରେ ସବୁଦିନେ ରହିଥିବ କି ?"

ସମସ୍ତେ ତା' ମୁହଁକୁ ଅନାଇଁ ରହିଲେ ।

କାନ୍‌କଟା କହିଲା, "ଆମର ହାତ ତିଆରି ରଙ୍ଗ ରଙ୍ଗ ଝିଦ ପିନ୍ଧିବାକୁ ସବୁ କନିକନ୍ଧୁଣୀଙ୍କ ମନ । ଯାହା ସୂତା ଆଣିଥିଲ ସବୁ ସରିଲା । ପୁଣି ଏଠୁ ଖର ଖର ଜିନିଷ ନେଇଯିବ, ବଦଳେଇବ, ସୂତା ଆଣିବ, ବୁଣିବ, ବଳକେ କନ୍ଧଠୁ ଜିନିଷ ପାଇବ, ସେ ଖର ଖର ଜିନିଷ କାହିଁ ? ହାଣ୍ଡି କୁଣ୍ଡେଇ, ବାଉଁଶ, ବେତର ଟୋପା ଏଇଟା ସେଇଟା ଏତକ କରି ଗାଁ ଗାଁ ବୁଲି ବିକ ଜ୍ରମ ଝାଉଣା ଚାଲିଛି, କନ୍ଧର କାମ କରୁଛ କିଛୁ ଦଉ଼ଛୁ, ଖାଇବାଟା ଚଳୁଛି କଷ୍ଟେମଷ୍ଟେ, ଗୋଟେ ଗାଁ କେତେଦିନ ଆମ ସମସ୍ତିଙ୍କୁ ପୋଷିବ ?"

ସମସ୍ତେ ମୁହଁ ଚାହାଁଚାହିଁ ହେଲେ, କିଛି କହିଲେ ନାହିଁ ।

କାନ୍‌କଟା କହିଲା, "ଗୋଟିଏ ଜାଗାରେ ସବୁ ବହନ ଲଗେଇଦେଲେ ଗଛମାନଙ୍କୁ ଖାଦ ମିଳିବ ନାହିଁ । ଗୋଟିଏ ଜାଗାରେ ସମସ୍ତେ ଧରାଧରି ହୋଇ ପଡ଼ିଥିଲେ କେହି ଉଧେଇ ପାରିବ ନାହିଁ । ଏଥର ଝେଲେଇ ହୋଇ ପଡ଼ିବା ବେଳ ଆସିଲା । ଗୁଡ଼୍‌ଗୁଡ଼ ଆମର ମୂଳ-ଗାଁ ରହିଲା, ଏଠି ରହିବେ ବଡ଼ ମହା (ଦଳ) ଲୋକ, ବାଳମାନେ ବୁଲି ଆସୁଥିବେ, ଯାଉ଼ଥିବେ, ପୁଣି ପ୍ରତିମାସର ଉଆଁସ ଦିନ ଏଠି ଭେଟାଭେଟି ହେବା, ଯେ ଯେଉଁଠି ଥାଉ, ସବୁ ଭଲମନ୍ଦ କଥା ପଡ଼ିବ ।"

ସୋନାଖାଉ ପଗ୍ଭରିଲା, "କିଏ କୋଉ ଗାଁରେ ରହିବ ?"

କାନ୍‌କଟା କହିଲା, "ଆଗ ଆଠ ମୁଣ୍ଡାମାଝି ପାଖେ ଆଠ ବାରିକ, ସେଇ ଆଠଜଣ ହେବେ ଅସଲ, ଜଣେ ଭୁଲ କଲେ ସମସ୍ତେ ବିପଦରେ ପଡ଼ିବା । ଅସଲା ବୁଦ୍ଧି, ଚତୁରପଣ, କାମିକାପଣ ସେଇଠି ଦରକାର, ଖେଳଘର ନୁହେଁ ।"

"ତୁ ବାଛି ଦେ, ସବୁ ଦାୟିତ୍ୱ ତ ତୁ ମୁଣ୍ଡେଇଛୁ", ବାମୁନ କହିଲା ।

କାନ୍‌କଟା କହିଲା, "ବାଛି ସାରିଛି । ତୁ ସୁନାଖାଉ, ତୁ ରହିବୁ ଯାଇ କାଉ଼ଞ୍ଜା ଗାଁରେ, ଡ଼ାମ୍ବୁ ମୁଣ୍ଡାମାଝିର ବାରିକ୍ ହେବୁ । ଜାମ୍‌ଧର ଯିବ ମାଝିଗୁଡ଼ା, ସେ ରାଉ଼ସାର ବାରିକା, ସାରୁ ଡଟିଲର ବାରିକା, ରହିବ ଗାଉ଼ଡେଂପାଟାରେ, ସାଆଁଲ୍ ମାଦ୍ଦିଗୁଡ଼ା

ଉଠିଯିବ, ସେ ଟାଂଗ ମୁଣ୍ଡାମାଝିର ବାଲକା, ଝିଟି ଯିବ ନୁଣ୍ଡୁଗୁଡ଼ା, ସେ ତୁମ୍ବୁଡ଼ି ମୁଣ୍ଡାମାଝିର ବାଲକା, ଟୁଟଡ଼ି ଯିବ ବାଡ଼ପାଙ୍ଗା, ସେ ଦଶାଙ୍ଗାର ବାଲକା, ଚମ୍ପୁ ଯିବ ଗିଲଙ୍ଗପଡ଼ା, ସେ ଡଙ୍କା ମୁଣ୍ଡାମାଝିର ବାଲକା, ଆଉ ଉକାଡ଼ୁ ଏଇଠି ରହିବ, ସେ ଉକଡ଼ୁକୁଟି ମୁଣ୍ଡାମାଝିର ବାଲକା । କୁଆପିଲା ଯେନ ଉଠିଯାଅ, ନିଜ ନିଜ ଆସ୍ଥାନ ମାଡ଼ି ବସ, ଆଉ ଝାଲୁ ନକୁଅ ।

"ଝାଲୁ ନଚେଇବୁଁ ?" କେତେ ତୁଣ୍ଡରୁ ଶୁଭିଲା ।

"ହଁରେ ହଁ, ବଣ ଦେଶରେ ରହି କ'ଣ କରିବ ? କନ୍ଧଙ୍କୁ ପୋଷା ମନେଇବ, ଝାଲୁ ନଚେଇବ ।" ସେମାନେ ହୋ ହୋ ହସିଲେ ।

କାନ୍‌କଟା କହିଲା, "ତୁମେ ରହିଥିବା ଦୁଇ ଦୁଇ ଗାଁ ମଝିରେ ଆଉ କୋଉ କୋଉ ଗାଁରେ ଜଣେ ଜଣେ ବାଲକ୍ ରଖିଦେବ, ରହିଯାଅ ଆଉ ସାତ ଆଠ ବାଲକ୍ । ଦେଖାଦେଖି ହେଉଥିବ । ଜଣକୁ ଜଣେ ସାହା । ପୁଣି କନ୍ଧଙ୍କୁ କହିବା, ଆହୁରି କେତେକେତେ ଘର ଡମ୍ବ ଆଣିବା, ଧୀରେ ଧୀରେ ସବୁ ଗାଁରେ ଥିବେ ଆମର ଲୋକ, ସମସ୍ତେ ତ ନଥିବା ଲୋକ, ଆସନ୍ତୁ ବସନ୍ତୁ ଏଠି । ସବୁଠି ମେଲିଦିଅ ନାନା ବୃତ୍ତି, ନାନା ବେପାର, କନ୍ଧକୁ ବଶ କର, ବେପାର ଚଳିବ । ଜମି କର, ସମ୍ପତ୍ତି କର, ଏ ରାଜ୍ୟ ଛାଡ଼ି ପଳାନାହିଁ ।

"କାହିଁକି ଯିବୁଁ ? ଆସିଲୁ କାହିଁକି, ଯିବୁ କାହିଁକି ?"

"ସେଇ କଥା । ନିଜ ସୁବିଧା ପାଇଁ କନ୍ଧକୁ ବୁଦ୍ଧି ବତାଅ, ଅନ୍ୟ ବୁଦ୍ଧି ବତା ନାହିଁ । ସେ ଜନପଦ ଚହଲୁ, ପଇସା ଚହଲୁ, ସଡ଼କ ପକାଅ, ହାଟବଜାର ବସାଅ, ତାକୁ ତୁମର ଇଚ୍ଛା ପ୍ରକାରେ ନବଦଳେଇଲେ ତୁମର ସୁବିଧା ହେବ ନାହିଁ ।"

ଚମ୍ପୁ କହିଲା, "ମଦ ରାନ୍ଧିଲେ କେମିତି ହେବ ପାଟ୍-ବାଲକା ? ଏଠି ତ ଭଲ ଚାଲୁଛି ।"

କାନ୍‌କଟା ହସିଲା, କହିଲା, "ତାଙ୍କୁ ବି ଟିକିଏ ଟିକିଏ ଜଣାଅଛି, ସେମାନେ ବି ମହୁଲରୁ ମଦ ରାନ୍ଧନ୍ତି, ତେବେ ଆମ ପରି ନୁହେଁ । ଆମ ମଦ ପିଇବେ, ପାଟିରେ ଲାଖିଗଲେ ଆଉ ଛାଡ଼ିବେ ନାହିଁ । ତେବେ ସେଡ଼େ ମହୁଆ ତ ସେମାନେ ହୋଇନାହାନ୍ତି । ବେଳ ଲାଗିବ । ପୁଣି, ତାଙ୍କର ଭିନେ ମଦ ବି ଅଛି । ଶଲପ ଅଛି, ଲନ୍ଦା ପେଣ୍ଡମ୍ କରନ୍ତି, ସବୁ ପ୍ରକାର ଖାଇବେ । ତୁମେ ଅଭ୍ୟାସ କରାଅ, ତୁମ ମଦ ବେଶି ବେଶି ଧରିବେ । ରାନ୍ଧିବା ବାଟ ବତେଇଦେବ ନାହିଁ, ଶିଖିଯିବେ ।"

ସୋନାଖାଉ ପଚାରିଲା, "ଆମେ ଆମ ନିଜ ଜନପଦ ପଦାରେ ବାହାରଗଲେ ଧରିବେ କି ନାହିଁ ଏମାନେ ? କିଏ ଜାଣେ, ସେଇଟା ତ ଅସଲ କଥା ।"

କାନ୍‌କଟା କହିଲା, "ଆଗ ଆଗ ତାଙ୍କ ଜିନିଷ ବଦଳେଇବାକୁ ନେବ, ତା' ସାଙ୍ଗରେ ତୁମ ଜିନିଷ ବି ନେବ, କିଏ ମନାକରିବ ? ପଛେ ତୁମେ ଚାଲ୍ଲା ହୋଇଯିବ, ତୁମ ଜିନିଷ ବି ନେବ । ଆସ୍ତେ ଆସ୍ତେ ସବୁ ହେବ । ପଦାକୁ ଗିବାକୁ ଆମେ ଗୋଟାଏ ବାଟ ଦେଖିଲୁଁ, ଗୋଟାଏ ଆଉ ଦେଖିଲୁ, ଆହୁରି ବାଟ ଥିବ, ସବୁ ଜାଣିପାରିବ ।"

ନୂଆ ଜନ୍ମ କହିଲା, "ବେପାର ପାଇଁ ବେପାରୀ ଦରକାର । ସେପାଖେ ଆମଠୁ ଜିନିଷ କିଏ ନେବେ ସେ ଲୋକଙ୍କୁ ଠିକଣା କରିବାକୁ ହେବ ।"

ପାଇନୁ କହିଲା, "ଖାଲି ସେତିକ ? ସେପାଖେ ଗୋଦାମ ଖୋଲ୍ଲ; ଆମ ଲୋକ ଖୋଲନ୍ତୁ କରନ୍ତୁ, ଜିନିଷ ବିକବାକୁ ମାସ ମାସ ଲାଗଲେ କେମିତି ହେବ ?"

କାନ୍‌କଟା କହିଲା, "ଆଉ ଜାଣିଛନା, ବାରକ୍ ହେଲେ ବୁଝିବ । କିଏ ଯେତେବେଳେ ଯୋଉ ଜିନିଷ ଲୋଡ଼ିବ ତା'ର ସେତିକବେଳେ ସେଇ ଜିନିଷ ଦରକାର । ତୁମକୁ କହିବ, "ବାରକ୍ ହେଲ୍ ତୁଚ୍ଛାରେ ? ଯା ଆଣିଦେ ।" ତାକୁ ସେ ଜିନିଷ ହାବୁଡ଼େଇବାକୁ ତୁମେ ତାଠୁ କି କି ଜିନିଷ ବଦଳା ମାଗିବ ମାଗ, ତୁମେ ପୁରୁରେଇ କହିପାରିଲେ ତା'ର ଆପତ୍ତି ନାହିଁ; କିନ୍ତୁ ସେ ଯାହା ଖୋଜୁଛି ତାକୁ ତୁମେ ତା' ଆଣିଦେବ । କେମିତି ସମ୍ଭାଳିବ ? କେତେବେଳେ ଗୋରୁ ମାଗିବ, କେତେ-ବେଳେ ଛେଳି, କେତେବେଳେ ପାରିଟାଏ କି କୁକୁଡ଼ାଟାଏ, ତା ଦେବତା ପାଖେ ବଳିଦେବ, ନଇଲେ କୁଆଡ଼େ ଦେବତା ତାକୁ ଖାଇବ । ତୁମେ ଆଗରୁ ଜିନିଷ ଠାବ କରିଥିଲେ ତ !"

ପାଇନୁ କହିଲା, "ସତ, ମନ ଜଗି କାମ, ଖାଲି ମଦ ଯୋଗେଇବା ନୁହେଁ, ବାଜା ବଜେଇବା ନୁହେଁ ।"

ଉଜାଡ଼ୁ କହିଲା, "ବୁଦ୍ଧି ଖେଳାଅ, ରୋଜଗାର କର ।"

ପୁନିଆ କହିଲା, "ବୁଦ୍ଧି ତ ଖେଳେଇବ । ହେଲେ, ଅଇଚ୍ଛା ଅସଲ ବେଳ ପଡ଼ିଲା, କାହିଁ କାହିଁ ଦୂର ଦୂର ଗାଁରେ ଗୋଟିଏ ଗୋଟିଏ ହୋଇ ରହିବାକୁ ପଡ଼ିବ । କନ୍ଧ ସଙ୍ଗରେ କନ୍ଧପଣ । ବଣର ଜନ୍ତୁ ସଙ୍ଗରେ ଜନ୍ତୁପଣ । ବଣ ପର୍ବତ, ବାଘ, ଭାଲୁ, ଶୀତ, କାକର, ମେଘ, ଦେହ-କାଇଲ ( ବେମାର ) । ବଞ୍ଚାଇବ ଆମକୁ ଧର୍ମ । ଧର୍ମ ଛାଡ଼ିଲେ ମରିବା । ମାଇପେ ସକାଳୁ ଉଠି ଦୁଆରେ ଗୋବରପାଣି ପକାଇବେ । ଗୁରୁବାର ଦିନ ଘର ଲିପାପୋଛା କରିବେ, ଲକ୍ଷ୍ମୀ ଠାକୁରାଣୀଙ୍କି ପୂଜିବେ । ଯାହାକର, ମାହାପୂରୁକୁ ମନେରଖିଥିବ ।" ସେ ଦଣ୍ଡବତ କଲା ।

ଲେଟା କହିଲା, "ମାହାପୁରୁ ଆଣିଛି, ମାହାପୁରୁ ଆମୁକୁ ରକ୍ଷା କରିବ । ଆମର ଖାଲି ଜଣକର କଥା ନୁହେଁ, ଏତେ ଏତେ ଲୋକଙ୍କ କଥା ଭାବିବାକୁ ଅଛି । ଆମ ପିଲ୍ଲ

ବୁନ୍ଦୁମୁ ଭଲରେ ରହିବେ, ପୁଣି ଆମେ ବଢ଼ିଲେ ଆମପରି ଆଉ ଦଶଜଣ ଏଠିକି ଆସିବେ, ଯେ ଯେଉଁଠି ଦୁଃଖୀରଙ୍କି ଡମ୍ବୁ ଅଛନ୍ତି, ସେମାନେ ଆସିବେ, ଆନ୍ଦୁ କନ୍ଧ, ଆମ ଲୋକ ବି ରହିବେ, ଗାଁ ବାନ୍ଧିବେ, ଏ ବି ଆମର ଦେଶ ହେବ । ବସୁଧା ସମସ୍ତଙ୍କର, ଆମେ ଆଇଲୁ, ଯେତେ ଦୁଃଖ କଷ୍ଟ ପଡ଼ୁ ଯେମିତି ହେଲେ ରହିବା । ସେହି କଥାକୁ ସମସ୍ତେ ମନେରଖ । ତୁମେ ଜଣେ ଆହୁରି ଆହୁରି ଲୋକଙ୍କ ପାଇଁ ବାଟ ଖୋଲିବାକୁ ଆସିଛ । ସେଇଆ ଭବି କାମ କରିବ ।''

ଗୁଡ଼୍‌ଡ଼ୁଙ୍ଗରେ ଡମ୍ବସାହି ବସିଲା, ଏବେ ଯାଇ ତଥାପି ଦଶଘର । ପଦେତ ସେମାନେ କହନ୍ତି, ''ଦଶଘର ଆମେ—ବାଘବଂଶିଆ, କୋର୍କୋରିଆ, ଆଉ ବଭର୍ ।'' ଉକ୍‌ଡ଼ୁଲୁଟିର ବାରିକ୍ ଛଡ଼ା ଆଉ ସାତଟି ଗାଁରେ ସାତ ମୁଣ୍ଡାମାଝିଙ୍କ ସାତଜଣ ବାରିକ୍ ରହିଲେ, ରହିଲେ ସାତଟି ପରିବାର । ତେରଟି ପରିବାର ଅନ୍ୟାନ୍ୟ ବାରଟି ଗାଁରେ ରହିଲେ, ପୁରୁଷମାନେ ସେଠି ବାରିକ୍ । କନ୍ଧରାଜ୍ୟର କୋଡ଼ିଏଟି ଗାଁରେ ପୂଜାପାର୍ବଣରେ ଓ ସଞ୍ଜବୁଡ଼େ ଡମ୍‌ବାଇଦ ବାଜିଲା, କନ୍ଧ ନାଚିଲେ ।

ସବୁଠି ସେମାନଙ୍କର ଖାଇବାକୁ, ଚଳିବାକୁ ପ୍ରଚୁର, ବଦାନ୍ୟ କନ୍ଧ ମାଗିଲେ ଅଜାଡ଼ି ଦିଏ, କ୍ଷେତରୁ ଫସଲ, ଗଛରୁ ଫଳ । ତା'ଛଡ଼ା କେହି କେହି ନିଜ ନିଜର ବୃତ୍ତି ବି କରନ୍ତି । କନ୍ଧ ତାଙ୍କଠୁଁ ଜିନିଷ ନିଏ, ବଦଳରେ ଫସଲ ଆଣିଦିଏ । ସବୁ ମୁଣ୍ଡାମାଝିମାନଙ୍କର, ଗାଁ ମୁଣ୍ଡିଆଳମାନଙ୍କର ପଦାରୁ ନାନା ଜିନିଷ ଦରକାର, ବଦଳେଇ ନୂଆ ଜିନିଷ ଆଣିବାକୁ ବାରିକମାନଙ୍କୁ ବରଗାହୁଏ, ଭରଭର ଜିନିଷ ଯାଏ, ସଙ୍ଗରେ ବାରିକ୍ ଯାଏ । ବେଣି ଭର ପେଲିଯାଏ 'କାନ୍‌କଟା ପାଟ୍-ବାରିକା, ରାଜ୍ୟଯାକ ପାଇଁ ଜିନିଷ ଆଣେ । ସେମାନେ ଜିନିଷ ବିକି ଶହେଟଙ୍କା ପାଇଲେ ନିଜେ ରଖିଦିଅନ୍ତି ଅଶୀ ଟଙ୍କା, କୋଡ଼ିଏ ଟଙ୍କାର ଜିନିଷ କିଣି କନ୍ଧମାନଙ୍କୁ ଦିଅନ୍ତି । କନ୍ଧ ଖୁସି, ଡମ୍ବ ଖୁସି । ପ୍ରଚୁର ସୂତା କିଣିଲେ, ଲୁଗାବୁଣା ଯେତେ ପାରିଲେ କଲେ, ଖଣ୍ଡେ ଖଣ୍ଡେ ଲୁଗା ବିକିଲେ ବଜାରଠୁଁ ଦଶଗୁଣ ଲାଭ । ଗୁଡ଼ କିଣିନେଇ ମାଇପେ କଲେ ମୁଡ଼ିମୁଆଁ, ଗୁଡ଼ଉଲମିଠା, ବୁଲି ବୁଲି ବିକନ୍ତି, ଜିନିଷ ଆଣିବାକୁ ମୁଣି ଟୋକେଇ ଦେଇ ବାହାରିଥାନ୍ତି, ମୁଡ଼ିମୁଆଁ ଦେଇ ବଦଳରେ ବୋହିଆଣନ୍ତି ହଳଦୀ, ସୋରିଷ, ରାଶି, ଯେଉଁଦିନ ଯାହା । ଜିନିଷ ଠୁଳକରନ୍ତି, କନ୍ଧମାନଙ୍କୁ ବିକିବେ ବୋଲି ନାନା ପଦାର୍ଥ ସାଇତି ରଖନ୍ତି । ଜିନିଷ ବିକି ସାଇତି ରଖନ୍ତି ସୁନା, ପୋତିପକାନ୍ତି । ଘରେ ଆରାମ୍, ଖଟ ଶେଯ କମ୍ବଳ ବି ନଥାଏ, କନ୍ଧ ଗାଁରେ ବୁଲିଲାବେଳେ ସ୍ତ୍ରୀଲୋକମାନେ ପିନ୍ଧିଥାନ୍ତି ମୋଟାଖଦି, ପୁରୁଷମାନେ କୌପୁନି ଉପରେ ଛିଣ୍ଡା କଳା ଅଙ୍ଗୀ କି

କୋଟ୍—ବାରକ୍ ବୋଲି ନଜରି ପରିଚୟ, ଯେ ପଗୃରଲେ, "ମୁଁ ନଥିବା ତମ୍ଭଟିଏ, ଲୋକ ଜାକୁଣ୍ଡିରେ କନ୍ଧର ଯେତାକର ମୁଁ ପଡ଼ିରହିଛି, ସେବକ, ତେଣୁ 'ବାରକ୍' ।"

ଶୁଖୁଆ ଦେଇ, ରଙ୍ଗରଙ୍ଗର ମାଳି ଦେଇ, ପିତ୍ତଳର ଗହଣା ଦେଇ ନାନା ଉପାୟରେ ସେମାନେ ଯେତେ ପାରିଲେ କନ୍ଧମାନଙ୍କଠୁଁ ମହୁଲି ସଂଗ୍ରହ କରି ଠୁଳ କଲେ । ମଦ ସ୍ରାନ୍ଧିଲେ, କନ୍ଧଙ୍କୁ ମଦ ପିଆନ୍ତି, ଆହୁରି ଆହୁରି ଜିନିଷ ତାଙ୍କ ହାତକୁ ଆସେ, ମଦପାଇ କନ୍ଧ ଆହୁରି ଆହୁରି ଆଉଜି ଆସନ୍ତି । ବେପାର ବଢ଼େ, ପ୍ରତିପତ୍ତି ବଢ଼େ, ଯେଉଁଠି ବାରକ୍ ସେଠି ସେ କନ୍ଧଙ୍କର ମନ୍ତ୍ରୀ, ମନ୍ତ୍ରଣାଦାତା, ପରମବନ୍ଧୁ, ହିତୈଷୀ ।

ମୁଣ୍ଡାମାଝିମାନେ, ଗାଁ ମୁଣ୍ଡିଆଳମାନେ, ବାରକ୍‌ମାନଙ୍କୁ ଖଣ୍ଡେ ଖଣ୍ଡେ ଜମି ଦେଲେ, କେଉଁଟା ପଡ଼ିଆ, କେଉଁଟା ଜଙ୍ଗଲ । ଟୋପିଏ ଟୋପିଏ ମଦ ପିଇବେ ବୋଲି, ପୁଞ୍ଜାଏ ଉପୁଞ୍ଜା ବଡ଼ି ଟାଣିବେ ବୋଲି କନ୍ଧମାନେ ସେ ଜମିରେ ଚାଷ କରି-ଦିଅନ୍ତି, ତାଷ କାମ କରନ୍ତି, ଆଉ କିଛି ଦେବାନେବା ନଥାଏ । "ଯେତେହେଲେ ଗାଁର ଲୋକ ତ, ଗାଁର ଭାଇ, କାମ କରିବାକୁ ତା'ର କିବା ଲୋକବଳ ଅଛି ? ଆମେ ନକଲେ କିଏ କରିଦେବ ?" କନ୍ଧମାନେ କହନ୍ତି ।

ମାତ୍ର କେତେଟାରେ କନ୍ଧ ରାଜ୍ୟରେ ପରିବର୍ତ୍ତନ ଦେଖାଦେଲା । ପୋଷାକରେ, ଅଳଙ୍କାରରେ, ନାନା ନୂଆ ପଦାର୍ଥ, ନୂଆ ଉପକରଣ ବ୍ୟବହାରରେ କନ୍ଧମାନଙ୍କ ଭିତରେ ନୂଆ ଚଳଣି ପଶିଲା, ନହେଲେ ନଚଳେ । କେତେଠିଁ ସ୍ତ୍ରୀଲୋକଙ୍କ ଗ୍ରୀବ-ଘାକ ବୋଝ ବୋଝ ରଙ୍ଗମାଳି, ହାତରେ ଗୋଡ଼ରେ କଂସା ପିତ୍ତଳର ନୂଆ ପ୍ରକାର ଅଳଙ୍କାର, କାନରେ ନାକରେ ମୁଦ, କାହାର ସୁନାର, କାହାର ପିତ୍ତଳର, ଜକଜକ ମୁଣ୍ଡ, ସେଥିରେ ବି ଅଳଙ୍କାର, ରୁପାର ଫୁଲ, ଶିଙ୍କୁଳି, କେତେ ପିତ୍ତଳର, ପଦାକୁ ବାହାରିଲେ ଗ୍ରୀବ ଉପରେ ରଙ୍ଗ ରଙ୍ଗର ରେଟା, ଦେହରେ ରଙ୍ଗରଙ୍ଗର ଶାଢ଼ି, ପୁରୁଷଙ୍କର ନାକରେ କାନରେ ମୁଦ, ହାତରେ ଜାଡ଼ ଜାଡ଼ ବଳା, କଂସାର, ପିତ୍ତଳର, କାହାର ବା ରୁପାର, ଦେହରେ ଅଙ୍ଗୀ. ରଙ୍ଗରଙ୍ଗର ଗୁଦର । ଘୋର-ହେବାକୁ ମାଠ, କମଳ । ପଦାର କେତେ କେତେ ନୂଆ ନୂଆ ବ୍ୟବହାର୍ଯ୍ୟ ଜିନିଷ ପଶିଛି, ହାତରେ ତବା, ଛତା, ମୁଣ୍ଡି, ଲଉରୁମ୍ବା, ମାଟିହାଣ୍ଡି ପରିବର୍ତ୍ତେ ଘରେ ଘରେ ଗିଲ୍‌ଟି ହାଣ୍ଡି ବାସନ, ଲୁହାର, ତମ୍ବାର, କଂସାର । ବଜେଇବାକୁ ନୂଆ ନୂଆ ବାଜା; ଶୁଙ୍ଘିବାକୁ ନୂଆ ନୂଆ ବାସ୍ନା । ଧୂଆଁପତ୍ର କାହାଲୀ ପରିବର୍ତ୍ତେ ତମ୍ବାଚକା ମାଟିର ଚିଲମ, ଘରେ ଜାଡ଼ ଜାଡ଼କା ମାଟିପାତ୍ର, କାଠ ବାକ୍ସ, ଟିଣ ବାକ୍ସ, ତବା, ବେତ ଓ ବାଉଁଶର ପେଡ଼ି, ଟୋପା । ସମାଜରେ ମାନ ସମ୍ମାନର ନୂଆ ମୂଲ୍ୟ ଧୀରେ ଧୀରେ ପଶିଗଲା—ଯେ ଯେତେ ବେଶି ନୂଆ ପ୍ରକାର ଜିନିଷ ରଖିଛି, ବ୍ୟବହାର କରେ

ତା'ର ସେତେ ଟେକ । ଯେତେ ଫସଲ ଖର୍ଚ୍ଚ ହେଉ, ମୁଣ୍ଡାମାଝିମାନେ ଓ ତାଙ୍କ ପରିବାରର ଲୋକେ ଅଳ୍ପ କିଛି କିଛି ସୁନା, ରୁପା ଓହ୍ଲାଇ ପଦାକୁ ବାହାରିଲେ, ସେମାନେ ଦେଖାଇଦେବାକୁ ଲୋଡ଼ନ୍ତି ଯେ ସେମାନେ ସାଧାରଣ ନୁହନ୍ତି ।

ମଦପିଆ ବଢ଼ି ବଢ଼ି ବ୍ୟାପୁଥାଏ । ଆଉ ବଢ଼ୁଥାଏ ମାଂସଖିଆ । ଅଳ୍ପ କେତେ-ମାସ ଭିତରେ କନ୍ଧମାନେ ଯେତେ ଗୋରୁ ମଇଁଷି ଖାଇଗଲେ ପୂର୍ବେ କେତେ ବର୍ଷରେ ବି ଏତେ ଖାଇନଥିଲେ । ରାଜ୍ୟରେ ଗୋରୁ ମଇଁଷି ଅଭାବ ପଡ଼ିଲେ, ଡମ୍ବ ପଲପଲ ଗୋରୁ ମଇଁଷି ପଦାରୁ ଆଣି ଠୁଳକରି ରଖିଲେ, ଯୋଗାଇଲେ, ଦଶଗୁଣ ପନ୍ଦରଗୁଣ ଦାମ୍‌ରେ ବଦଳରେ ଫସଲ ନେଲେ ।

ମୁଣ୍ଡାମାଝିମାନେ, ଗାଁ ମୁଣ୍ଡି ଆଳମାନେ ଡମ୍ବଙ୍କ ପ୍ରତି ପ୍ରସନ୍ନ ହେଲେ, କାନ୍‌କଟା ଦଶଜଣ ବାରିକ୍‌ଙ୍କୁ ଘେନି ଆଣିଗଲା ନୂଆ ନୂଆ ପରିବାର, ଆପଣା ଆପଣା ବନ୍ଧୁ-ବାନ୍ଧବଙ୍କ ଭିତରୁ ବାଛି ବାଛି ଆନ୍ଧୁର ଡମ୍ବ ପରିବାରଙ୍କୁ ସେମାନେ ସଙ୍ଗରେ ଘେନି ଲେଉଟିଲେ । 'ବାରିକ୍'—ସେବକ, ଗାଁ ଗାଁକେ ଆନ୍ଧୁର ସେବକ—ସେବକପଲ ଦେଶଯାକ ଖେଳେଇ ହୋଇଗଲେ ।

ମାଢିଗୁଡ଼ାର ପଶ୍ଚିମ ଦିଗରେ ଗୋଳିଆ ପର୍ବତ ଉପରେ ବଡ଼ ନାଲିଆ ସୂର୍ଯ୍ୟ ଦୋହଲୁଥାଏ, ହମେରିକା (ଗୋଢ) ଅଡ଼୍‌ଡ଼ା (ଛେଳି) କନ୍ଧ ପଣସ ଗଛ ପାଖେ ସାଆଁଲ (ଶାଗୁଣା) ଡମ୍ବଘର ଆଗରେ ଠିଆହେଲା । ଅଡ଼୍‌ଡ଼ା ହାଡ଼ୁଆ ଶୁକୁଟା ହୋଇ ମଣିଷଟାଏ, ତେଙ୍ଗା ସାଆଁଲ୍ ଡମ୍ବର ବେକଯାକେ । ସାଆଁଲ୍ ଡମ୍ବର ଘରପାଖେ ଠିଆହେଲେ ଦଣ୍ଡେ ଦୂରରେ ତଳେ ଅଡ଼୍‌ଡ଼ାର ବଡ଼ ବଳଦି ଦିଶେ, ବୈଶାଖ, ଏବେ ବୁଣାବୁଣି ହେବ, ହଳ ସରିଛି, ଯୋଡ଼ାଏ ସାନ ସାନ ଗାଈ ଯୋଚି ଅଡ଼୍‌ଡ଼ା ସେଠି ପାଞ୍ଚଦିନ ଲଗିଥିଲା, ଗୋଟିଏ କପିଳ, ଗୋଟିଏ କଳା । ଗାଈ ଯୋଡ଼ାକ ମାଗି-ଆଣିଥିଲା । "ପଦେ କଥା ଥିଲା ବାରିକ୍", ଅଡ଼୍‌ଡ଼ା କହିଲା, "ମୋ ପୁଅ ମିନ୍ଦ୍ରୁର ବିଭା ଦେବି ।"

ସାଆଁଲ୍ ହସିଦେଇ କହିଲା, "ଭଲ ତ, ଆମେ ବାଇଦ ବଜେଇବୁଁ, ଯାହା କହିବୁ ତା' କରିଦେବା । ଖେଞ୍ଜ ମଦ ତ ମତେ କଷ୍ଟେ ଦବୁ, ଗାଁର ବାରିକ୍‌କୁ ଭୁଲିବୁ ନା ?"

ଅଡ଼୍‌ଡ଼ା ହସିଲା, କହିଲା, "ଦେବି । ଯେ ଗୋଟାଏ କଥା—"

ସାଆଁଲ୍ ଯେପରି କ'ଣ ବୁଝିପାରିଲା, ତା ଗୋଟିଆ ନାକ ଫଣିକି ଉଠିଲା, ଗୁହାଣି ମୁନିଆଁ ହୋଇଗଲା, କହିଲା, "କହ ।"

ଅଡ୍‌ଡ଼ା କହିଲା, "ଦ ମାଠିଆ ମଦ ଦରୁ, ଟାଣ ମହୁଲି ମଦ, ଆଉ ଗୋଟାଏ ହଡ଼ା, କୁଣିଆଁ ଆସିବେ ।"

"ଫସଲ ଦେ, ବଦଳ ଦେଇ ହଡ଼ା ଆଣି ଦେବ, ମହୁଲ ଆଣି ମଦ ରାନ୍ଧିଦେବ, ହେଲା ?"

"କେତେ ଫସଲ ?"

"ଦ'କୋଡ଼ି ଭାରି କାନ୍ଦୁଲ କି ସୋରିଷ କି ହଳଦୀ, ସେମାନେ ତ ଉଣା ମାଗିବେ ନାହିଁ ।"

"ଦେଖ, ହଳଦୀ ଏସାଲେ ନାହିଁ, ବଣର ନିଆଁ ମାଡ଼ିଆସି ଗଛ ପୋଡ଼ିଗଲା । କାନ୍ଦୁଲ କି ସୋରିଷ ବି ଆଉ ନାହିଁ । କାନ୍ଦୁଲ ଖାଇଲୁଁ, କାନ୍ଦୁଲ ସୋରିଷ ବଦଳ ଦେଇ ଖଦି କିଣିଲୁଁ, ଆଉ ଯାହା ଯାହା ଦରକାର କିଣିଲୁଁ ।"

"ଆଉ ମଦ ଖାଇଦେଲୁଁ, ମାଉଁସ ଖାଇଦେଲୁଁ—"

"ଜାଣିଚୁ ତ ସବୁ, ବାରିକା, ସରିଗଲା ।"

"ଏବେ କ'ଣ କରିବା ? ବହାଘର, ମୁଁ ବାଇଦ ବଜେଇବି, ତୁମେ ନାଚିବ, କିଛି ନେବନାହିଁ ।"

"ଆରେ, ଖାଲି ବାଇଦ ବାଜିଲେ ବହାଘର ହୁଏ ବାରିକା ? ପିଲାପରି କହୁଚୁ !"

ସାଆଁଲ୍‌ର ଛାତିସା ବୁକ୍‌କେଶ୍ୱ (ବଗ) ଝିଁ ଝିଁ ହସୁଥିଲା ।

"ମୁଁ କୋଉଠୁ ପାଇବି ଅଡ୍‌ଡ଼ା ଭାଇ ।"

"ଉପାୟ ବତା ।"

"ସାଆଁଲ୍ ଗୋଟାଏ କାଠଗଣ୍ଡି ଉପରେ ବସିପଡ଼ିଲା । ଗାଲକୁ ହାତରେ ଚିପି ଦେଇ ଆଖିବୁଜି ଚନ୍ଦ୍ରାରେ କପାଳର ଚମକୁ କୁଞ୍ଚୁ କୁଞ୍ଚୁ କରି ସତେଯେପରି ଅଡ୍‌ଡ଼ାର ହୋଇ ଭାବିଗଲା ।

ଆଖି ଖୋଲିଲା, କହିଲା, "ଉପାୟ ଅଛି, କାହାଠୁଁ ମାଗିଯାଚି ତୋ ପାଇଁ ଯୋଗାଡ଼ କରିଦେବି, ପଛେ ମୋର ଫସଲ ପାଚିଲେ ଶୁଝିବ, ତୁ ମତେ ହେଇ

ତୋର ଯେ ବଳ ଝଣ୍ଟିକ ଦେଇ ଦେ, ସେଇଥିରେ ଫସଲ ପାଚୁଥିବ ଶୁଖୁଥିବ, ନହେଲେ ତୋ ପାଇଁ ବନ୍ଧାପଡ଼ିବ ।''

''ବଳ ଦେଇଦେବ ? ମୋ ଜମି ରୁ କଣ ଖାଇବୁ ?''

' ''ତୋ ଇଚ୍ଛା । ଧର୍ମକୁ ସାକ୍ଷୀ କରି ଜମିରୁ ମାଟି ଖଣ୍ଡେ ଆଣି ମୋ ହାତରେ ଦେବୁ । ମୁଁ ତାକୁ ରଖିଥିବି । ଦେଖ୍, ଏ ସୂର୍ଯ୍ୟ ଏବେ ବି ଅଛି । ତୁ କି ତୋ ପୁଅ ନାତି କି ତୋ ବଂଶର କେହି ମୋ ସଙ୍ଗରେ କଳି ଲଗିବେ ନାହିଁ, ଜମି ଛଡ଼େଇବେ ନାହିଁ । ମୁଁ ମଲେ ମୋ ପୁଅ ନାତି ଖାଉଥିବେ, ମୁଁ କି ସେମାନେ ଯାହାକୁ ଦେବେ ସେ ଖାଉଥିବେ । ଜମି ଦେଲେ ତୋର ଯିବ, ମୋର ହେବ ।''

''କେହି କେବେ ନିଜ ଜମି ଦିଏ ବାରିକା ? ଜମି ତ ନିଜ ସ୍ତ୍ରୀ ପରି ।''

''ସ୍ତ୍ରୀ ପରି ନୁହେଁ, ଝିଅ ପରି ଶୁଣ୍ ଅଡ଼୍ଡ଼ା ସ୍ତ୍ରୀ, ଜମିଟା ଘରରେ କ'ଣ ମଣିଷ ? ତୋ ହାତରେ ଟାଙ୍ଗିଆ ଥିଲେ ତତେ ଜମି ଅଭାବ ? ଗଛ ହାଣିଦବୁ, ବଣ ସଫା ହେବ, ମାଟି ତାଡ଼ିପକାଇବୁ, ଗୁହୁଁ ଗୁହୁଁ ଜମି ହେବ, ହୁଡ଼ ହେବ, କରୁଆ କେତେ ଫସଲ କରିବୁ । ପାରିବୁ ନାହିଁ ? ବାପ ପୁଅ ମିଶିଗଲେ କ'ଣ ନକରିପାରିବ ? ନହେଲେ ଏବେ ଦି'ମାଠିଆ ମଦ ଗୋଟାଏ ହଣ୍ଡା କୋଉଠୁ ପାଇବୁ ? ନହେଲେ ଟାଂଗ୍ରା ମୁଣ୍ଡାମାଝିକୁ ମାଗ୍ ।''

ଅଡ଼୍ଡ଼ା କହିଲା, ''ମୁଣ୍ଡାମାଝି ! ସେ କାଳର ସେ ଟାଂଗ୍ରା ଆଉ ଅଛି କେଉଁ ? ସେ ତ ଉପରେ ପଡ଼ି ସମସ୍ତିଙ୍କ ଦୁଃଖ ବୁଝୁଥିଲା, ପର ପାଇଁ କାମ କରୁଥିଲା !'' ଦୀର୍ଘଶ୍ୱାସ ପକାଇଲା, କହିଲା, ''ଏ ଖାଲି ଗଇତଙ୍କଠୁଁ ଜୁଲୁମ୍ କରି ଜିନିଷ ମଗେଇ ମଗେଇ ଆମୁକୁ ଝୁଣି ଖାଇସାରିଲାଣି । କଥା ପଦେ କହିଲେ ମହାକୋପ । ଗୋରୁ ଆଉ ସେ ରଖେଇ ଦଉଛି ? ଚାଷ କରିବା ପାଇଁ କେତେଟା ତାହାଠିଁ ଥିବେ, ଆଉ ସବୁ ତ ଝିକ ଝିକ ଖାଇଲା, ଦି ଦିନକୁ ତା'ର ପଟେ ଗୋରୁ ଲୋଡ଼ା ।''

''ସେ କ'ଣ ସବୁ ମାଉଁସ ଖାଉଛି ?''

''ଖାଉଛି, ଶୁଖେଇ ରଖୁଛି, ବାଣ୍ଟୁଛି ବି କଛି, ଗୋରୁ ତ ସଫା ହେଲେ !''

''ତେବେ ମୁଁ ଆଉ କ'ଣ କରିବି କହ ?''

ଅଡ଼୍ଡ଼ା କାନ୍ଧ ଗୁଲପଡ଼ିଲା । ଦି' ଖୋଜ ନଯାଉଣୁ ଫେରିଆସି କହିଲା, ''ସେଇଆ କର୍ ବାରିକା, ସେ ବଳ ଖଣ୍ଡ ଦୁ ନେ ।''

''ସତ କହୁଚୁ ?''

"ସତ, ଉପରେ ଧର୍ମ୍ମ, ତଳେ ଧର୍ତ୍ତିମା ।"

"ଧୂଳି ଟିକିଏ ଉଡ଼େଇ ଦେ ।"

"ହେଇ ଦେଖ୍ ।"

"ତୁ ଦେଖ୍, ସେ ଧୂଳି ଆଉ ତୁ ଗୋଟେଇ ପାରିବୁ ନାହିଁ, ଯୋଉ କଥା ହେଲୁ ତାକୁ ଆଉ ଲେଉଟେଇ ପାରିବୁ ନାହିଁ ।"

"ଜାଣିଲି ।"

"ସେ ଜମି ଉପରେ ମୋ ଆଗରେ ପୋଷେ ମଦ ଢାଳିଦେବୁ, ସେଠୁ ମାଟି ଟେଳାଏ ଉଠେଇ ମତେ ଦେବୁ । ଚାଲ୍ ଯିବା ।"

"ଚାଲ୍ ।"

ସୂର୍ଯ୍ୟ ବୁଡ଼ିଗଲା । କୁନ୍ଦ୍ରା ବୋବେଇଲା । ଜମି ଉପରେ ଅଉଡ଼ା ମଦ ଢାଳିଲା, ସାଆଁଲ ସଙ୍ଗରେ ନେଇଥିଲା ସାନ କୁଣ୍ଡିରେ ଟିକିଏ । ମାଟି ଟେଳାଏ ଉଠେଇନେଇ ତାକୁ ଧରେଇଦେଲା, ପୁଣି ଶପଥ କଲା ।

ସାଆଁଲ କହିଲା, "ତୁ ଯା, ଦ ଦନେ ମୁଁ କେଉଁଠୁ ଖୋଜ ଲୋଡ଼ ଆଣି ତୋ ପାଖରେ ପହଞ୍ଚାଇଦେବ ।"

ଅଉଡ଼ା ଗଲା । ସଞ୍ଜ ହେଉଥାଏ । ସାଆଁଲ ବୁକ୍‌କେଶ କାନରେ ଫୁସ୍ ଫୁସ୍ କରି କହିଲା ।

ବୁକ୍‌କେଶ କହିଲା, "ମୋର ଭଣେଇ କାନ୍‌କଟା କ'ଣ କହିବ ଭାବି ମତେ ଡର ମାଡ଼ୁଛି । କେଜାଣି କ'ଣ ଅଡୁଆ ହେବ !"

"କିଛି କହିବ ନାହିଁ । ଖୁସି ହେବ । ଏଇଆ ତ ଚାଲିବ ଏଣିକି ଲୋ, ଏଇଆ ଚାଲିବ । କିନପ ସରିଲା । ଏଣିକି ହେବେ ଜମି । ଜମି ସରିବ, ବନ୍ଧା ହେବେ ନିଜ ମୁଣ୍ଡ, ଗୋଡ ରହିବେ ଆମ ପାଖେ । ଅଡୁଆ କ'ଣ ?"

"କେଜାଣି ?"

"କିଛି ନାହିଁ । ଯା ଲକ୍ଷ୍ମୀ ଠାକୁରାଣୀ ପାଖେ ସଞ୍ଜ ଦେ, ଆଜି ବଡ଼ ସଳିତା ଦବୁ ।"

"କିଛି ଶୁଣିଲେ ମାରିପକେଇବେ । ତୁମେ ଜଣେ ଲୋକ, ସେମାନେ ଗାଁଯାକ, ଦେଶଯାକ ।"

"କନ୍ଧ ଧର୍ମ ରଖିବା ଲୋକ, କଥା ରଖିବା ଲୋକ, ସତ ରଖିବା ଲୋକ, ସେ ଅନ୍ୟାୟ କରିବ ନାହିଁ ।"

ଗୁଡ଼୍‌ଗୁଡ଼୍ ପାଖ ପାହାଡ଼ରେ ପାଇନ ଡମ୍ ବୁଝୋଉଥାଏ କୋଟଉ୍‌ଗଣ୍ଡା (ଗେଣ୍ଡ) ସୁଓସାଙ୍ଗାକୁ, ପଣସଗଛ ମୂଳେ,

"ତୋର ଏତେ ପଣସ ଗଛ ଥାଇ କ ଲୋଡ଼ାରେ ଆସୁଛୁ ସୁଓସାଙ୍ଗା ? ଫଳ ପାଚୁଛି, ସଡ଼ୁଛି, ତଳେ ଗଦାହେଉଛି, ପାଇଲେ ପାଉଛୁ ଯୋଡ଼ାଏ ମଞ୍ଜି, ସେଇଆକୁ ସାଇତ ରଖି ଖାଉଛୁ । ଗଛ ଯେତେ ଫଳ ଯେତେ ଝାଇଦେଇ ସେ କ'ଣ ସରିବାର ହୋଇଛି ସରିବ ?"

"ଠିକ୍ କଥା", ସୁଓସାଙ୍ଗା କହୁଲା, "ଶରଧାରେ ଗଛ ଲଗେଇଥିଲୁଁ । ବାପର ଯେତେ ଶରଧା ମୋର ବି ସେତେ ଶରଧା, ଫଳୁଛି ।"

"ଫଳୁଛି ତ, ତୁ ପାଉଛୁ କ'ଣ ? ମୁଁ ତତେ କହୁଛି, ତତେ ଗିଲାସେ ମହୁଲ ମଦ ଦେବି, ତା' ବଦଳରେ ତୁ ମତେ ଯୋଡ଼ାଏ ଲେଖା ଗଛ ଗ୍ରାଡ଼ଦେ, ବର୍ଷେ ତା ଫଳ ଖାଇବି । ତୋର ଡନ କୋଡ଼ି ଗଛ ଥିବ, ତୁ କୋଡ଼ିଏ ଦଶଗିଲାସ ମଦ ମୋଠୁଁ ପାଇଯିବୁ, ମାସେ ଖା, ପନ୍ଦର ଦିନରେ ଖା, ଏକାଦିନକେ ନେ, ତୋ ଇଚ୍ଛା । ତତେ ଆଉ ଗଛ ପାଖକୁ ଆସି ଦେଖିବା ପଡ଼ିବ ନାହିଁ, ଗଛରୁ ମାଙ୍କଡ଼ ଘୁଞ୍ଚେଇବାକୁ ପଡ଼ିବ ନାହିଁ, କିଛି ନାହିଁ । ତୁ ଘରେ ବସିଥିବୁ, ମଦତକ ପିଉଥିବୁ ।"

"ଆଉ ବେଶି ମଦ ଦବୁ ନାହିଁ ପାଇନ ?"

"ବେଶି ଗଛ ଥିଲେ ଦେବି । ଦୁଇ ଦୁଇ ପଣସ ଗଛକୁ ଗିଲାସେ ଲେଖା ଖାଣ୍ଟି ମଦ, ପାଣି ମିଶେଇ ପିଇଲେ ତ ଯ୍ବରଗିଲାସ ହେବ । ଯିବା, ବୁଲି ବୁଲି ସୁମାରି କରିବା, ଗଛରେ ଚିହ୍ନ ହାଣିଦେବି, ଗୋଟାଏ ଜାଗାରେ ତ ନାହିଁ, ଏ ଡଙ୍ଗରରେ, ସେ ଡଙ୍ଗରରେ, ଏ ନାଲ ପାଖେ, ସେ ନାଲ ପାଖେ, ଆଗ ପଛ ଜଗୁ ଜଗୁ ମୋର ପ୍ରାଣ ଯିବ ।"

"ତୁ ତହିଁରୁ କ'ଣ ପାଇବୁ ପାଇନ ?"

"ସେ ଫଳକୁ ତୋଳିବି, ସହରରେ ବୁହାଇ ନେବି ପଦା ଦେଶକୁ । ବେଶି ଭାଗ ତ ବାଟରେ ପଚିଯିବ । ଯାହା ବଳିବ, ଦେଖିବ ବଦଳେଇଲେ କେହି ପୋଷେ

ମାଣେ ସୁଢ଼ଲ ଦେବେ କି ନାହିଁ । କୋଡ଼ିଏ ଦଶ ଗିଲାସ ମଦ ବଦଳେଇଲେ ଯେତକ ସୁଢ଼ଲ ମିଳନ୍ତା ସେତକ ହେଲେ ମୋର ହେଲା, ଏଣେ ତୋର ବି ଉପକାର ହେବ, କିଛି ମିଳୁନାହିଁ ମଦ ହେଲେ ପିଇବୁ । ଆଉ ଶୁଣ୍, ତୋର କମଳା ଗଛ ବି ଅଛି ?"

"ଅଛି, ଫଳେ । ଖୁବ ମିଠା କମଳା ।"

"ବର୍ଷେ ଖାଇବାକୁ ଗୋଟାଏ କମଳା ଗଛ ମିଳିଲେ ଦେବ ଏକ ଗିଲାସ ମଦ ।"

"ସପୁରି ବାଡ଼୍ (ବାଗ) ଅଛି ତ ?"

"ଅଛି ।"

"ଏ ବାଡ଼ରେ ମାପ କରିବା, ତିନିକୋଡ଼ି ହାତ ଲମ୍ବ, ତିନିକୋଡ଼ି ହାତ ଓସାର ସପୁରି ବଣ ହୋଇଥିବ, ଫଳ ଫଳିଥିବ, ତେବେ ବର୍ଷେ ଖାଇବାକୁ ଦେ, ଦେବ—"

"କେତେ ?"

"ଦେବ ଦଶ ଗିଲାସ ମଦ ।"

"ହଳଦୀ ବାଡ଼ ଅଛି ।"

"ସେଇ ଏକା ଦାମ୍, ବର୍ଷେ ଖାଇଲେ ଦଶ ଗିଲାସ ।"

"କଦଳୀ ବାଡ଼ ଅଛି, କଞ୍ଚା ପାଚେଲା ।"

"ସେ ତ ଯାହାକୁ ଯେତେ, ସେଥିରେ ପୁଣି ବେଶି କାମ, ବଣ ସଫାକରି, ମାଟି ଟେକ, ଶୁଖିଲା ପତ୍ର କାଟ, ପିଲ ଝୋଡ଼, ଭଙ୍ଗା କାଟ, ଡିଗ ବାନ୍ଧ, ବହୁତ କାମ । ତବୁ ଯଦ ବଡ଼ ବାଡ଼ଟାଏ ହେଲେ ବର୍ଷେ ଖାଇବ ସୁରି ଗିଲାସ ଦେବ । ଦେଖ୍, ଦେଇଦେ, ଏ ଝିଙ୍କଟରୁ ଛାଡ଼ ପାଇବୁ, ସେତିକବେଳେ ଘରେ ହେଲେ ଶୋଇବୁ । ନହେଲେ କ୍ଷେତରେ କାମ କରିବୁ ।"

"ଆଜି ପଣସ ଗଛତକ ଦେବ, ଆ ସୁମାର କରିବା ।"

"ସୁନ୍ ।"

ସୁଓସାଙ୍ଗା ଦେଖାଏ, ପାଇକୁ ଚନ୍ଦ୍ରମାରେ, ଦହେଁ ଗଣନ୍ତି । ପୁଣି ଅନ୍ୟ ସ୍ଥାନକୁ ଗଲାବେଳେ ପାଇକୁ ସଙ୍ଖ୍ୟା ଗୋଳମାଳ କରି କହେ, "ଭୁ ମନେରଖୁନାହୁଁ ସୁଓସାଙ୍ଗା । ପାସୋର ଯାଉଛୁ", ସେ କହେ ।

ଗଛ ହେଲା ଶହେ ପଁଷଠିଟା, ଦଶଟା ଜାଗାରେ, ହିସାବ ଉଠିଲା ପାଞ୍ଚକୋଡ଼ି ତିନିଟା । "ତିନିଟା ଗଛ ଯେମିତ ହେଲେ ମାହାଲିଆ ଦେ ସୁଓସାଙ୍ଗା, ପାଞ୍ଚକୋଡ଼ି

ଗଛକୁ ଦ'କୋଡ଼ ଦଣ୍ଡଗିଲସ ମଦ, ବାପରେ, ମାଠିଆଏ ମଦ । କେତେ ଦାମ୍ ! ହଉ, କଥା ତ କରଛୁ, ନଷ୍ଟି ଲାଗିଲେ ଲାଗୁ ।''

''ଆଉ କମଳା, ସପୁରି, ହଳଦୀ, କଦଳୀ ?''

''କାଲିକ ଖାଇବାଚନ୍ଦ୍ର କହିବ ପାଇବୁ ।''

ଉଖ ପାହାଡ଼ ଉପରେ ଓଡ଼ାଲ୍‌କା ପାକୁ ଗାଁ, ଉତ୍ତରପଟେ ଆବୋଶ ରହିଛୁ ବଡ଼ ବଡ଼ ଗୋଟା ଗୋଟା ରୁକ୍ଷ ଲଣ୍ଡା ପଥର, ଗ୍ରହିଲେ ଲାଗିବ କେତେବେଳେ ଭୁଷ୍‌କକନା ଗଡ଼ପଡ଼ିବ ଗାଁ ବସ୍ତି ଉପରେ, ମଝିରେ ମଝିରେ ଆମ୍ବଗଛ, ପଣସଗଛ, କମଳାଗଛ, ଗ୍ଲାଇଗ୍ଲାକଥା ସ୍ଥଳ, ଘର ଆଗରେ ସାପେଇ ସାପେଇ ତଳକୁ ଗଡ଼ିଯାଇଛୁ ସରୁ ସରୁ ହୋଇ ଝରଣାର ଧାର ଧାର ପାଣି । ଖୋଲପଟେ ପଣସ ତୋଟା, ଆମ୍ବ ତୋଟା, ତଳକୁ ବହୁତ ମହୁଲ ଗଛ ।

ଗାଁ ମୁଣ୍ଡିଆଳ ଜନ୍ନାମାଝି ପଥର ଉପରେ ବସିଥାଏ, ଉପରର ଗଡ଼ିଯାଇଥାଏ । ବୈଶାଖ ସରିଆସୁଛି, ତାତ ବେଶି; କିନ୍ତୁ ତାତ ଏଠି ବାଧେନାହିଁ, ସବୁବେଳେ ଶୀତଳ । ଷାଠିଏ ବର୍ଷ ପାଖ ହେଲଣି, ବୟସର ହିସାବ ସେ ରଖେନାହିଁ । ବାଳ ପାଚ-ନାହିଁ, ଦାନ୍ତ ପଡ଼ିନାହିଁ, ଦେହଯାକ ପୁରୁଣା ଶିଆଳି ଗଣ୍ଠିପରି କରଡ଼ା ମାଂସପେଶୀ ଗୁରେଇ ହୋଇଛି । ଜନ୍ନାମାଝି ଭାବୁଥିଲା, ଏଭଳି ଅକାଳ ଏ ଗାଁକୁ କେବେ ପଡ଼ି-ନଥିଲା । ଯେବେ ଦେଖ ଘରେ ଘରେ ପୂରିଥିଲା ଶସ୍ୟ, ସୁଆଁ, ମାଣ୍ଡିଆ, କୋଳ୍ଥା, ଧାନ, କାନ୍ଦୁଲ, ମକା, ବାର୍‌ହି, ମୁଗ, କେତେକଣ, ଖାଇ ଖାଇ ବଳେ, ବର୍ଷ ବର୍ଷକୁ ରହେ, କେତେ ପୋକ ଖାଆନ୍ତି, ଆଉ କେତେ ଥାଏ—ବଦଳରେ ଜିନିଷ ଆଣିବାକୁ କନ୍ଧମାନେ ଯେତେବେଳେ ପଠାଉଥିଲେ ସେତେବେଳେ ଯାଏ, ନଅଣ୍ଟ ନଥାଏ ତ କେବେ ! କ'ଣ ହେଲା !

ମନେପଡ଼େ, ସେଦିନ ଆସିଥିଲେ ଡମ୍ବ, ଗଲା ମାଘ ମାସରେ । ପାଞ୍ଚଜଣ ଆସିଥିଲେ ସେମାନେ, ହେଇ ତଳେ ସେ ଡିପ ଦାଢ଼ରେ, ତା ତଳକୁ ଯେଉଁଠି ଗାଁର ଖଲାଗୁଡ଼ିକ, ଚଟା ପଥର ଲମ୍ବିଛି, ସେଠି ମହୁଲ ଗଛମୂଳେ ରୁଣ୍ଡ ହେଲେ, ବାନ୍ଧିଦେଲେ ଗୋଟାଏ ହଡ଼ା, ଦ'ମାଠିଆ ମଦ ଥୋଇଦେଲେ । ମାଣ୍ଡିଆ ପିଠା, କାନ୍ଦୁଲ ପିଠା, ସୋରିଷ ଅମଳ ଗ୍ଲୁଲଥାଏ, ଲୋକ ଲାଗିଥାନ୍ତି । ତା'ର ସବୁଠୁ ବେଶି ।

ତମ୍ବୁମାନେ ବାଇଦ ବଜେଇଲେ, ମହୁରି ଫୁଙ୍କିଲେ । ଦୌଡ଼ିଗଲେ ସେମାନେ ସମସ୍ତେ । ଚହ୍ଲା ହେଲେ । ତା ଭିତରୁ ଜଣେ, ବଡ଼ ମୁଣ୍ଡ, ମୁଣ୍ଡବାଳ ମଝିରୁ ଦ'ଭାଗ କରିଛି, ବାଳ ଲମ୍ବିଛି କାନ ତଳକୁ, କପାଳରେ ରକ୍ତପରି କ'ଣ ଲମ୍ବା ଗାର, ଖରି ପଡ଼ି ଜକ ଜକ ଦିଶୁଛି, ହାତରେ ଟିଡା କୁଟିଛି, କ'ଣ ଶୁଖିଲା ଲଟା ବାନ୍ଧିଛି । କହିଲା, "ମୋ ନାଁ ଖଜାନ୍ଟୁରି, ମତେ ଅଜଗର ଡାକନ୍ତି, ମୁଁ ଠାକୁରାଣୀର ପୋଷା କୁକୁର, ସେ ମନକଲେ ମତେ ମୋଟା ଅଜଗର ସାପ କରିଦିଏ, ମୁଁ ବଣରେ ଘୁମୁରି ଘୁମୁରି ବୁଲେ, ଯାହାକୁ କହେ ତାକୁ ମୁଁ ଗିଳେ, ସେ ଡାକଲେ ମୁଁ ଗୁଛା ଖଜାନ୍ଟୁରି ଡମ୍ । ଠାକୁରାଣୀ ଆଜ୍ଞାରେ ମତେ ଟିକିଏ ଟିକିଏ ସବୁକଥା ଜଣାପଡ଼େ । ଯେ ମତେ ନିଷ୍ଠାରେ ରହିବାକୁ ପଡ଼େ, ସବୁଦିନେ ଠନହାଣ୍ଡି ଗରମ ପାଣି ଗାଧେଇବ । ସକାଳେ ସନ୍ଧରେ ଝୁଣା ପୋଡ଼େଇ ଆଁ କରି ଧୂଆଁ ଶୋଷିବ, ମୋର ଦ'ଟା ଭାରିଯା, କିନ୍ତୁ ମୁଁ ମାଇକିନିଆଁ ଛୁଇଁବି ନାହିଁ । ଆଜି ଜାଣିଲି, ତୋର ଏଠି ଫସଲ ଅମଳ ହେଉଛି । ଠାକୁରାଣୀ କହିଲା, ଯା ସେଠି ଶରଧା କର୍, ସେଠି ମୋର ସେବକ ଅଛି, ଓ୍ୱାଞ୍ଜେଲଙ୍ଗା ଜନ୍ଦାମାଝି, ମୁଁ ଡାକଲେ ସେ ପାଲଟା ବାଘ ହୁଏ, ତୁ ଯେମିତି ପାଲଟା ଅଜଗର ହେଉ ସେମିତି । ଘରେ ଶୋଇଥିବ, ମୁଁ ଡାକ ମାରିବ, ତା ଭିତରୁ ତା'ର ଗୋଟେ ପ୍ରାଣ ମଶା ମାଛି ହୋଇ ଉଡ଼ି ଚାଲିଯିବ, ବଣକୁ ଆସିବ, ହେବ ବାଘ, ତୋର ଯେମିତି ହୁଏ ସେମିତି । ତା' ମଣିଷ ଦେହରେ ଆଉ ଗୋଟାଏ ପ୍ରାଣ ଥିବ, ସେ ମଣିଷ ଦେହ ପୁଣି ଉଠିବ, ବୁଲିବ, କେହି ଜାଣିପାରିବେ ନାହିଁ । ତା'ର ବାଘ ଦେହରେ କିଛି ଆଘାତ ହେଲେ ତା ମଣିଷ ଦେହରେ ବି ଘା' ହେବ, ଚିହ୍ନ ରହିବ, ବାଘ ଦେହ ମଲେ ମଣିଷ ଦେହ ମରିବ, ନହେଲେ ପୁଣି ଠାକୁରାଣୀ ହୁକୁମ୍ ଦେଲେ ବାଘ ଦେହ ଅନ୍ତର୍ଦ୍ଧାନ ହେବ, ସେ ପ୍ରାଣ ପୁଣି ତା' ମଣିଷ ଦେହରେ ମିଶିଯିବ । ସତ କି ନାହିଁ ?"

ଜନ୍ଦାମାଝି କାବା ହୋଇ ଖଜାନ୍ଟୁରି ଡମ୍ବର ମୁହଁକୁ ଅନାଇଁଲା, ତା ଆଖି ଜଳୁଥାଏ, ସତେ ତ, ଏମିତି ତ ଅଜଗରର ଆଖି । "ସତ ତ କହୁଚ, ମୁଁ ପାଲଟା ବାଘ ହୁଏ, ସେ ସବୁ ଜାଣେ !"

ଖଜାନ୍ଟୁରି କହିଲା, "ଠାକୁରାଣୀ କହିଲା ବାଘ ହୋଇଥିଲୁ, ତୋ ଡାହାଣ ପିଠିରେ କନ୍ଧମାନଙ୍କ ତୀର ବାଜିଲା, ଚଇତ ବେଣ୍ଟ ବେଳେ । ଦେଖେଁ ମୁଁ ସେ ଚିହ୍ନ । ମୁଁ ଅଜଗର ହୋଇଥିଲି, ମୋ ଲାଞ୍ଜରେ କନ୍ଧମାନେ ହାଣ୍ଡି ଥୋଇ ରାନ୍ଧିବସିଲେ, ପୋଡ଼ା ଦାଗ ହୋଇଗଲା, ମୋ ଡାହାଣ ଗୋଡ଼ ପେଣ୍ଡାରେ ଦେଖ୍ ପୋଡ଼ା ଦାଗ । ତୋର ବାଘ ଆଖି, ଜଳୁଛି ମୁଁ ଦେଖୁଛି, ତୋ ଚିହ୍ନ ଦେଖା ।"

ଜନ୍ଦାମାଝି ମାନିଲା, ତା ଡାହାଣ ପିଠିରେ କ୍ଷତଚିହ୍ନ ଥିଲା ।

ଖଜାଞ୍ଚୁର କହିଲା, "ବାଘ ଆଉ ଅଜଗର, ଆମେ ଖାଇ ଖାଇ, ଏକା ଠାକୁରାଣୀର କୁକୁର । ବାଘ ଅଜଗରକୁ ଖାଏନାହିଁ । ଲଢ଼ିଲେ ଦହେଁ ମରନ୍ତି । ବାଘ କାମୁଡ଼େ, ବିଦାରେ, ଅଜଗର ଭାଙ୍କୁଡ଼ିଲେ, ଗଛରେ ମୋଡ଼ି ହୋଇ ତା' ହାଡ଼ଗୋଡ଼ ଚୂନାକରେ । ଆମର ବିବାଦ ନାହିଁ । ମୁଁ ଶରଧା ହେବାକୁ ଆସିଲି । ଏମାନେ ମୋ ଲୋକ । ଏ ଗୋରୁଟା ଆଜ ହାଣିବା, ମାଉଁସ କରିବା, ଭୋଜି ଭାତ ଖାଇବା । ଏ ବଡ଼ ବଡ଼ ଘ ଘ ମାଠିଆ ମଦ, ଟାଣ ମହୁଲି ମଦ, ପିଅ, ବାଇଦ ବଜେଇ ନାଚ, ଗାଅ, ଫୂର୍ତ୍ତିକର ।"

"କାହିଁକି ଦବୁ ତୁ ? ମାଗେଣା ଦବୁ ?"

"ଖାଠିଏ ଖର ଜିନିଷ ଚୂହାଇଦେଲି ମାଟି, ଡହିଁରେ ଏତକ ହେଲା, ତୁ ମୋର ଶରଧା ଲୋକ, ପୂରା ଦାମ୍ ତୋଠୁଁ ନେବି ନାହିଁ, ମୁଁ ତ ଯାଚକରି ଦଉଚି । ମାଣ୍ଡିଆ କାନ୍ଦୁଲ ସୋରିଷ କରି ତୁ ଚାଲିଶ ଖର ଦବୁ, ବାକି କୋଡ଼ିଏ ଖର ମୋ ହାତରୁ ଯାଉ, ତୁ ମୋର ବନ୍ଧୁଲୋକ, ତୁ ବାଘକୁ ମୁଁ ଅଜଗର ।"

ସେ ନାହିଁ କରିପାରିଲା ନାହିଁ । ତା' ଗାଁ ଲୋକ ଖୁସି ହେଲେ । ହୋଇଥିଲା ସେଦିନ ସଞ୍ଜରେ ଗାଁରେ ଭୋଜି ଭଲ ଭୋଜି, ସେ ମଦ ନିଶାରେ ଗଡ଼ିଥିଲା, ସମସ୍ତେ ଗଡ଼ିଥିଲେ ।

"ଆଃ ! ସେ ସୁଖ !"

ଜନ୍ଦାମାଝି ମନେପକାଉଥାଏ । ତହିଁର କେତେଦିନେ ସେ ଅମଲ ସରିଗଲା, ଡମ୍ବ ଆସିଲେ, ଏ ଗାଁର କନ୍ଧ ବାହାରିଲେ, ଚାଲିଶ ଖର ଜିନିଷ ବୋହି ଚାଲିଗଲେ ପୀଡ଼୍କାମାହାଁ, ସେ ଡମ୍ବ ସେଇଠି ଥାନ୍ତି ।

ପୁଣି ଆସିଲେ ଡମ୍ବ, ଦେଖାଇଲେ ରଙ୍ଗରଙ୍ଗର ଖଦ, ଅଳଂକାର, ଶୁଖୁଆ, ମୁଆଁ, କେତେ ଜାତ ପଦାର୍ଥ । ଦେଲେ, ବଦଳରେ ଜିନିଷ ନେଲେ । ପୁଣି ଆସିଲେ, ପୁଣି ଦେଲେ, ନେଲେ । ସେହି ଜିନିଷ ଘରେ ଘରେ ପୂରିଚି ।

ପୁରୁଣା ଫସଲ ଥିଲା, ନୂଆ ଫସଲ ଥିଲା, ଫସଲ ଥିବାଯାକେ ବାରମ୍ବାର ମାଂସ, ସବୁଦିନେ ଟାଣ ମହୁଲି ମଦ । ଫସଲ ସରିଗଲା । କିନ୍ତୁ ସେ ମଦର ନିଶା ଭୁଲିହେଲା ନାହିଁ । ଡମ୍ବ ମାଗିଲେ ଫଳଗଛ ବନ୍ଧାଦିଅ, ବର୍ଷକୁ ଯୋଡ଼ାଏ ପଣସ ଗଛ ବନ୍ଧା ଦେଲେ ଥରେ ଦେବେ ଗିଲାସେ ମଦ, ଗୋଟାଏ କମଳା ଗଛକୁ ଗିଲାସେ, ସପୁରି ବାଡ଼ି, ହଳଦୀ କ୍ଷେତ, କଦଳୀ ବାଡ଼ି, କେଉଁଟା ପାଞ୍ଚ ଗିଲାସ, କେଉଁଟା ଦଶ ଗିଲାସ, ଆକାର ଦେଖି । ତଥାପି ଆହୁରି ମଦ ଆଣି ପିଆନ୍ତି କେବେ କେବେ, କହୁଛନ୍ତି, "ପିଉଥା, ହିସାବ

ରଖିଛୁଁ, ଫସଲ ପାଚିଲେ ଫସଲ ହେଲେ ଦେବ—ବେଶି ଯଦି ବଢ଼େ, ଶୁଝି ନପାରିବ, ଝଣ୍ଡେ ଖଣ୍ଡେ ଛାପ ଜମି ଗୁଡ଼ାଇଦେବ, କର ଖାଇବୁଁ ।

ସେମାନଙ୍କର ଦୋଷ କିଛି ନାହିଁ । ବଦଳକୁ ବଦଳ । ଜିନିଷ ଦେଲେ, ଜିନିଷ ନେଲେ । ମାହାଜନିଆ ନେଇନାହାନ୍ତି ।

କିନ୍ତୁ ଫସଲ ତ ସରିଲା ! ଦେଇ ନଥିଲେ, ସରି ନଥାନ୍ତା । ତମ୍ପୁଠୁଁ ଜିନିଷ ନେଇ ନଥିଲେ, ଦେଇ ନଥାନ୍ତେ । ତମ୍ପୁ ନଆସିଥିଲେ, ନୂଆ ଜିନିଷ ଦେଖାଇ ନଥାନ୍ତା । ତା ହେଲେ, ତମ୍ପୁର କ'ଣ ଦୋଷ ନୁହେଁ ? ଅଜଗର ହୋଇ ଗିଳି-ପକାଇଲା ।

ପୁଣି ଭାବୁଥାଏ, କି ଦୋଷ ସେ ତମ୍ପୁର ? ଜିନିଷ ଯଦି ଗିଳିଲା, ସେ ନେଇ ଥୋଇଲା କେଉଁଠି ? ପୀଡ଼ିକା ମାହାଁରେ ତମ୍ପୁ ବସ୍ତି ମନେପଡ଼ିଲା ଏବେ କେତେଥର ସେ ସେଠିକି ମଦ ଖାଇବାକୁ ଧାଇଁଯାଏ, ଥିଲେ ଦାଅନ୍ତି । ଅଜ୍‌ଗର କହେ, ମୋର୍ ମଇତର୍ ଆସିଛୁ । ତୁ ବାପକୁ ମୁଁ ଅଜଗର୍ । ଦେଖ୍ ମୋ ଘର ବୁଲି ବୁଲି । ନା ଭୂମି । ନା ବାଡ଼ି ନା ଫସଲ ନା କିଛି । ଲୁଚ୍ଛା ଘର, ପାଣି ହାଣ୍ଡି ।"

"ଆମଠୁ ଏତେ ଏତେ ଜିନିଷ ଆଣିଲୁ ଯେ, କଅଣ କଲୁ ?"

"ଆରେ ଆଣିଲି କ'ଣ ଘରେ ରଖିଲି ? ତୋ ପାଇଁ ଯାହାଠୁ ଝିଦ ଝଣ୍ଡେ ଆଣି ତତେ ଦେଇଥିଲି, ତୁ ଝିଦଟାକୁ ଦୁଇଭର ଜିନିଷ ଦେଲେ ଦୁଇଭରଯାକ ତାକୁ ବଢ଼େଇ ଦେଇଆସିଲି, କହିଲି, ଏତେ କଷ୍ଟ କଲି, ଝିଦ ବକେଇଲି, ଜିନିଷ ଆଣି ଦେଲି, ମୁଁ ତ' ଦିନ ବସି ଖାଇବି, ଖାଇବାକୁ ଖାଦ ଦେ, ଦେଲା ଦିନକର ଖାଦ । ତମକୁ ମଦ ଦେବ, ମଦପାଇଁ ମହୁଲ ମାଗିସିବ, ବଦଳରେ ଭରି ଭରି ଜିନିଷ ନେବେ । ଆମର କିଛି ଲଭ ନାହିଁ, ଯେତେ କାମ କଲେ ଯାହା ମିଳୁଛି ଓଳିଏ ଖାଇ ବଞ୍ଚିବା କଥା । ଭେକ କାକୁଡ଼ିର ଲୋକ ଆମେ, ତୁମର ସେବକ—ଗୁଳକର, ଠାକୁରାଣୀ ଦୟାରେ ବଞ୍ଚୁଛୁ ଜାଣ ।"

ସତେ ତ, ତା' ଘରେ ଧନର କି ଚିହ୍ନ ସେ ଦେଖି ଆସିଲା ? ଥିଲେ ଦେଖି-ନଥାନ୍ତା ସେ ! ଦୋଷ ଆମର, ମଦ ମାଉଁସ ଖାଇଲୁଁ, ନୂଆ ଜିନିଷ ଲୋଡ଼ିଲୁଁ; କିନ୍ତୁ ମନ୍ଦ କଲୁ କ'ଣ ? ଏ ଜୀବନ ଅଛି କାହିଁକି ? ସୁଖ କରିବା ପାଇଁ ତ ! ସୁଖ ହେଲା, ଖାଦ୍ୟ ସରୁ, ପୁଣି ମିଳିବ ।"

ଖୋଜିଲେ କନ୍ଦା ମିଳିବ, ବହୁତ ଗହୀରରେ ଥାଏ, ଖୋଳିବାକୁ ପଡ଼ିବ । ସେଇଠୁ ଆମ୍ବ ଝଡ଼ିବ, ଆମ୍ବ କୋଇଲିକୁ ଶୁଖେଇ ଛେଚି ଝୋଲରେ ବରୁରେଇ କଷା

ପାଣି ଗୁଳିଗଲେ ଜାଉକଣ ଖାଇହେବ । ପୁରୁଣା ଶଳପ ଗଛ କାଠକୁ ପିଟିଲେ ଧୂଳି ଝଡ଼ିବ, ସେ ବି ଜାଉହେବ, ଖାଇବାକୁ କେତେ ଉପାୟ । ପୁଣି ଡାଳ, ପୁଣି ବଣ ହଣାହେବ, ନୂଆ ଜାଗ ଭୂଇଁ ବାହାରିବ ।

ଆଜ ସେ ପୀଡ଼୍‌କାମାହାଁ ଯିବ । ସେଥି ମଦରୁ ଟୋପିଏ ଦରକାର ।

ଗାଁ ମୁଣ୍ଡିଆଳ, ହୋଇଥାଉ ତା ପଦବୀ ସାଓଁତା କ ମାଝି, ଜାନି—ଯେ ଦେବଦେବୀଙ୍କୁ ପୂଜାକରେ, ସବୁ ପୂଜାପାର୍ବଣ ଅନୁଷ୍ଠାନ କରେ, ପୁରୁଣା ଇତିହାସ ଜାଣେ ଓ ଦୈବୀଶକ୍ତିଙ୍କ ସଙ୍ଗେ ସମ୍ବନ୍ଧ ରଖେ, ଦଶାରି—ଯେ ପୂଜାରେ ଜାନିର ସହକର୍ମୀ, ପୁଣି ଗ୍ରହ ନକ୍ଷତ୍ରଙ୍କ ସ୍ଥାନ ଗଣ୍ଡି ଗଣ୍ଡି ଯୋଗ ମୁହୂର୍ତ୍ତ ବତାଏ, କେଉଁ କାମପାଇଁ କେଉଁ ବେଳ, ଆଗତ ଭବିଷ୍ୟ କଥା କହେ, କନ୍ଧ ଗାଁରେ ଏମାନେ ସବୁଠୁ ମାନଡା ଲୋକ, ଏ ତିନିହେଁ ଓ ଗାଁର ବଡ଼ ବଡ଼ ରଇତ ଏକାଠି ବସିଲେ ସେ ଗାଁ ପଞ୍ଚାୟତ ।

ଗାଁର ତ୍ରିମୂର୍ତ୍ତିଙ୍କ ଉହାଡ଼ରେ ଆଉଜଣେ ସେ ଗାଁ ସମାଜର ମାନଡା ମଣିଷ—ବେଜୁଣୀ । ସେ କୌଣସି ସ୍ତ୍ରୀଲୋକ, ତାକୁ କାଳିସିଲାଗେ, କୌଣସି ଦେବତା କି କାହା ପୂର୍ବପୁରୁଷ ତା ଦେହରେ ଯେତେବେଳେ ଉପସ୍ଥିତହୁଏ, ତା ପାଟିବାଟେ କଥା କହେ, ଗାଁ ଲୋକଙ୍କୁ କି କୌଣସି ଜଣକୁ କୌଣସି ଆଦେଶ ଦିଏ, କ'ଣ ମାଗେ, କେତେବେଳେ ଆକଟେ, ତରାଏ, ଭବିଷ୍ୟତ୍ କଥା କହେ । ସାଧାରଣ ହୋଇ ବି ବେଜୁଣୀ ଅସାଧାରଣ, ସେ ଦେବତାମାନଙ୍କ ସଙ୍ଗେ କଥାଭାଷା ହୁଏ ।

ଏପରି ଭାବନ୍ତି ଗାଁ ଲୋକେ, ତେଣୁ ଯେତେବେଳେ ବେଜୁଣୀକୁ କାଳିସିଲାଗେ, ସେ ନାଚେ, ବାୟାଣୀ ପରି ଭୂଣ୍ଡୁରୁ ଭୂଣ୍ଡୁରୁ ହୁଏ, ଗୀତ ବୋଲେ, ରଡ଼େ, ଘା ମୁହଁ ତା' ମୁଣ୍ଡ ଆମ୍ଭୁଡ଼ି ପକାଏ, ଝୁଣା ଧୂଆଁ ପିଏ, ଦାଣ୍ଡେ ବାଣ୍ଡେ ଦୌଡ଼େ, ତାକୁ ଲୋକେ ଲମ୍ବ ଲମ୍ବ ହୁଅନ୍ତି, ଡରନ୍ତି, ତା କଥା ମାନନ୍ତି । ଯେ କୌଣସି ପୂଜାହେଲେ ବେଜୁଣୀକୁ ଡକାହୁଏ, ସେ ଅବତରେ, କାହା ଘରେ କେହି ବେମାର ପଡ଼ିଲେ ଲୋକେ ବେଜୁଣୀକୁ ପଚାରନ୍ତି, କାହିଁକି ହେଲା ? ସେ ମନ୍ତ୍ର ପଢ଼େ, ମୁଣ୍ଡ ଝାଙ୍କି ଝାଙ୍କି ନିଜକୁ କାଳିସି ଲଗାଏ, ତା'ପରେ ଯେଉଁ ଦେବତା କି ପିତୃପୁରୁଷ ରୋଗ କରାଇଥାଏ ସେ ବେଜୁଣୀ ତୁଣ୍ଡରେ ଆତ୍ମପ୍ରକାଶ କରେ । ବେଜୁଣୀ ପ୍ରଧାନ ହୋଇଥାଏ ଜଣେ; କିନ୍ତୁ ତା ପଛରେ ତା' ସାଙ୍ଗକୁ ଅନ୍ୟାନ୍ୟ ସ୍ତ୍ରୀଲୋକ ବି କେତେ କେତେ-ବେଳେ ବେଜୁଣୀ ପରି କାଳିସି-ଲଗି ହୁଅନ୍ତି, ସେ ଯାହା କହେ ସେଇଆ କହନ୍ତି । ତା' ଭିତରୁ କେହି କେହି ବେଜୁଣୀ ବୋଲି ସ୍ୱୀକୃତ ପାଆନ୍ତି, ଗାଁରେ ବେଜୁଣୀ କାମ ତୁଲାନ୍ତି ।

ବେକୁଣୀ ପଞ୍ଚାଏତ୍ରରେ ବସେ ନାହିଁ, ସେ ମାଗଣି ଲୋକ, ନିଜ ଘର ଧନ୍ଦା କରେ; କିନ୍ତୁ କାଲିଣି ହୋଇ ସେ ଯାହା କହିଦେବ, ଗାଁ ଲୋକେ ତା' ମାନିବାକୁ ବାଧ, ଗାଁ ମୁଣ୍ଡିଆଳର ସେଠି ଭୂମି ନାହିଁ ।

ଏମିତି ଚଳୁଥିଲା କନ୍ଧ-ସମାଜ । ସୀମିତ କ୍ଷମତାପନ୍ନ ଲୋକଙ୍କ ଗୋଷ୍ଠୀ ପଛଆଡ଼େ ଠିଆହେଲା ନୂଆହୋଇ ଆଉ ଜଣେ, ସେ ଗାଁର ଡମ୍ବ ବାରିକ୍, ତା' ପଦ ସେବକର ସତ; କିନ୍ତୁ ସେ ହେଲା କନ୍ଧର ମନ୍ତ୍ରଣାଦାତା, ବୁଦ୍ଧିଦାତା—ଆଉ ନୂଆ ଦୁନିଆଁ, ନୂଆ ଜିନିଷ, ନୂଆ ଚଳଣି ସଙ୍ଗେ ସମ୍ପର୍କର ଏକମାତ୍ର ବାଟ, କଥା କହି କହି ସ୍ୱପ୍ନ ଗଢ଼ିଦେବ, ମନକୁ ଓଟାରିବ ନୂଆ ସୁଖ ଆଡ଼କୁ, ତାକୁ ମେଣ୍ଟାଇବାକୁ କହିଲେ, —ଜିନିଷ ବଦଳ ଦେଲେ ନୂଆ ଜିନିଷ ଆଣି ଯୋଗାଇବ ।

କ୍ରମେ, ଖାଲି ନୂଆ ଜିନିଷ ବୋଲି ନୁହେଁ, ସତେ ଯେମିତି ଯୋଗାଣ ବିଭାଗ ଓ ଜନସଂପର୍କ ବିଭାଗ କାମ ଗାଁର ପ୍ରତିଲୋକ ପାଇଁ ସେ ମୁଣ୍ଡକୁ ନେଇଛି । କମିସନ ନିଏ କିଛି, ସେ କଥା ଭିନେ । ଜଣେ ରଇତ ପାଇଁ ଦଶଜଣ ରଇତଙ୍କୁ ବୁଝେଇ କହିବ, "ଭାଇମାନେ, ଶୁଣ—।" କହିବ ଯାଇ ଗାଁ ମୁଣ୍ଡିଆଳକୁ, "ତା' କଥା ଠିକଏ ବୁଝ ।" ମୁଣ୍ଡାମାଝିର ବାରିକବାଟେ କୁହାଇବ ମୁଣ୍ଡାମାଝିକୁ, "ବୁଝ ଠିକଏ, ନ ବୁଝିଲେ ଚଳିବ ନାହିଁ ।" କଥା ପକାଇବ ଅଷ୍ଟମୁଣ୍ଡାମାଝି ମଣ୍ଡଳ ବସିଥିଲାବେଳେ, ସେଠି ମୁଣ୍ଡାମାଝିମାନେ ମଦ ପିଇ ଢୁଲୋଉଥିଲାବେଳେ, ପାଟି କରୁଥିଲାବେଳେ, ନିଜ ନିଜ ଗାଁର ସ୍ୱାର୍ଥ ବିଷୟରେ ବାରିକ୍ ବାରିକ୍ ଭିତରେ କନ୍ଧଭାଷାରେ ଘୋର କଳିକଜିଆ, ସେଇଟା ତ କନ୍ଧ ଶୁଣନ୍ତି ଓ ବୁଝନ୍ତି, ପୁଣି ଓଡ଼ିଆରେ ସେ ଡମ୍ବମାନେ କ'ଣ କୁହାକୋହି ହେଲେ ନବୁଝନ୍ତି ତା ।

ଆଉ ଗତ ପଡ଼ିଯାଇଥିଲା, କନ୍ଧ ଗାଁରେ ଗାଁ କାମପାଇଁ ଯେତେ ଭେଦା ଅସୁଲ କରାଯିବ, ପୂଜା ପାଇଁ କି ଭୋଜି ପାଇଁ ଘରୁ ଘରୁ ଯାହା ଆସିବ, କୁହାପୋଛା କରି ଠୁଳ କରେଇବ ସେହି ଗାଁ-ବାରିକ୍, ଲୋକଙ୍କୁ ଏକାଠି କରିବାକୁ ଡାକିବାକୁ ଯିବ ବି ସେ ଜଣେ ଲୋକ, ଯେ ଯେଉଁଠି ଥାଉ, ଅନ୍ୟ ଗାଁକୁ ଖବର ନେ-ଆଣ କରିବାକୁ ସେ ପଠିଆ ହେବ ।

ଗାଁର ହେଉ, କୌଣସି ଲୋକର ହେଉ, ସବୁ ପୂଜାରେ ସେ ଠିଆହୋଇଥିବ, ସବୁ କମିଟି ପଙ୍ଗରେ । ପଦାରୁ ଯାହା ଯାହା ଜିନିଷ ଆସିବ, କେତେବେଳେ ଚୋରୁ ମଇଁଷି, କେତେବେଳେ ଛେଳି, ଘୁଷୁରି, କୁକୁଡ଼ା କି ପାରା, ଗାଁରେ ନଥିଲେ ସେ ଆଣିଦେବ, ଦାମ୍ ତ ନେବ ହିଁ ନଗଦ ନେବ ନହେଲେ କାଳରେ ଆଣିଦେଲେ କଳନ୍ତର ସହିତ ନେବ; କିନ୍ତୁ ଆଣିଦେବା ଦାୟିତ୍ୱ ସେ ନିଜେ ମୁଣ୍ଡକୁ ନେଇଛି ।

କାହାର କିଛି ଦରକାର ପଡ଼ିଲେ ସେ ବି ଧାଏଁ ବାରିକ୍ ପାଖକୁ, ବାରିକ୍ ଯୋଗେଇଦିଏ, ଦାମ୍ ନିଏ ।

ଡେଣ୍ଟୁ ଏ ଡାକେ—"ବାରିକ୍, ଶୁଣ୍ ଶୁଣ୍ ।"

ସେ ଡାକେ—"ବାରିକ୍, ଶୁଣ୍ ଶୁଣ୍ ।"

ନିଜେ ଯାହା କମାଏଁ ସେ ତ ଭିନେ କଥା, ଗାଁର ଯେ ଯାହା ଆମଦାନି କରେ ସେ ବାରିକ୍‌କୁ ବି କିଛି ଦିଏ, ସେ ସମସ୍ତିଙ୍କର ସେବକ ବୋଲି ।

କେଉଁ ଗାଁରେ ସେ ଏକୁଟିଆ ଜଣେ ଡମ୍ବ, କେଉଁଠି ତାକୁ ସାହାଯ୍ୟ କରିବା ଭଳି ଅନ୍ୟାନ୍ୟ ଡମ୍ବ ଅଛନ୍ତି । ଦାପ୍ରିନ୍ତି ନିଏ ସେ, ଲୋକ ବରଗେ, କାମ ବାଣ୍ଟିଦିଏ ।

ସାଓଁତା, ଜାନି, ଦିଶାରି, ବେଜୁଣୀ ଏମାନେ ଗୁରିହେଁ ତା ଉପରେ ବେଶି ଖୁସି । ସେ ସେମାନଙ୍କ ହାତବାରିସି, ଉପରେ ପଡ଼ି ସେମାନଙ୍କ ଖବର ବୁଝେ । ସେ ସମସ୍ତିଙ୍କୁ ସେ ଆଣିଦେଇଛି ଉପଯୁକ୍ତ ଉପହାର, ସେଥିପାଇଁ ଦାମ୍ ମାଗିନାହିଁ । ବେଜୁଣୀର ରଙ୍ଗ ରଙ୍ଗ ଖଣ୍ଡୁଆ, ବାଲମୁକୁଲା କରି ନାଚିଲାବେଳେ ଶୋଭାପାଏ, ସେମିତି ବେଜୁଣୀ ବେକର ନାଲି ନାଲି ମାଳି । ଆଗେ ବେଜୁଣୀର ବୋଲି ବିଶିଷ୍ଟ ପୋଷାକ ନଥିଲା, ଏବେ ଗାଏଁ ଗାଏଁ ସେହି ଏକା ପ୍ରକାର ପୋଷାକ, ବାରିକ୍‌ର ଭେଟି ।

ଆଉ, ବେଜୁଣୀମାନେ କାଲିଶି ଲାଗିଲାବେଳେ ଦେବତାମାନେ ତାଙ୍କ ତୁଣ୍ଡରେ କେତେଥର କହିଲେଣି, "ଆମ ଆଦେଶରେ ଡମ୍ବମାନେ ଏ ଦେଶକୁ ଆସିଛନ୍ତି । ସେମାନେ ବାରିକ୍—ସେବକ, ଥିଲେ ସିନା ଭଲ", ଆଉ ଡମ୍ବମାନେ ତାଙ୍କ ଆଗରେ ଲମ୍ବ ଲମ୍ବ ହୋଇ ଗୋଡ଼ତଳେ ପଡ଼ି କହନ୍ତି, "ମା' ଗୋ, ମା' ଠାକୁରାଣୀ, ମା' ଡଙ୍ଗରସଣୀ, ମା' ଦୁଆରବୂଲି, ମା' ବାରବୂଲି, ମା' ଲକ୍ଷ୍ମୀ, ମା' ଧର୍ତ୍ତନି, ଆମକୁ ଦୟା ରଖିଥା ଗୋ ମା', ଏ ଗାଁକୁ ଦୟା ରଖିଥା। "

ଗୁଡ଼୍‌ଡ଼ୁଡ଼ି ଗାଁରେ ଜଗ୍‌ବେଣୀ ହୋଇଥିଲା ଏସୀ ବୁଢ଼ୀ । କାନ୍‌କଟା ତାକୁ ରଙ୍ଗଲୁଗା ଦେଇଥିଲା, ରଙ୍ଗମାଳି ଦେଇଥିଲା, ମନ୍ଦାର ଡାଳ ଆଣି ତା ବାରିରେ ପୋତି ଗଛ କରାଇଥିଲା, ଫୁଲ ଫୁଟାଇଥିଲା । ଜ୍ୟୈଷ୍ଠମାସରେ ଦିନେ ଗୋବୁବାହୁଡ଼ା ବେଳ ପାଖ, ବଡ଼ ବଡ଼ ଦାନାଥିବା ନାଲି ମାଳି ସରିଏ ଆଣି ବେଜୁଣୀକୁ ଦେଲା । ବେଜୁଣୀ ଭାରି ଖୁସି ହୋଇଗଲା । ବେଜୁଣୀ କୁପ୍ଳିଆଡ଼ୁ ଫେରୁଥିଲା, ଅଟକଯାଇ କଥାଭାଷା ହେଉଥାଏ ।

କାନ୍‌କଟା କହିଲା, "ଏ ଖଣ୍ଡ ମଣ୍ଡଳରେ ତୋ ପରି ବଦ୍ୟା ଜାଣିବା ବେଜୁଣୀ ଆଉ କେହି ନାହିଁ, ମୁଁ ତ ଘୂରିଆଡ଼େ ବୁଲୁଛି, ମୁଁ ସବୁ ଦେଖୁଛି । ହକ୍‌ଡୁକୁଟି ମାଝି

କାହାପାଇଁ ମୁଣ୍ଡାମାଙ୍ଖି ହେଉଛ ? ଦେବତାମାନଙ୍କୁ ତୁ କହିକରି କରାଇଦେଇଛୁ ବୋଲି ତ ? ଏ ଗାଁ ଲୋକେ ଭଲରେ ଅଛନ୍ତି କାହା ଯୋଗୁଁ ? ଦେବତାମାନଙ୍କୁ ତୁ କହିକରି ସବୁ ଭଲ କରାଇଦେଲୁ ବୋଲି ତ ?''

ଏସୀ ବୁଢ଼ୀର ଟାକୁଆ ଗାଲରେ ହସ ଖେଳିଗଲା ।

କାନ୍‌କଟା କହିଲା, ''ଗୋଟାଏ କଥା ପଗୁରିବି ବେଜୁଣୀ, କାଲି ରାତିରେ ଗୋଟାଏ ସପନ ଦେଖିଲି । ତତେ ଦେଖିଲି । ତୁ ରଙ୍ଗ ଲୁଗା ପିନ୍ଧିଥିଲୁ, ଓଢ଼ି ହୋଇଥିଲୁ, ତୋ ବେକରେ ଏମିତି ନାଲି ମାଳଟାଏ ପଡ଼ିଥିଲା, ତତେ ଦେଖିଲି ।''

''ସତେ !''

''ସପନରେ ମୋ ଆଗରେ ଠିଆହେଲୁ ତୁ, ଆଉ ଗୁହୁଁ ଗୁହୁଁ କେମିତି ବଦଳିଗଲୁ, ଧାଂଙ୍ଗିଟିଏ ହୋଇଗଲୁ । ଏଡ଼େ ସୁନ୍ଦର ! ଏଡ଼େ ସୁନ୍ଦର !''

''କ'ଣ ତୁ କହୁଚୁ ?''

''ଦେଖିଲି । ତୋ ମୁହଁ ଜିକଜିକ ଦିଶୁଥାଏ, ତୋ ମୁଣ୍ଡବାଳ ପିଠିତଳକୁ ଲମ୍ବିଥାଏ, ତୁ କଳାଶାଢ଼ି ପିନ୍ଧିଥିଲୁ, କପାଳଯାକ ସିନ୍ଦୂର, ତୋ ବେକରେ ଫୁଲହାର, ତୋ ହାତରେ ଏଡ଼େ ଝଣ୍ଡା, ମୁଁ ତ ଲମ୍ବହୋଇ ତଳେ ଲୋଟିଗଲି । କହିଲି, ରକ୍ଷାକର ମା' !''

''ସେଇଠୁ ?''

''ତୁ କହିଲୁ, ଏ ଗାଁଲୋକ ଆମ ଦେବତାମାନଙ୍କୁ ଠକୁଛନ୍ତି । ଆମେ ଏତେ ଦେବତା ଅଛୁଁ, ପୁଣି ବୁଢ଼ି ଅଛନ୍ତି, ଗଙ୍ଗୀ ଅଛନ୍ତି, ଆମର ବଳି ଦରକାର, ହେଲେ ଆମେ ମଣିଷକୁ, ତା' ପିଲାଛୁଆଙ୍କୁ, ତା ଜନ୍ତୁଜାନ୍ତୁଙ୍କୁ ବେମାର୍ କରୁଁ । ମଣିଷକୁ କାଙ୍ଗାଲ୍ କରୁଁ, ତା' ଗୋଡ଼ରେ କଣ୍ଟା ଫୁଟେ, ବଣରେ ତା' ଦେହରେ ଲଟା ଛନ୍ଦି ହୁଏ, ବାଘ ମାଡେ, ବର୍ଷା ଉଣା ହୁଏ, ଘରେ ନିଆଁ ଲାଗେ, ମଣିଷ ଗୋରୁ ମରନ୍ତି, କିଏ ନଜାଣେ ?''

ବେଜୁଣୀ କହିଲା, ''କିଏ ନଜାଣେ ? ସମସ୍ତେ ଜାଣନ୍ତି ।''

''ତୁ କହିଲୁ, ମଣିଷ ଦେହ ବଥା ହୁଏ, ଗ୍ରୁଡ ଭିତରେ ପିଠି ଭିତରେ କୁଆଡ଼ କୁଆଡ଼ର କଣ୍ଟା, ବାଳ, ଗୋରୁ ମଇଁଷି ହାଡ଼, ଝିପରା, ଗୋଡ଼ ପଶିଯାଏ, ମଣିଷ ଜାଣି ପାରନ୍ତି ନାହିଁ ।''

''ସତ ତ !''

କାନ୍‌କଟା କହିଲା, ''ଏତେ ଜାଣିଶୁଣି ଗାଁ ଲୋକ ଆମ୍ଭକୁ ଠକୁଛନ୍ତି । ପୂଜା ଦେଲାବେଳେ ସିନା ଗୋରୁ ମଇଁଷି ବଳି ପକାନ୍ତେ, ଦଉଛନ୍ତି ସାନ ସାନ ଛେଳି

ଘୂମୁରି, ପାଗ, କୁକୁଡ଼ା, କୁକୁଡ଼ା ଡିମ୍ବ ବଳିଦେଇ କାମ ଚଳେଇନେଉଛନ୍ତି । ଏଣିକି, ଆମେ ବି ତାଙ୍କୁ ଠକିବୁଁ । ଖାଦ୍ୟ ସରିଯିବ । ବେମାର ପଡ଼ିବେ । ମରିବେ । ମୋ କଥା ଫିଟିବ ନାହିଁ, ମୁଁ ଚୋଙ୍କା, ତୁ ଝଣ୍ଡା ଉଙ୍ଗେଇଲୁ । ଉଭେଇଗଲୁ । ମୁଁ ଦେଖିଲି ତୁ ଏବେ ଯେମିତି ସେତେବେଳେ ବି ସେମିତି ଠିଆହୋଇଛୁ । ଖାଲି ତୋ ଆଖି ଦି'ଟା ଜଳିଲା ପରି ଦିଶୁଛି ।"

ବେଜୁଣୀ କହିଲା, "କ'ଣ କହିଲ ? ମୁଁ ଚୋଙ୍କା ! ମୁଁ ଚୋଙ୍କା !"

ବେଜୁଣୀର ମୁହଁ, ଆଖି ଅସ୍ୱାଭାବିକ ପ୍ରକାରେ ଭୟଙ୍କର ହୋଇଗଲା, ସେ ଥରିଗଲା, ନଇଁପଡ଼ି ତିନିଥର ଭୂଇଁରେ ଯୋଡ଼ା ପାପୁଲି ମାଡ଼ି ଓଠରେ ଓ କପାଳରେ ଲଗାଇଲା, ବଡ଼ବଡ଼ ହେଲା, "ମା' ଚୋଙ୍କା ! ମା' ଧରିତ୍ରୀ ! (ଧରଣୀ) ତୁ ଦୋଷ କ୍ଷମା କର୍ ।"

ବାଗିକୁ କହିଲା, "ଏ ସପନର ଅର୍ଥ ତୋର ଜାଣିବା ଲୋଡ଼ା ନାହିଁରେ ବାଗିକ୍, ଏତିକି ଜାଣ୍, ତୋର ସବୁ ଭଲ ହେବ, ସ୍ୱାଠ୍ ଭଲ ସପନ ତୁଟା ମଣିଷ ଜନମ ପାଇ ଆଉ କଣ ଦେଖିଥାନ୍ତୁ ? ଭଲ ହେବ ଯେ, ଗୋଟିଏ କଥା କରିବୁ, ନହେଲେ ଭଲ ହେବ ନାହିଁ ।"

"କି କଥା ବେଜୁଣୀ ?"

"ଏ ସପନ କଥା କାହାରିକି ଆଉ କହିବୁ ନାହିଁ । ତୋ ଘରଯାକୁ ବି କହିବୁ ନାହିଁ ।"

"ମୋର କି ଭଲ ହେବ ?"

"ଆରେ, ତୋର ପୁଅ ହେବ, ତୁ ଗାଈ ଗୋରୁ ରଖିବୁ, ଜମି ଚାଷ କରିବୁ, ତୋର ସମ୍ପଦ ମାଡ଼ିଯିବ ।"

ବେଜୁଣୀ ଚାଲିଗଲା । କାନ୍‌କଟା ବି ଭାବି ଭାବି ଗଲା—ମିଛରେ ସେ ଫାନ୍ଦ ଫାନ୍ଦ ସ୍ୱପ୍ନଟିଏ ଗଢ଼ିଥିଲା, ବେଜୁଣୀ ବିଶ୍ୱାସ କଲା, ଏ କନ୍ଧମାନଙ୍କୁ ଯାହା କହିବ ବିଶ୍ୱାସ କରିବେ, କେହି ମିଛ କହିପାରେ ସ୍ୱା ଯେପରି ସେମାନଙ୍କ କଳ୍ପନାତୀତ । ସେ ଖୁସିହେଲା, ତା ଔଷଧ ଧରିଛି ।

କିନ୍ତୁ ବେଜୁଣୀ ତାକୁ ଯାହା କହିଲା ? ସେ ନିଜେ କହିବା କଥା ମିଛ, ତେଣୁ ତା' କଥାର ଉତ୍ତର ସ୍ୱରୂପ ବେଜୁଣୀ ଯାହା କହିଲା, ତା ମିଛ ହେବ । କିନ୍ତୁ ବେଜୁଣୀ ତା' ପାଇଁ ସୌଭାଗ୍ୟ କଥା କହୁଛି, ତା' କେବେ ମିଛ ହୋଇପାରେ ଏଭଳି ବିଶ୍ୱାସ ତା'ର ହେଲା ନାହିଁ । ନିଜର ସୌଭାଗ୍ୟସୂଚକ ଭବିଷ୍ୟତ୍ ବାଣୀ କଥା ଭାବି ଭାବି ସେ ଭାବିଲା—"ବେଜୁଣୀ ଭବିଷ୍ୟତ୍‌କୁ ଅନାଇଁ ମୋ ଭାଗ୍ୟକଥା କହୁଛି ।

ଯେତେବେଳେ ସେ ବେଜୁଣୀ, ସେମାନଙ୍କର ଅଦ୍‌ଭୁତ ଶକ୍ତି ଥିବ, ତା' କଥା ମିଛ ହୋଇନପାରେ ।'' ସେ ଖୁସି ହୋଇ ଚାଲିଗଲା ।

ତହିଁ ଆରଦିନ ମୁଣ୍ଡେ ବେଳ ନହେଉଣୁ କନ୍ଧ ଗାଁରୁ ବେଜୁଣୀର କଳକଳା ରଡ଼ି ଶୁଭିଲା । ଲୋକେ ଧାଇଁଲେ । ବେଜୁଣୀ ବାଳମୁକୁଳା କରି ଡରଡର ହୋଇ ମୁଣ୍ଡକୁ ଆଗକୁ ପଛକୁ ବାଁକୁ ଡାହାଣକୁ ଝାଙ୍କୁଥାଏ, ଥରୁଥାଏ, ବଡ଼ବଡ଼ ହେଉଥାଏ, ମଝିରେ ମଝିରେ ରଡ଼ି ଛାଡ଼ୁଥାଏ । ଧୂପ ଥୁଆହେଲା, ବେଜୁଣୀ ହୁଁଣା ଧୂପ ପିଇ-ଯାଉଥାଏ । ତା'ପରେ ସେ ନାଚିଲା, ଦଉଡ଼ିଲା, ତା' ସଙ୍ଗରେ ଅନ୍ୟ କେତେଜଣ ସ୍ତ୍ରୀଲୋକ ନାଚିଲେ, ଦୌଡ଼ିଲେ, ଡମ୍ବମାନେ ବାଜା ବଜାଇଲେ, ଗାଁ ଲୋକେ ଗୋଡ଼ତଳେ ପଡ଼ିଲେ । ବେଜୁଣୀ ରଡ଼ିଛାଡ଼ିଲା,

"ଶୁଣ୍‌ରେ ଉକ୍‌ଡ଼ୁକୁଟି ମୁଣ୍ଡାମାଝି, ଶୁଣରେ ଗାଁଲୋକେ, କନ୍ଧ ଲୋକେ, ପୁରୁଷମାନେ, ସ୍ତ୍ରୀଲୋକମାନେ, ଚିହ୍ନିଲ ମତେ ? ମୁଁ ଟାକ୍ରି, ମୁଁ ଧର୍‌ତ୍ରୀ (ଧରଣୀ)'' ତା'ପରେ ମଝିରେ ମଝିରେ କଥା ଅସମ୍ପୂର୍ଣ୍ଣ ରଖି, ଉଦ୍‌ବେଗ ବଢ଼ାଇ, ଗାଁ ଦାଣ୍ଡରେ ନାଚ ନାଚ ଦୌଡ଼ି ଦୌଡ଼ି, ସ୍ତ୍ରୀ ମୁହଁ ଆମ୍ପୁଡ଼ି, ତା' ମୁଣ୍ଡ ଆମ୍ପୁଡ଼ି, ସେ ଗାଇଦେଇଗଲା ଅକ୍ଷରେ ଅକ୍ଷରେ ସେହି କଥା, ଯାହା ସ୍ୱପ୍ନରେ ଟାକ୍ରି ଠାକୁରାଣୀଠୁଁ ଶୁଣିଥିଲା ବୋଲି କାନ୍‌କଟା ତା' ଆଗରେ କହିଥିଲା ।

ଆଶ୍ଚର୍ଯ୍ୟ ପ୍ରକାରେ କନ୍ଧ ରାଜ୍ୟର ଗାଏଁ ଗାଏଁ ବେଜୁଣୀମାନେ ଜଣକ ପରେ ଜଣେ କାଳିଶୀ-ଲାଗି ହୋଇ ସେହି ଏକା କଥା କହିଗଲେ, କାହାକୁ କେଉଁ ଦେବତା ଲାଗିଲା, ଯେ ଲାଗନ୍ତି ସେ କହିଲେ, ଦେବତାମାନେ ପୂଜାବଳି ପାଇ ଅସନ୍ତୁଷ୍ଟ, ତାଙ୍କର ଦରକାର ମଇଁଷି, ଗୋରୁ, ବଡ଼ବଡ଼ ଛେଳି ଘୁଷୁରି, ଆଗପରି ଖାଲି କୁକୁଡ଼ା ଡିମ୍ବଟିଏ ଭାଙ୍ଗିଦେଲେ କି ପାରାଟିଏ କୁକୁଡ଼ାଛୁଆଟିଏ ଦେଇଦେଲେ କାମ ଚଳିବ ନାହିଁ, ସେପରି କରିବାରୁ ଦେବତାମାନେ ଚିଡ଼ିଲେଣି, ଅକାଳ ପଡ଼ିବ, ସବୁ ପ୍ରକାର ବିପତ୍ତି ପଡ଼ିବ । ଡମ୍ବମାନେ ଗା ଗାଁକେ କନ୍ଧଙ୍କୁ ସ୍ମରଣ କରାଇଦେଲେ—

"ଦେବତାମାନଙ୍କ କଥା କିଏ ଅମାନ୍ୟ କରିବରେ ବାପା ! ଦେବତା ରାଗିଲେ କଞ୍ଚା ଖାଇଯିବ, ଜଅନ୍ତା ଗଛ ଜଳିଯିବ । ଏ ଗାଁକୁ ତ ବିପତ୍ତି ପଡ଼ିଲା, ଆମେ ଅବା କେଉଁ ବଞ୍ଚିବୁଁ !''

ଗାଁ ଗାଁକେ ସାଉଁଟା ଜାନି ଦିଶାରି ବସି ମନ୍ତ୍ରଣା ପଡ଼ିଗଲା, ତା'ପରେ ଗାଁଲୋକ ଏକାଠି ବସି । ସବୁଠି ବାରିକ୍‌ମାନେ କହିଲେ, "ଉଠାଅ, ଉଠେଇପକା ଦେବତାଙ୍କ ସଙ୍ଗେ ଜଲ୍‌ଦି, ବିପତ୍ତିରୁ କେମିତି ଉଦ୍ଧାରିବା, ବାଟ କାଢ଼ ।''

କିଥା ପଡ଼ିଲା ଅଷ୍ଟମୁଣ୍ଡାମାଝି ମଣ୍ଡଳରେ—"ରାଜ୍ୟକୁ ଘୋଟିଲା ଦୈବୀ ବିପତ୍ତି, ଦେବତାଙ୍କ କୋପ । ବେଶି ବେଶି ଗୋରୁ ମଇଁଷି ବଳି ଦେବା ଦରକାର, ଏବେଠୁ ଆଗ, ଭବିଷ୍ୟତରେ ବଳିଦେଲେ ବି ଯେଉଁଆ ଚାଲୁ, ଛେଳି, ଘୁଷୁରି, ଗାଈ, କୁକୁଡ଼ା ଓ ତାମ୍ବ ତା ଉପରେ ।"

ଗାଁ ଗାଁକେ ବାରମ୍ବାର ବାଜଣ୍ମାନଙ୍କ ବଇଗା ଗଲା, "ପୋଢ଼ ଆଣ୍, ଯାହା ପଡ଼ୁ ଉଆସିବ । ଦଣାର 'ଯୋଗ' ଦେଇଛୁ । ବୁଝିଥାଉ, ସେ ମୁହୂର୍ତ୍ତି ଯେମିତି ନ ପଳାଏ, ବଳିପଡ଼ିବ, ଯା କିଣିଆଣ୍ !"

ଭେଦାରେ ଫସଲ କରିହୁଏ ଭାରି ଭାରି ଜିନଷ, ଗୋଟାଏ ପୋଢ଼ ପାଇଁ ଚାଉଳ, ଛ'ଭାର, ତାମ୍ବ ବାଉଳ୍ ଭାରି ବୁହାଇ ଚାଲେ, 'ପଦା ଦେଶ', ବଳିପାଇଁ ପୋଢ଼ କିଣିଆଣିବ । ସେତିକିରେ ଯଦି ସରନ୍ତା ! କାହା ଘରେ ଜର, ତାହାକୁ ଝାଡ଼ା, ଆଗେ କେହି ବେମାର ହେଲେ କନ୍ଧ ବୈଦ୍ୟଠୁଁ ଜଡ଼ିବୁଟି ଖାଉଥିଲେ, ଦେବତା ଶାନ୍ତିପାଇଁ ପୂଜାଟିଏ କରି କୁକୁଡ଼ା ତାମ୍ବ କି କୁକୁଡ଼ା କି ପାରାଟିଏ ବଳି ଦେଉଥିଲେ, କେହି ବା ଘୁଷୁରି, ମୁଷା, ଛେଳି, ନିଜ ଶକ୍ତି ଯେତିକି । କିନ୍ତୁ ଡର ବ୍ୟାପିଛୁ, ଗୋରୁ ମଇଁଷି ଦରକାର, ନହେଲେ ବଡ଼ ଛେଳି ବଡ଼ ଘୁଷୁରି; ବାରମ୍ବାର ବେମାର, ତେଣୁ ବାରମ୍ବାର ବଳି, ଯୋଗେଇ ଦେବାକୁ ବାଜଣ୍କୁ କୁହାଯୋଉଛି । ଆଗରୁ ମଦ କିଣି, ଖୁସିରେ ବାଉଳ୍ ଦ୍ୱାରା କେତେବେଳେ ଗୋରୁ ମଇଁଷି କିଣେଇ, ତାମ୍ବ ନୂଆକରି ଚଳେଇଥିବା ଲୁଗା, ଅଳଙ୍କାର, ଏଣୁତେଣୁ ଜିନଷ କିଣି କିଣି ପଦ୍ଧତି ଫସଲ ଓ ଗଲା ଫସଲର ବଳିଥିବା ଭାଗକ ତା' ହାତକୁ ଟେକିଦେଇସାରିଥିଲେ, ଏବେ ଆଉ କିଛି ନାହିଁ, ଘରେ ଖାଇବାକୁ ବି ନାହିଁ । ସୁବିଧା ଦେଖି ତାମ୍ବମାନେ ପ୍ରସ୍ତାବର ଚୁକ୍ତିକରିନଥିନ୍ତି, "ଏଥରକ ଆମେ ତାହା ଲୋକଙ୍କଠୁଁ ଧାର ଉଧାର କରି ଜିନଷ ଆଣିଦେବୁଁ, ତା ବଦଳରେ ତୁମେ ତୁମର ଅମୁକ ତୋଟା କି ଅମୁକ କ୍ଷେତର ଫସଲ ବର୍ଷକ ପାଇଁ ଆମକୁ ଦେବ, କିମ୍ବା ତୁମର ଅମୁକ ବାଳକୁ ଆମକୁ ଏତେବର୍ଷ ପାଇଁ ବନ୍ଧାଦେବା, କ୍ଷେତରେ ଫସଲ ଉଠିଆ ନହେଉଣୁ ଏପରି ଅନେକ 'ବନ୍ଧା' ସେମାନେ ଧର୍ମ୍ମ ଧର୍ତ୍ତିମାନଙ୍କ ସାକ୍ଷୀରଖି ଦେଇ ସାରିଥିଲେ, ତାମ୍ବ 'ସେବକ'ମାନେ କ୍ରମେ ସାନ ସାନ 'ସାହୁକାର' (ମହାଜନ) ହୋଇଯିବା ଆରମ୍ଭ ହୋଇଥିଲା । ସେମାନେ କନ୍ଧ-ରାଜ୍ୟ ବାହାରେ ଠିକଣା କରିଥିଲେ ମହାଜନ, ଯେ ତାଙ୍କୁ ଟଙ୍କା ଉଧାର ଦେବେ, ବେପାରୀ, ଯେଉଁମାନେ ତାଙ୍କଠୁଁ ଜିନଷ କିଣିବେ, ସେପରି ଜିନଷ କିଣିବାକୁ କନ୍ଧରାଜ୍ୟ ସୀମା ଆରପାଖେ ଅଳ୍ପ ଦୂରରେ ବସିଯାଇଥିଲା ବେପାରୀଙ୍କ ଗୋଦାମ, କନ୍ଧଙ୍କ ପାଇଁ ତାମ୍ବ ବେପାରୀଙ୍କୁ ଜିନଷ ବିକିବାକୁ ସେଠି ଦୋକାନ ବସିଯାଇଥିଲା, ପକ୍କା ବ୍ୟବସ୍ଥା ଗଢ଼ିହୋଇଯାଇଥିଲା । ବେପାରୀ ବଜାରଠୁଁ ଦ'ଗୁଣ ଶସ୍ତାରେ ଜିନଷ ପାଏ, ଆଗ୍ରହରେ କିଣେ । ବେପାରୀ ଯାହା ଦିଏ ତା'ର ବଳିଭାଗରୁ ଦ'ଭାଗ ତାମ୍ବ ନିଜେ

ରଖେ, ନିଜପାଇଁ ସୁନା କିଣେ, ପଛେ ପୋଡ଼ି ପକାଏ, ମୂଳରେ ଆଉଗୋଟେ ଦେଇ ସେ କନ୍ଧପାଇଁ ତା'ର ଦରକାରୀ ଜିନିଷ କିଣିନିଏ । ତା' ନିଜ ଚଳଣି ପଦ୍ଧତିକୁ ଦେଖିବାକୁ କେତେବେଳେ କନ୍ଧପରି, କେତେବେଳେ ଆଉ ଗୋଟେ ଭଳି ସେ ଲୁଚି ଦିଶିଏ ହୁଏ, ଡହିଁରେ ଏଭଳି କିଛୁ ନାହିଁ ଯେ କେହି ସନ୍ଦେହ କରିବ, ସେ ଧନୀ ହେଲା । ପ୍ରଥା ଅନୁଯାୟୀ ତା ଘର ସ୍ତ୍ରୀଲୋକ ଶାଢ଼ି ବ୍ଲାଉଜ ପିନ୍ଧନ୍ତି, କିଛି ଅଳ୍ପ ଅଳଙ୍କାର ନାଆନ୍ତି, କାହାର ରୁପା କି ଗିଲ୍‌ଟି କି ପିତ୍ତଳ ଅଳଙ୍କାର ଭିତରେ ଲୁଗ୍ଣି ରଖାହୋଇଥାଏ ସମ୍ପୃଥିବା ସୁନା, କାହାର ଖଡ଼ୁରେ କି କାହା ଅଣ୍ଟା ସୂତାରେ । ସେ ବି ବେପାର କରେ, ପସରା ମୁଣ୍ଡେଇ ଗାଁକୁ ଗାଁ ବୁଲେ । ସକାଳୁ ଉଠି ସେ ଦୁଆର ଘର ଓଳାଏ, ଦୁଆରେ ଗୋବରପାଣି ପକାଏ, ପିଣ୍ଡା ଲିପେ, ଗୁରୁବାର ଦିନ ଘରଦ୍ୱାର ଲିପି ଲକ୍ଷ୍ମୀ ଠାକୁରାଣୀଙ୍କି ପୂଜାକରେ ।

ଡମ୍ବ ବି ଖାଆନ୍ତି ଗୋରୁ ମଇଁଷି ଘୁଷୁରି, ସବୁ ପ୍ରକାର ମଦ ପିଅନ୍ତି । ଯଦି ବେଶି ମଦ ପିଇ ମାତନ୍ତି, ତେବେ ଖାଲି ନିଜଘରେ, ନିଜ ସାହିରେ ନଚୁବା । ନିଜ ଦଳରେ ଥିଲେ କେବେ କଦବା ପଦା ଦେଶରେ, କନ୍ଧ ଆଗରେ ନୁହେଁ । କନ୍ଧଗାଁରେ ସବୁଦିନେ ସେମାନେ—"ଗରିବ ଦୁଃଖୀ ରଙ୍କୀ, ଖଟି ଖାଇବା ଲୋକ ।"

"କିଛି ହେଲେ କାମ ବତା ମାଝି, ତୋ କାମରେ ଗଲେ ମୁଠାଏ ଖାଇବାକୁ ଦବୁ ତ !"

ସପ୍ତାହର କୌଣସି ନିର୍ଦ୍ଦିଷ୍ଟ ଦିନ ସେମାନେ ଗୋଟିଏ ଗୋଟିଏ ସ୍ଥାନରେ ହାଟ ବସେଇବା ଆରମ୍ଭ କରିଥାନ୍ତି, ସେଠି ବଦଳ ସୂତ୍ରରେ ଜିନିଷ ବିକିବା କିଣିବା ସୁବିଧା ହୁଏ । କ୍ରମେ ସେଠିକି କନ୍ଧ ବି ଆସିଲେ ବହୁତ, କେହି କେହି ଅନ୍ୟାନ୍ୟ ଜାତିର ଲୋକ ବି ସେଠି ପହଞ୍ଚନ୍ତି, ହାଟକୁ ଯିବା ଲୋକଙ୍କର ଅଭ୍ୟାସରେ ପଡ଼ିଗଲା. ଲୁଣ ମୁଠିଏ କି ଶୁଖୁଆ ମୁଠାଏ କି ମୁଢ଼ିମୁଆଁ ଦୋ'ଟି କିଣିବାକୁ ଗଲେ ବି କେତେ ଗାଁର କେତେ ଲୋକଙ୍କ ସଙ୍ଗେ ଦେଖାହୁଏ, ଅନ୍ୟାନ୍ୟ ଜିନିଷ ତ ମିଳେ ହିଁ, ମଦ ତ ନିଶ୍ଚୟ ମିଳେ ।

ଗଦରଗୁଡ଼ ଗାଁରେ ଅଷ୍ଟମୁଣ୍ଡାମାଝି ମଣ୍ଡଳରେ ଦିନସାକ ସ୍ୱାଲେଣି ପଡ଼ିଲା, ଆଲୋଚନା ଚାଲିଲା, ମୁଣ୍ଡାମାଝିମାନେ, ଗା ମୁଣ୍ଡିଆଳମାନେ, କେତେ କଥା କହିଗଲେ; କିନ୍ତୁ ସମାଧାନ ନାହିଁ । ରାଜ୍ୟର ନାନାକାର୍ଯ୍ୟ ତୁଲାଇବାକୁ ପ୍ରତିଗାଁରୁ ଭେଟି ଆସିବା କଥା, ଆସୁନାହିଁ । ଲୋକେ ଆପତ୍ତି କଲେଣି, ଅଭାବବେଳେ ମୁଣ୍ଡାମାଝିମଣ୍ଡଳ କୋଠଭଣ୍ଡାର ପୂର୍ଣ୍ଣ ରଖିଥାନ୍ତା, ସାହାଯ୍ୟ ଦିଅନ୍ତା, ଦେଉନାହିଁ । ଆଗେ

ଘରେ ଘରେ କେତେ ଫସଲ ଠୁଳ କରୁଥିଲେ, ଏବେ ନାହିଁ, ପୁରୁଣା ଫସଲ ସ୍ୱପ୍ନ, ନୂଆ ବି ଗଲାଣି । କି ଉପାୟ ? ଜଣା ନାହିଁ । ଜାନି ଦଶାରି ଗାଁ ଗାଁ ଏତେ ପୂଜା କଲେଣି, ବାରମ୍ବାର ସବୁ ଗାଁରେ ପୋଡ଼ ଓ ଗାଈ ବଳିପଡ଼ୁଛନ୍ତି, ତଥାପି ଦେବତାଙ୍କର ଶାନ୍ତି ନାହିଁ, ବେଜୁଣୀଙ୍କୁ ଧରି ଧରି କୁହାଉଛନ୍ତି, "ଆହୁରି, ଆହୁରି, ନହେଲେ—!"

ମୁଣ୍ଡାମାଝିମାନେ କେତେଥର ମଦ ପିଇଲେଣି, କେତେ ବକର ବକର ହେଲେଣି, ବୁଦ୍ଧି ପଶୁନାହିଁ ।

ତଟିଲ ମୁଣ୍ଡାମାଝି କହିଲା, "କଥାଟା ଗୁଡ଼ି ବି ହେଉନାହିଁ । ହେଇ ଦେଖ ଆମ ଲଡ଼ୁଆ ଆଟକୁ । ଆଟପଡଆମାନେ କହିଲେଣି, ଆଗର ଆଟ ଆଉ ନାହିଁ, କେତେ ପାତଳ ପଡ଼ିଗଲାଣି, ଧାଂଡ଼ା ଡାକିଲେ ଶୁଣୁନାହାନ୍ତି, ଗଲେଣି କନ୍ଧା ଖୋଜି । କହୁଛନ୍ତି, ତୁମେ ତ ଆମ୍ଭକୁ ଆଉ ପୋଷି ପାରୁନା, ରହି ଖାଇବୁଁ କ'ଣ ?"

ଟାଂଗ୍ରା ମୁଣ୍ଡାମାଝି ମୁହଁ ବଙ୍କା କରି କହିଲା, "ଖାଲି ଚୂଲିଗଲେ ତ ଭିନେ କଥା, ଦଳବଳ ହୋଇ ଗାମାନଙ୍କରେ ପଶି ଜୁରମାରି କଲେ, ତାଙ୍କୁ ସାଧି କରିବାକୁ ଆଟ ଗଲେ, କେଉଁ କେଉଁ ଗାଁରେ ଗାଲୋକ ଜନେ ମେଳ ହୋଇ ତାଙ୍କୁ ମାରିହାଣି ଖେଦିଦେଲେ । ଲଡ଼ୁଆ ଆଟର ସେ ବଳ ନାହିଁ, ବାହାରୁ କେହି ମାଡ଼ିଆଇଲେ କ'ଣ କରିବା ଭରୁଚ ।"

ଉକ୍ତୁକୁଟି କହିଲା, "ପଚ୍ଚରିବା ପାଟ୍-ବାଉକାକୁ ।"

କାନ୍‌କଟା ଡକା ହେଲା । ମୁଣ୍ଡାମାଝିଙ୍କ ବାଉକ୍‌ମାନେ ବି ଜମାହେଲେ । କିନ୍ତ ମୁଣ୍ଡାମାଝି ସେମାନଙ୍କ ପରାମର୍ଶ ଲୋଡ଼ିଲେ ।

କାନ୍‌କଟା କହିଲା, "ଲୋକେ ଜନେ ଅମାନିଆଁ ହେଲେଣି, ତେଣୁ ଭେଦା ଦେଉନାହାନ୍ତି । ନିଜର ଯାହା ଲୋଡ଼ା ସବୁ କରୁଛନ୍ତି, କଣି କଣି ଫସଲ ଦେଇ-ଦେଉଛନ୍ତି, କହୁଛନ୍ତି ଅଭାବ ପଡ଼ିଲା । ଅଭାବୀ ହେଲେ ଲୋକ ଏତେ ପ୍ରକାର ଜିନିଷ କିଣନ୍ତି ? ଆଗେ ଏପରି କରୁଥିଲେ କେବେ ?"

ସବୁ ବାଉକ୍‌ମାନେ ଏକମତ ହେଲେ ।

ଯୁକ୍ତିଟା ମୁଣ୍ଡାମାଝିମାନଙ୍କ ମନକୁ ପାଇଲା । ଗୁଡ଼ସା ପଚ୍ଚରିଲା, "ଭେଦା ତ ଦେଉନାହାନ୍ତି, କ'ଣ କରିବା ?"

"ମୋ କଥା ଯେମାକର ମାହାପ୍ରୁ । ଭେଦା ନିଦଅନ୍ତୁ ପଛେ, ଲୋକଙ୍କୁ ଆଉ ଖରଚି କରି ଲାଭ ନାହିଁ, କ୍ଷତି ହେବ । ସେମାନେ ଭେଦା ନଦେଲେ କୋଠକାମ ନହେଉ, କ୍ଷତି ତାଙ୍କର, ତୁମର କିଛି ଦୋଷ ନାହିଁ ।"

"ସତ, ସତ," ଟାଂଗ୍ରା କହିଲା, "କାମ ନହେଲେ ସେମାନେ ହଇରାଣ ହେବେ, ସେତେବେଳେ କହିବା । କିନ୍ତୁ ଏ ଲଢୁଆ ଥାଟର ଲୋକଙ୍କୁ କେମିତି ପୋଷିବା ?"

ସାଆଁଲ୍ କହିଲା, "ତାଙ୍କୁ ଖଣ୍ଡେ ଖଣ୍ଡେ ଜମି ଚାଷ କରିବାକୁ ଦିଆହେଉ ।"

ଟାଂଗ୍ରା କହିଲା, "ତାଙ୍କର ଜମି ନାହିଁକି ? ସେ ତ ଗାଁରେ ଜମି ଉପରେ ରହିବେ, ଦଳପତି ଥାଟପତି ଡାକିଲାବେଳକୁ ଆସିବେ କେମିତି ?"

କାନ୍‌କଟା କହିଲା, "ସେ ନଆସିବେ ଚିନ୍ତା ନାହିଁ ମାହାପ୍ରୁ, ତୁମେ ଆମର ଓମ୍ ଲୋକଙ୍କୁ ଲଢୁଆ ଥାଟରେ ରଖ, ଭିନେ ଜାତିର ଲୋକଙ୍କୁ ବି ରଖ, ଆମେ ତାଙ୍କୁ ଆଣିବୁଁ । ଆମେ ଜଣେ ଥାଟରେ ମିଶିବୁଁ, ଲଢେଇ କରିବୁଁ । ଯେ ସେଥିରେ ରହେ ସେ କ'ଣ ଖାଲି ପେଟ ପୋଷିବ ବୋଲି ରହେ ? ତୁମ ନାଁ କହି ମାଗିଲେ ଗାଁ ଲୋକେ ବି ଖାଇବାକୁ ଦେବେ ।

ଏ ରାଜ୍ୟକୁ ଯେ ଶରଧା କରେ, ରାଜ୍ୟ ଲୋକଙ୍କୁ ବଞ୍ଚେଇବାକୁ ଆପଣା ଜୀବନ ଦେଇଦେବ, ସେମିତି ଲୋକଙ୍କୁ ବାଛି ବାଛି ସିନା ଥାଟରେ ରଖିବ ? ଥାଟରେ ମିଶିଲେ ମନ୍ତ୍ରୀପ୍ର ପ୍ରମାଣ (ଶପଥ) କରି ପଶିବ, ମରିବାଯାକେ ଏ ଦେଶର ଲୋକଙ୍କର ମୁଁ ସେବା କରିବି । ଯାହାର ମନ ନାହିଁ ସେ ଯାଉ, ଆମେ ଲୋକ ଆଣି ଦେବୁଁ ।"

ସବୁ ବାରିକ୍ ଉଚ୍ଛ୍ୱାସରେ ଓ ଆବେଗରେ ସେ କଥାକୁ ସମର୍ଥନ କଲେ । କନ୍ଧମାନେ ଉତ୍ସାହିତ ହେଲେ ।

ଦଶାଙ୍ଗା ବେକକୁ ଝାଙ୍କିଦେଇ ପଚାରିଲା, "ତୁମେ ଲଢ଼ିବ ?"

ତା' ବାରିକ୍ ଚମ୍ରୁ କହିଲା, "ଆମେ ତୁମ କୁକୁର ମାହାପ୍ରୁ, ତୁମର ପାଦ ଚାଟିବୁଁ, ତୁମେ ଯାହାକୁ କାମୁଡ଼୍ ବୋଲି କହି ଆମୁକୁ ଲେଲିଦେବ (ଲଗେଇ ଦେବ) ଆମେ ତାକୁ ଛାଡ଼ିଦେବୁଁ କି ?"

ଓଟ୍‌କା କହିଲା, "ଦେଖ ଏ ଓମ୍ବ ବାରିକ୍‌ମାନଙ୍କୁ । ଏମାନେ ବାଟ ବତେଉଛନ୍ତି ? ଆମ ଦଳପତିମାନେ କ'ଣ କରୁଛନ୍ତି ? ଥାଟପତିମାନେ କ'ଣ କରୁଛନ୍ତି ? କିଛି କାମର ନୁହନ୍ତି । ଖାଲି ନିଜ ଲାଭ ଜାଣିଛନ୍ତି ।"

ସାଆଁଲ୍ କହିଲା, "ଦଳପତି ଥାଟପତି କାମ କରିବାକୁ ବି ଲୋକ ଊଣା ପଡ଼ିବେ ନାହିଁ, ଆମ ଭିତରୁ ବାହାରିବେ, ପଦାରୁ ବି ଆଣିବୁଁ ।"

ଉକ୍‌ଡ଼ୁକୁଟି କହିଲା, "ଯାହାକୁ ପାରି ତାକୁ ସେ କାମ ଦେଇହେବ ନାହିଁ । ବିଶ୍ୱାସୀ ଲୋକ ଦରକାର । ନହେଲେ ଓଲଟି ଆମ ଉପରେ ଚୋଟ ମାରିବେ ।"

କାନ୍‌କଟା କହିଲା, "ସତ ମାହାପ୍ରୁ, ସେ ଦଳପତି ଥାଟପତି କାମ ଆମର ଲୋଡ଼ା ନାହିଁ । ଆମେ ତୁମର ସେବା କରିବା ଲୋକ, ଯାହା କହିବ ତା କରିବୁଁ । ମୁଁ

କହୁଥିଲା କି, ଆଗରୁ ଲୋକ ବାଛୁଥିବା, ଲଢ଼େଇ କାମ ବି ଆମେ ତୁମର ସେବକମାନେ ଟିକିଏ ଟିକିଏ ଅଭ୍ୟାସ କରୁଥିବା । ତୁମର ଆଜ୍ଞା ହେଲେ ଆମେ ବି ଫେଣ୍ଟା ଢୁଷି ଧନୁ ଧରି କେବେ କେବେ ବୁଲିବା ଅଭ୍ୟାସ କରିବୁଁ, ବାଛି ବାଛି ସେମିତି ଆଉ ଆଉ ଲୋକଙ୍କୁ ମିଶେଇବୁଁ । ତୁମେ ଯେବେ ହୁକୁମ୍ ଦେବ, ଆମେ ଆମର ପିଲାମାନେ, ଆମେ ବାଛିଥିବା ଲୋକ, ସମସ୍ତେ ତୁମପାଇଁ ଜୀବନ ଦେବାକୁ ବାହାରିପଡ଼ିବୁଁ, ସେତେବେଳେ ଆମ୍ଭକୁ ଲଢ଼ୁଆ ଥାଟରେ ମିଶେଇବ । ନହେଲେ ଲୋଡ଼ାନାହିଁ । ଆମେ ତୁମ ବୋଲହାକ କରିବା ଲୋକ, ଖଟି ଖାଇବା ଲୋକ, ଲଢ଼ୁଆ ଥାଟରେ ରହି ତୁଚ୍ଛା ବୁଲିବାକୁ ଆମ୍ଭକୁ ବେଳ କାହିଁ ?''

କନ୍ଧ ମୁଣ୍ଡାମାଝିମାନେ ସନ୍ତୁଷ୍ଟ ହେଲେ । କଥା ଉଠିଲା, ଲଢ଼ୁଆ ଥାଟରୁ ଲୋକ ଛାଡ଼ି ପଳାନ୍ତୁ, କିଛି ଚିନ୍ତା ନାହିଁ, ସେଥିପାଇଁ କୌଣସି ବନ୍ଦୋବସ୍ତ ଦରକାର ନାହିଁ, ବାରିକ୍‌ମାନେ ପ୍ରସ୍ତୁତ ରହିବେ, ଥୋଡ଼ାଏ ଲୋକଙ୍କୁ ତାଲିମ୍ କରାଇ ହାତରେ ରଖିବେ, ଦରକାର ହେଲେ ଆଣିବେ । ସେ ପର୍ଯ୍ୟନ୍ତ କିଛି କରିବାର ନାହିଁ । କିଛି କରିବାର ନାହିଁ । ଭାରି ଶାନ୍ତିଦିଏ ଏ ସମାଧାନ ସେମାନଙ୍କୁ । ସେମାନେ ଅଭ୍ୟସ୍ତ ହୋଇଯାଇଥିଲେ । ରାଜ୍ୟଟିଏ ଅଛି, ସେଥିରେ ଏତେ ଲୋକ, ସମସ୍ତେ ନିଜ ନିଜ ଭାର ତୁଲନ୍ତୁ, ତୁଲାଇ ନପାରିଲେ ଭାବନ୍ତି ମୁଣ୍ଡାମାଝି ମଣ୍ଡଳ ସବୁ କରିଦେବେ । ନାନା ସମସ୍ୟା ନାନା ଅଡୁଆ କଥା ଆଣି ପକାନ୍ତି । ବକର ବକର ହୁଅନ୍ତି ପୁଣି ତୁନି ହୋଇ ରହନ୍ତି । କରିବାର କିଛି ନାହିଁ । ତେଙ୍ଗା ଗଉଡ଼ସା ଠିଆହୋଇପଡ଼ି କହିଲା, ''ଲୋକେ ଆମ୍ଭକୁ କହିଲେ କ'ଣ ହେବ ? ମାହାପୁରୁ ଭଲ ନକଲେ କିଛି ଭଲ ହେବ କି ?''

ସମସ୍ତେ କହିଲେ, ''ସତ ସତ ।''

ଡ୍ରାମ୍ବୁ କହିଲା, ''ଲୋକେ ନୂଆ ଜିନିଷ ଶିରଧାରେ କିଣୁଛନ୍ତି । ଏବେ ଲୁଣ, ଶୁଖୁଆ, ଖଦି, ମାଳି, କିଛି ଅଭାବ ନାହିଁ । ଆଗପରି ଆଉ ନାହିଁ । ଯାହା ଖୋଜିବ ମିଳିବ । ଏସବୁ ଆମ ଅମଳରେ ତ ହେଲା ?"

ଉଟିଲା କହିଲା, ''ସତ ସତ । କିନ୍ତୁ ଏବେ ତ ଲୋକଙ୍କ ଘରେ ଖାଇବାକୁ ନାହିଁ, କ'ଣ ପାଇବେ ଯେ କିଣିବେ ?''

ଗଉଡ଼ସା କହିଲା, ''ଜିନିଷ କିଣିଲେ, ଫସଲ ସରିଗଲା । ଆଗେ ଭଲ ଜିନିଷ କିଣୁନଥିଲେ, ଫସଲ ଥୁଆହୋଇଥିଲା । ଖାଇବାକୁ ନାହିଁ ତ ଦୋଷ କାହାର ?"

ଉଟ୍‌କା କହିଲା, ''ଆଜି ନାହିଁ, କାଲି ପୁଣି ଫସଲ ହେବ । ଏବେ ଲୋଡ଼ା ବେଶି ବେଶି ଆମ୍‌ଦାନି । ଲୋକେ ଲାଗିପଡ଼ନ୍ତୁ, ଆହୁରି ଆହୁରି ବଣ ହାଣନ୍ତୁ, ସେଇଟା ଭଲ ।''

ସମସ୍ତେ ସମସ୍ୱରରେ କହିଲେ, "ସେଇଟା ଭଲ ।''

ନିଜ ନିଜ ସ୍ଥାନକୁ ଫେରିଯିବା ପୂର୍ବରୁ ଅଲଗା ହୋଇ ବାଉଁଶମାନଙ୍କର ଆଲୋଚନା ପଡ଼ିଥାଏ, ଅନ୍ୟାନ୍ୟ ଉମ୍ବ ବି ଥାଆନ୍ତି ।

ଖଜାଞ୍ଚିଉ ପଚାରିଲା କାନ୍‌କଟାକୁ, "ତୁ ପୁଣି ଆମେ ଲଡ଼ୁଆ ଥାଟରେ ମିଶିବୁଁ ଆହୁରି ଲୋକ ଆଣି ସେଥିରେ ପୁରେଇବୁଁ, ଏସବୁ କ'ଣ ବାହାର କରୁଛୁ ? ଆମେ ପାଇକ ପରି ବୁଲିବୁଁ; ବେପାର କରିବ କିଏ ? ଆମେ ଖଣ୍ଡା ଧରିଲେ କିଏ ଆମକୁ କ'ଣ ଖୁଆଇବ ?"

କାନ୍‌କଟା ଗୁମ୍ ହୋଇ ବସିଥାଏ । କହିଲା, "କହିଯାଅ, କହିଯାଅ ।"

ସୋନାଖାଉ କହିଲା, "ତୋ ବୁଦ୍ଧିକୁ ଆମେ ପ୍ରଶଂସା କରୁଁ; କିନ୍ତୁ ତୁ ଏଇ ଯେଉଁଠା କହିଲୁ, ସେଥିରେ ତୁଚ୍ଛାରେ ଆମେ ହରବର ହେବା କଥା । ଦଳପତି ଡାକିବ—କାମଦାମ ଛାଡ଼ି ଆସ, ଘର ଭୁଡ ଖାଅ, ତୁମେ ଖଣ୍ଡାଧରି ଆମ ପଛେ ପଛେ ବୁଲିବ ।"

କାନ୍‌କଟା କହିଲା, "ତୁମେ ଶିଖିପାରିଲ ନାହିଁ । ଆରେ ଓଲୁ, ମୁଣ୍ଡାମାଳି-ମାନେ ଯୋଉ କଥା ପଚାରିବେ, ତାଙ୍କ ମନଜାଣି ଆଗ କହିଦେବ—'ହଁ' ।"

ଖଜାଞ୍ଚିଉ ହସିଲା, କହିଲା, "ଏବେ ବୁଝିଲି, ସେମିତି ହେଲେ ଭଲ ।"

କାନ୍‌କଟା କହିଲା, "କିଛି ବୁଝିନାହଁ । ଜାଣିଲ ତ, ଥାଟରୁ ଲଢ଼ୁଆ ଧାଂଡ଼ା ପଳେଇଛନ୍ତି, ଆଗର ଥାଟ ଆଉ ନାହିଁ । ତା'ର ସେତେ ବଳ ନାହିଁ, ନୂଆନୂଆ ଲୋକ ଆହୁରି ଭର୍ତ୍ତି ପଡ଼ିବେ ।"

ସୋନାଖାଉ କହିଲା, "ଆମର କି ଯାଏ ?"

"ତୁମର କିଛି ଯାଏଆସେ ନାହିଁ ? ଲୋକେ ମେଳ ହୋଇ ଯଦି ତମକୁ ମାରିବେ, ତୁମ ଧନ ଲୁଟିବେ, କାହା କଥା ମାନିବେ ନାହିଁ, ତେବେ ତୁମ ପିଠିରେ ପଡ଼ିବ କିଏ ? ଏଠି ଗାଁ ଲୋକ ତମକୁ ହରବର କରିପାରନ୍ତି, ମନାକରିବ ?"

ଅନେକେ ସେକଥା ବେପସନ୍ଦ କଲେ, ଅସମ୍ଭବ, ଲୋକେ ତାଙ୍କର କାହିଁକି ଅନିଷ୍ଟ କରିବେ ?

କାନ୍‌କଟା କହିଲା, "ତୁମ ନିଜ ବୁଦ୍ଧିରୁ । ତୁମେ ସମସ୍ତେ ଏଠିକି ଆସି ଯେମିତି ଖାଲୁ-ଶୋଷା ଶୋଷିଲଣି, ଯେମିତି ଗାଡିକା ଗାଡ ସବୁ ଗିଳିପକେଇବାକୁ ବସିଲଣି, ସେଥିରେ ଆମ ମୁଣ୍ଡଗୁଡ଼ାକ ଗଣ୍ଡିରୁ ନ ଛିଣ୍ଡିଲେ ରକ୍ଷା ।"

କାନ୍‌କଟା ଖୁବ୍ ରାଗିଥିଲା, କହିଲା, "ସେମିତି ହେଲେ ତୁମେ ଥାଅ, ମୁଁ ଗୁଲିଯିବି । ମତେ ଦିଶିଯାଉଛି, ଉମ୍ବ ଘର ସବୁ ହୁରୁହୁରୁ ହୋଇ ଜଳୁଛି, ଉମ୍ବମାନଙ୍କ

କଣ୍ଟାମୂଣ୍ଡ ଏଣେତେଣେ ପଡ଼ିଛ, କାଉ ଶାଗୁଣା ଖାଉଛନ୍ତି । ସବୁ ଅନର୍ଥର ହେତୁ ହେଲ ତୁମେ, ଅପଦାର୍ଥମାନେ ।''

ସମସ୍ତେ ଡର ଡର ତା' ପାଖରେ ଠେଲହୋଇ ପଶିଲେ । ବୟସରେ ତାଠୁଁ ବଡ଼ ଅନେକେ, ଅଭିଜ୍ଞ ଲୋକ, ନିଜ ବୁଦ୍ଧିକୁ ପ୍ରଶଂସା କରନ୍ତି, ତଥାପି ଏ ଲୋକଟିର ବୁଦ୍ଧି, ଚତୁରପଣ, ବଚ୍ଚିରକୁ ସମସ୍ତେ ପ୍ରଶଂସା କରୁଥିଲେ, ନିଜ ପଦ ବଳରେ ବି ତା' ସ୍ଥାନ ତାଙ୍କ ଉପରେ ।

''କ'ଣ ହେଲ ?'' ଚମ୍ପୁ ପଚାରିଲ, ''ଆମକୁ ଡରାନା, କ'ଣ ହେଲ କହ ।''

କାନ୍‌କଟା କହିଲ, ''କହିବି ଆଉ କ'ଣ ? ତୁମେ ଯେଉଁ ଡାଲରେ ଠିଆ-ହୋଇଛ, ସେହି ଡାଲକୁ ହାଣୁଛ । ତମକୁ ମୁଁ କେତେଥର କହୁଛି, ହାତର ଦଶଆଙ୍ଗୁଠି ଗୋଡ଼ର ଦଶଆଙ୍ଗୁଠି ଏକାଥରେ ପାଟିରେ ପୁରାନା ।''

''କ'ଣ କଲୁ ଆମେ ?'' ଜାମ୍‌ଧର୍ ପଚାରିଲ । ସମସ୍ତେ କାନ୍‌କଟାର ମୁହଁକୁ ଅନାଇଁ ରହିଲେ । କାନ୍‌କଟା ବୁଝେଇଲ,—

''ଶୁଣ ତେବେ । ନୂଆ ଜିନଷ ଆଣିଦେବାକୁ କହି କନ୍ଧଠୁ ତା ଫସଲ ନେଲ, ଦାମ୍‌ର ଦଶଭାଗରୁ ଭାଗେ ତା ପାଇଁ ଖର୍ଚ୍ଚ କଲ ।''

ସୋନାଖାଉ କହିଲ, ''ସେ ତ ବେପାର୍, ତୁ ବି କରୁ ।''

''ନାହିଁ କରୁନାହିଁ । ମଦ ଦେଉଛ, ଜିନଷ ନେଉଛ, ଗଛ କି ଭୂମି ବନ୍ଧାରେ ରଖୁଛ—''

''ସେ ବି ତ ବେପାର୍ ।''

''ଜମି ନେଇଯାଉଛ, କ୍ରମେ ସବୁ ଜମି ତୁମ ହାତକୁ ଚାଲିଯିବ ।''

ସୋନାଖାଉ କହିଲ ''ସେ ବି ବେପାର୍ ।''

''ତା'ଘର, ଦେଶ ସବୁ ନେଇଯିବା ବି ବେପାର । ତା'ର ସବୁ ଯିବ । ସେଉଠୁ ସେ ତୁମକୁ ଭାରି ଶରଧା କରିବ, କହିବ ଏ ଆମର ଉପକାରିଆ, ନୁହେଁ ? ତୁମେ ଶୁଣୁଛ କନ୍ଧମାନେ କ'ଣ କଥାଭାଷା ହେଉଛନ୍ତି ? କହିଲେଣି—ଏ ଡମ୍ବମାନେ ଆଇଲାଦିନୁ ଆମ ଦେଶକୁ ଅକାଳ ପଡ଼ିଲ । କହିଲେଣି—ସତେ କ'ଣ ଏତିକି ଜିନଷ ପାଇଁ ଏତେ ଏତେ ଫସଲ ଦେବା ଦରକାର, ନା ଏ ଡମ୍ବମାନେ ମହା ଠକ ! ତୁମେ ତାଙ୍କର ସବୁ ନେଇଯାଉଛ, ଖାଇବାକୁ ମୁଠାଏ ବି ଛାଡ଼ିଦେଲ ନାହିଁ । ସେମାନେ ଚାହିଁଥିବେ ତୁମେ ତାଙ୍କ ଜମି ଚଷି ଖାଉଥିବ, ତାଙ୍କ ମନ କୁହୁଳୁଥିବ । ସେଉଠୁ ଦିନେ—ସେମାନେ ଉଠିବେ, କହିବେ ହାଣ ଏମାନଙ୍କୁ ।''

''ସେମାନେ ସତ୍ୟ ଧର୍ମ ବାଟରେ ଚାଲିବା ଲୋକ ?'' ସାବୁ କହିଲ ।

"ସତ ସେ, ସେମାନଙ୍କ ପେଟରେ ଛଟପଟ ହେଲାବେଳେ ଜିନିଷ ଥିବ ତ ? ଚିନ୍ତାଏ ଭାବ । ଖାଉଛ ଯେ ବାବୁ, କିଛି ଗୁଣ୍ଡ ଗୁଣ୍ଡ ଖାଅ, ମୂଳରୁ ଅଣ୍ଟା କରନାହିଁ । କିଛି ବଞ୍ଚିଥିଲେ ସିନା ତୁମେ ତାଠୁଁ ଫେର୍ ପାଇବ ! ଜିନିଷ ନେଲେ ଦଶଭାଗ ଦାମ୍‌ରୁ ନଅ ଭାଗ ନେଇଯାଉଥିଲ, ଉଣା ନଅ । ଏତେ ଜମି ତୁମେ ମାଡ଼ିବସିଲେ କି ଲାଭ ପାଇବ ? ଉଣା ଜମି ରଖ । ତୁମେ ଚାଷ କଲେ ବେଶି ଲାଭ ପାଇବ ନା ସେତକ ସମସ୍ତରେ କିଛିଟା ଜିନିଷ ନେଇ ବେପାର କଲେ ବେଶି ଲାଭ ପାଇବ ? ଜମି ସେ ରଖୁ, ଚାଷ କରୁ, ଫସଲ କରୁ, ଫସଲ ତୁମେ ନେଇପାରିଲେ ଭଲ ନୁହେ ? ତୁମେ ଆଗରୁ ତାକୁ କିଛି ଜିନିଷ ଯୋଗେଇଦିଅ, ଯାହା ତା'ର ଲୋଡ଼ା ହେଉଛି ଆଣିଦିଅ, ଖାଲି କଥାଟା ବୁଝେଇଦିଅ ଯେ ଏବେ ଏତକ ଜିନିଷ ଆମେ ଦେଲେ ପଛେ ଫସଲ ପାଚିଲେ ଏତକ ଫସଲ ତୁମେ ଦେବ, ସିଧା ବଦଳ କାରବାର, ଟଙ୍କାକର ଜିନିଷ ତୁମେ ଦେଲେ କଥା କରିଥିବ ଫସଲ ପାଚିଲେ ସେ ଦେବ ଦଶଟଙ୍କାର ଫସଲ ।"

"ସେତେବେଳେ ସେ ନଦେଇ ପାରିଲେ ?" ଉକାଲୁ ପଚାରିଲା ।

କାନ୍‌କଟା କହିଲା, "କହିବା, ସାହୁକାରଠୁଁ ଟଙ୍କାଏ ଉଧାର କରି ତତେ ଜିନିଷ ଦେଇଥିଲୁଁ, ଏବେ ତାକୁ ଦଶଟଙ୍କାର ଜିନିଷ ଫେରେଇଥାନ୍ତୁ, ବର୍ଷେ ରହିଲେ ଟଙ୍କାକୁ ଦଶଟଙ୍କା ହୁଅବରେ ସେ ଆମଠୁ ଶହେ ଟଙ୍କାର ଜିନିଷ ନେବ, ତୁମେ ଆମକୁ ଶହେ ଟଙ୍କାର ଫସଲ ଦେବ ।"

"ସେ ଏତେ ଦେଇପାରିବ ?"

"ପାରିବ ନାହିଁ । ମାତ୍ର ଥରେ ଟଙ୍କାକର ଜିନିଷ ଆମଠୁଁ ଉଧାର ନେଲେ ପ୍ରତିବର୍ଷ ଯେତେ ତା'ର ଫସଲ ହେଉଥିବ ସବୁ ଯେ ତା' ସୁଧ ବାବତକୁ ଦେଇ-ଦଉଥିବ, ତା' କରଜ ଶୁଝିବ ନାହିଁ, ତୁମ ଆସ୍ ସରିବ ନାହିଁ । ଓଲଟି ତୁମେ ତାକୁ ବୁଝେଇ ସୁଝେଇ କହ—"ଆରେ ସବୁ ଦେ ନାହିଁ, ତୋ ପିଲା କୁଟୁମ୍ବ ଖାଇବେ, କରଜ ତ ଶୁଝିବୁ ଯେବେ ହେଲେ, ତାଙ୍କ ଖାଇବା ପାଇଁ କିଛି ରଖ୍ ।" ମଝିରେ ମଝିରେ ତୁମେ ତାକୁ କିଛି ମାଗେଣାରେ ଜିନିଷ ଦେବା ଦରକାର, ଏତେ କୃପଣ ହେଲେ ଭଲ ନୁହେଁ ।"

ସେମାନେ ତା କଥାକୁ ଭାବିଲେ, ସମସ୍ତେ ଏକମତ ହେଲେ, ସେ କହିବା କଥା ଠିକ୍ । ହାଁପୁଡ଼ାସୁଆ ହୋଇ ସବୁ ଗିଳିବାକୁ ବସିବା ଠିକ୍ ନୁହେଁ ।

କାନ୍‌କଟା ବୁଝେଇଲା, "କେଡେ ସୁନ୍ଦର ଏଠି ଆମ ବେପାର ବଢ଼ିଲାଣି । ଆସିଥିଲୁଁ ଭିକାରି ହୋଇ, ବର୍ଷ ଦୁଇଟାରେ ସମସ୍ତେ ସାହୁକାର୍ । ଆମର ଏଠି ଯୋଡ଼ିଏ କାମ । ଏଠି କିଛି ଯେତେ ବେଶି ଫସଲ କରିପାରିବେ ତହିଁରେ ଲାଭ ଆମର । ସେମାନେ ଯେତେ ସୁସ୍ଥ ରହିବେ, ଚୋଟା ବାଡ଼ି ଘୁଷର ଯନ୍ତ୍ର ନେବେ

ଯେତେ ଅଧିକ ଉପୁଜେଇବେ । ତେଣିକି ଧ୍ୟାନ ନଦେଲେ ଆମର କ୍ଷତି । ଆଉ ଗୋଟିଏ କାମ, ସେଇଟା ବେଶି ବଡ଼ କାମ—ଏ ଦେଶରେ ଶାନ୍ତିଶୃଙ୍ଖଳା ନ ରହିଲେ, ଜଗପଞ୍ଚ ନରହିଲେ, କନ୍ଧ ହାତରେ ରାଜ୍ୟ ନରହିଲେ ଆମ୍ଭକୁ ବି ଖତ ବିପଦ । ଆଜି ଅନ୍ତ କାହା ହାତକୁ ରାଜ୍ୟ ଗ୍ଲଲିଯିବ ତ ଆମ ବେପାର ଚଳିବ ନାହିଁ, ଆମ ସମ୍ପତ୍ତି ଲୁଟି ହେବ, ଆମ୍ଭକୁ ହାଣମାର ହେବ । ରାଜ୍ୟରେ ଜର୍ମା ଲଗିଯିବ, କେହି କାହା କଥା ମାନିବେ ନାହିଁ, ମୁଣ୍ଡାମାଝିମାନଙ୍କୁ କେହି ମାନିବେ ନାହିଁ, ତେବେ ବି ଆମର ସେହି ଅବସ୍ଥା ହେବ । ପଦାର କେତେ ଲୋକ ଆମ ବେପାରକୁ ଈର୍ଷା କଲେଣି, ଆମ୍ଭକୁ ଆଖି ରଖିଲେଣି, ନଗ୍ରେଇପାରିଲେ ଏଣିକି ବାହାରର ଲୋକ ମନଇଚ୍ଛା ପଶିଆସିବେ । ଆମେ ତେଣିକି ଜଗା ଦେବା ଦରକାର ।''

ବୃଦ୍ଧ କହିଲା, ''କ'ଣ କରିବା ?''

''ଯାହା ମୁଣ୍ଡାମାଝିଙ୍କି କହିଲି ସେଇଆ । ଲଢୁଆ ଆଉ କେମିତି ଟାଣ ରହିଥିବ ସେଇଟା ଆମେ ବୁଝିବା ଦରକାର । ତାଙ୍କର ଅଭାବ ନପଡୁ । ଗାଏଁ ଗାଏଁ ବରାଦ୍ କର, ଲୋକଙ୍କୁ ବୁଝାଇ କହ । ଆମ ଭିତରୁ ଆମ ଲୋକ ବି କେହି କେହି ସେ କାମରେ ମିଶନ୍ତୁ, ଅନ୍ତତଃ ଟୋକାମାନେ । ଯଦି କେତେବେଳେ ଖରାପ ଦିନ ଆସିବ, ଆମ ଉପରେ ଆକ୍ରମଣ ହେବ, ଲଢ଼ିବାକୁ ଆମ ଲୋକ ବି କିଛି ଥିବେ, ଯୋଉଠି ଯାହା ହଉଛି ସବୁ ଖବର ରଖ । ଆଉ ଗୋଟିଏ କଥା—ସୀମା ଉପରେ ଜଗା ରଖିଥା, ଘାଟିରେ ପହରା ବ୍ୟବସ୍ଥା କର ।''

''ରାଜାର କାମ ବି ଆମେ କରିବା ?'' ସାଆଁଲ୍ ପଗ୍ଲରିଲା ।

''ନକଲେ ରାଜାପର ଚଳିବାକୁ ମନ କରିବା ନାହିଁ, ଭିକ ମାଗି ଖାଉଥିବା ।'' ଉଜାଡ଼ୁ ଉତ୍ତରଦେଲା ।

ଗୁଡ଼୍ଡ଼ୁଡ଼ି ଗାଁରେ ସନ୍ଧ୍ୟାବେଳେ ଡମ୍ବସାହିରେ କାନ୍‌କଟା ଘର ପିଣ୍ଡାରେ ଉଜାଡ଼ୁ ଓ କାନ୍‌କଟା ବସି ପିକା ଟାଣୁଥିଲେ । କାମ୍‌ସରି ଆସି ଉଜାମାଂସ ଆଉ ଦ' ଗିଲାସ ଜୁମୁନ୍ ଉମୁନ୍ ହାଲୁକା ମଦ ଯୋଇଦେଇଗଲା ।

ଉଜାଡ଼ୁ କହିଲା, ''ଠିକ୍ କଲୁ, ଡମ୍ବମାନଙ୍କୁ ଚେତେଇଦେଲୁ, ନହେଲେ ଶେଷରେ କୁକୁର୍‌ପିଟା ପିଟି କନ୍ଧମାନେ ଆମ୍ଭକୁ ଏଠୁ ତଡ଼ିଦିଅନ୍ତେ ।''

କାନ୍‌କଟା କହିଲା, ''ବୁଦ୍ଧି ନାହିଁ । ମାଡ଼ ଖାଇଲେ ଶିଖିବେ । ସେତେବେଳକୁ ଡେରି ହୋଇଯାଇଥିବ । ଶୁଣୁଥିବୁ, କହିଲେଣି ଗାଁ ଗାଁକେ । ଯେ କୋଉଠି ଥିଲେ ଏ ଡମ୍ ପଲ, ସେବକ ହୋଇ ଆସିଲେ, ଏବେ ସେବା କରୁଚୁଁ କହି ସବା-ଖିଆ ହେଲେ, ଚାଷ ତ କରନ୍ତି ନାହିଁ, ଟାଲି ବେପାର, ଆମର ଧନ ବଦଳେଇବାକୁ ନେଇ କେତେ ଲାଭ ପାଉଛନ୍ତି ଯେ ଆମର ସବୁ ସରିଲା, ଆମେ ଶାଗଡ଼ାଲ ଖୋଜି

ବୁଲୁଛୁଁ, ଆଉ ସେମାନେ ତ ଗୁପ ନକର ଖାଦ ଖାଉଛନ୍ତି, ଆସୁଛନ୍ତି କୋଉଠୁ ?'' ସେଇକଥାକୁ ମୋର ଡର, ଆମ ଲୋକେ ଘର ଘରକେ ପଡ଼ ମାଗିବା ବ ଭୁଲିଗଲେ । ଏଣେ କାହଠୁଁ ସବୁ ଲୁଟିନେଲେ ।''

''ସେଇଟା ଭଲ ନୁହେଁ । କାହର ସିନା ବୁଦ୍ଧି ନାହିଁ, ତା ଘରେ କଛୁ ହେଲେ ଥାଇ ତାଠୁ କନିଷ ନେବା ଦରକାର । ମୋଟାସୋଟା କର ସେ ଗଣ୍ଡାଏ ଖାଆନ୍ତା ବାକ ସବୁ ପଛେ ଆମେ ନଅନ୍ତୁ । ଲୋକେ ସେଉଟା ତ ବୁଝୁନାହାନ୍ତି । ଜମି କଣି ନେବା ବନ୍ଦ ହେଉ । ଆମର କଛୁ କଛୁ ଜମି ଥାଉ, କେବେ କାମରେ ଆସିବ । ତାଙ୍କ ଜମିରୁ ଫସଲଟା ଆମୁକୁ ବେପାର ପାଇଁ ମିଳିଲେ ହେଲ । ଜମି ତାଙ୍କର, ଫସଲ କମେଇବା ତାଙ୍କର, ତାଙ୍କୁ କଛୁ ଖାଇବାକୁ ଛାଡ଼ିଦେଇ ବାକତକ ବୋହିନେବା କାମ ଆମର ।''

ଉଜାଡ଼ୁ କହଲ, ''ଭୁ ବ ଉଣା ନୋହୁଁ, ଅସଲ ଡମ୍-ପଟ୍‌କାର୍ ।''

କାନ୍‌କଟା ହସିଲ, କହଲ, ''ପଟ୍‌କାର୍ ନହେଲେ ତୋ ଶାଳୀକୁ ବାହା ହ'ନ୍ତି ?''

କାମ୍‌ପସି ଠିଆହୋଇ ହସୁଥାଏ ।

କାନ୍‌କଟା ଗମ୍ଭୀର ହେଲ, କହଲ, ''ସବୁ କଥା ସମସ୍ତିଙ୍କୁ କହହୁଏ ନାହିଁ । ଏବେ ଶୁଣ୍, ସୋଉ କଥା ସେଠି କହୁଥିଲ । ବେପାରର ବାଟ ଖୋଲିଛୁ ଟିକଏ, ଯାହାହେଲେ ମିଳୁଛି, ମିଳୁଥିବ । ତାକୁ ରଖିବାକୁ ହେଲେ ଆହୁରି କଛୁ କାମ କରିବା ଦରକାର । ରାଜ୍ୟର ସବୁ ହାଲଚାଲ୍‌ରେ ହାତ ପକେଇବା ଦରକାର । ଗାଁରେ ଗାଁ ମୁଣ୍ଡିଆଳ ଥାଉ, ସେ ବସି ବଚ୍ଛର କରୁ କେତେ ଭେଦା କଏ ଦେବ, କେଉଁ ବଣଟା ହଣା ହେବ, ଜଳୁ ହୁରୁଡ଼େଇ ଯିବେ କଏ କଏ । ଲୋକେ ବୁଝନ୍ତୁ, ଅସଲ ଆମେ, ଖାଦ ଉଣା ପଡ଼ିଲେ ଆମେ ଆଣି ଦବୁଁ, ଯାହା ଲୋଡ଼ା ଥିଲେ ଆମେ ଦେବୁଁ । ଲୋକେ ଆମୁକୁ ମାନନ୍ତୁ, ଯେମିତ ପଛେ—ଆମେ ଯାହା କହବୁଁ ତା ହେବ ।''

''ହୋଇପାରିବ'', ଉଜାଡ଼ୁ କହଲ, ''କଳୁ ଭୁ ଶୁ କଥାରେ ନୁହେଁ । ଫର୍ଚ୍ଚ ଲାଗିବ । ଲଭ କମିବ ।''

''ଧନକଅ ଦରକାର ନା ସବୁଧନଅ ଦରକାର ଉଜାଡ଼ୁ ? ଏତେ ଏତେ ଖାଉଛୁଁ କଛୁ ଛାଡ଼ବା ନାହିଁ ? ଏତକ କ'ଣ ? ଆହୁରି କାମ ଅଛି ଶୁଣ୍ । ରାଜ୍ୟ ଚଳାଚଳ ବ ଆମୁକୁ ବୁଝିବାକୁ ପଡ଼ିବ । ସୀମା କେମିତ କଗା ହେଉଛି, ଘାଟି କେମିତ କଗା ହେଉଛି, ତା' ତ ଆମେ ଦେଖିବୁଁ, ମୁଣ୍ଡମାଝିମାନଙ୍କ ନାଁ ଧର କହ କହ ଦେଶର ଶାସନ ଆମର ମନଇଚ୍ଛା ସଜାଡ଼ ନେବୁଁ, ଅସଲ କାମ ପଡ଼ିବ ଲଢ଼ୁଆ ଆଟ ପାଟକୁ ଗଲବେଳେ । ସେଇଟା ଏବେ ଠିକ୍ ନାହିଁ ଉଜାଡ଼ୁ ।''

"ଠିକ୍ ଥିଲେ କି ନଥିଲେ ଆମେ ସେଠି କ'ଣ କରିପାରିବା କାନ୍‌କଟା ? ଆମ କଥା ସେମାନେ ମାନିବେ ନା ସତେ ଆମେ ନିଜେ ଆଉ ଭର୍ତ୍ତି କରିବା ?"

"ବୁଇଟାଯାକ ହେବ । ସେଇଟା ହେଲା ରାଜ୍ୟର ଠେଙ୍ଗା, ଯାହାକୁ ମାର କହିଲେ ମାରିବେ ।"

"କିଏ କହିବ ? ତୁ ?"

"ଦେଖିବୁ ରଇଥା, ଆଗ ମୁଁ କହିଲା ପରି କାମ ହେଉ । ତାଙ୍କ ଭିତରେ ଆମ ଲୋକ ବି ଆଆନ୍ତୁ ପୁରାଏ ।"

"ଆମ ଡମ୍‌ମାନେ ଲଭର ବାଟ ବେପାରର ବାଟ ଛାଡ଼ି ଆଟରେ ମିଶିବେ ? କ'ଣ ଜୁରିଆ କାମ କରିବେ ବୋଲି ?"

"ଗାଁ ଜୁର କଲେ ଲୋକ ଉଠିବେ । ଆମ ଲୋକ ବି ପାଇକ କାମ କରିବେ ।"

"ନିଜ କାମ ଛାଡ଼ି କିଏ ଯିବ ?"

"ଟୋକାମାନେ ଯାଉନ୍ତୁ କେହି କେହି । ଆଉ, ସେଠି ବାହାରର ଲୋକ ରହିବେ, ଆମେ ତାଙ୍କୁ ପୁରେଇବା, ତାଙ୍କ ପାଇଁ ଭୂମିବାଡ଼ କରେଇଦେବା, କେତେ ପାଇକ ଲୋକ ବି ମିଳିବେ, ପଇସା ଦେଲେ କିଏ ନଆସିବ ?"

"ମୁ ଣ୍ଡାମାଝିମାନେ ରାଜିହେବେ ?"

"ଶୁଣିଲୁ ତ ଉଜାଡ଼ୁ, ସେମାନେ ମନା କରିବେ ନାହିଁ । ଆମେ ବି ଯାହା କରିବୁ ତାଙ୍କ ନା କହିବୁଁ । ସେମାନେ ମଦ ପିଅନ୍ତୁ, ଆମେ ରାଜ୍ୟ ଚଳେଇବୁ ।"

"ଆଉ ସେ ଆଟ ଆମକୁ କାହିଁକି ମାନିବେ ?"

"ଶୁଣିଲୁ ତ, ତାଙ୍କ ଝେବର କେହି ବୁଝୁନାହିଁ, ସେମାନେ ପଳେଇଛନ୍ତି । ଆମେ ଯାଇ ବୁଝିବୁଁ । ଲୋକଙ୍କୁ ମୁଣ୍ଡାମାଝି ମଣ୍ଡଳର ନା କହିବୁଁ, ଡରେଇବୁଁ, ବୁଝେଇବୁଁ, ତାଙ୍କଠୁଁ ଅସୁଲ୍ କରି ଆଟକୁ ଦଆଇ ଦେବୁଁ । ଆଟକୁ ମୁଣ୍ଡାମାଝିମଣ୍ଡଳର ନା କହିବୁ, ଆମ ପାରିଲାପଣ ବି ବୁଝେଇବୁଁ, ତାଙ୍କୁ କାମ ଦରଗିବୁଁ, ମାନିବେ ସେମାନେ । ନମାନିଲେ କିଛି ପାଇବେ ନାହିଁ । ଭଲ ଆଟ ବୋଲି ନୁହେଁ, ଯେ ଯେଉଁଠି ରାଜ୍ୟ ପାଇଁ କାମ କରୁଛି ସେ ଆମ ଲୁହାରେ ରହୁ । ତୋ ହାତରେ ଶାସନ କ୍ଷମତା ନରହିଲେ ତୋ ହାତରୁ ଧନ ବି ଲୋକେ କାଢ଼ିନେବେରେ, ସେଇଟା ତେମେ କେହି ବୁଝିପାରିଲ ନାହିଁ ।"

"ହେଲା । ଧନ ଥିଲେ କ୍ଷମତା—"

"ଆଉ ଧନ କମେଇବାକୁ, ଧନ ରଖିବାକୁ କ୍ଷମତା ଲୋଡ଼ା । ସେଥିପାଇଁ କ୍ଷମତା ରଖିବାକୁ ବି ଧନ ଲୋଡ଼ାହୁଏ ।"

"ସତ କହୁଚୁ ଯେ କାନ୍‌କଟା, ବଡ଼ ଅଡୁଆ ଅଡୁଆ ଲାଗୁଛି । ଡର ବି ମାଡ଼ୁଛି । ବେପାର ଚିକିଏ କରି ବଞ୍ଚିବାକୁ ତ ଏତେ ଫନ୍ଦିଫିକର, ପୁଣି କ୍ଷମତା ରଖିବାକୁ ଚେଷ୍ଟାକରି ଆହୁରି ଫନ୍ଦିଫିକର, ମୁଣ୍ଡ ଖରାପ ହେବ । ତେବେ ବେପାର ନୁହେଁ, ରାଜୁତି କରିବାକୁ ତୋ ମନ ।"

କାନ୍‌କଟା କହିଲା, "ତା ନୁହେଁ କ'ଣ ? ମୁଁ ରାଜା, ତୁ ମନ୍ତ୍ରୀ, ତୋ ଶାଳୀ ହବ ରାଣୀ । ନୁହେଁ ? ଶୁଣ୍, ପଶା ଖେଳିବା ଯାହା, ବିଦେଶ ଆସି ବେପାର କରି ଧନ କମେଇବା ସେଇଆ । ବେପାରଠୁ ବଡ଼ ପଶାଖେଳ ନାହିଁ । ଆମେ ଜିତୁଛୁ; କିନ୍ତୁ ଡର ତ ପଦେ ପଦେ । କ୍ଷମତା ନଥିବାଯାକେ ଡର ରହିଥିବ । ହାତକୁ କ୍ଷମତା ଆସିଲେ ଡର ଗଲା । ସେଥିଠୁଁ ରଜା ହେବା କଥା ତ ? ରଜା ଚିହ୍ନା ପଡ଼େ, ତା' ମୁଣ୍ଡରେ ପାହାର ପଡ଼େ । ଯେ ରଜା ନହୋଇ ରଜାପରି କ୍ଷମତା ପାଏ, ଧନ ପାଏ, ସେ ଚିହ୍ନା ନପଡ଼ି ଦୁଧସର ଖାଏ । ଆମେ ରଜା ନୋହୁଁ, ଆମେ ସେବକ, କନ୍ଧରାଜ୍ୟ ରଇତ ରାଜ୍ୟର ସେବାକାମୀ ।''

ଦହେଁ ହୋ ହୋ ହସିଲେ ।

ରାପ୍‌ଟାବାଲି ଗାଁ ପାଖ ପର୍ବତ ଢାଲୁରେ ଡାବ୍ରିକ ମାଝି ତା'ର ସାନ ତାଷ-କୁଡ଼ିଆରେ ବସି ଆକାଶକୁ ଚାହିଁଥାଏ । ସାମ୍ନାରେ ଦୂର ପାହାଡ଼ ଉପରେ ଧୂଆଁଳିଆ ମେଘର ପର୍ଦ୍ଦାରେ ଗୋଟାଏ ବଡ଼ ଇନ୍ଦ୍ରଧନୁ । ଶ୍ରାବଣ, ଉପରେ ଚକ୍‌କଣ ହୋଇ କଳା ମେଘ ଅମ୍ପି ରହିଛି । ବାଆଁ ଡାହାଣେ ଢାଲୁଢାଲୁଆ କ୍ଷେତ ଉପରେ ଅରାଏ ଅରାଏ ଯୋଗଷ ଫୁଲିଆ ଖରା, ପଟି ପଟି ଚେକା ଚେକା ହୋଇ ନାନା ବର୍ଣ୍ଣ, କଳା, ନେଳି, ଶାଗୁଆ, କହରା ଆଉ ହାଲୁକା ହଳଦିଆ ।

ଇନ୍ଦ୍ରଧନୁର ସେହି ବିଚିତ୍ର ରଙ୍ଗଗୁଡ଼ିକ ! "ମେଘ ପାଚିଛି ।'' ସେ ମନେ ମନେ ବାରମ୍ବାର କହିହେଲା, କିନ୍ତୁ ଭାଷାରେ କିମ୍ବା ଧାରଣାରେ ସେ ଇନ୍ଦ୍ରଧନୁକୁ ଅନ୍ୟ କିଛି ବୋଲି ଭାବିପାରେ ନାହିଁ । ତାକୁ ପଚାଶ ବର୍ଷ ହେଲା, କେତେଥର ଦେଖିଛି ସେ ଆକାଶରେ ଏ ବିସ୍ମୟକର ଦୃଶ୍ୟକୁ, ଆଉ ସବୁଥର ଅନୁଭବ କରିଛି ନିଜ ଭିତରେ ଗୋଟିଏ ଆନନ୍ଦର ଉନ୍ମାଦନା, ପୁଣି ସେ ଉତ୍ସାହରେ ଆନନ୍ଦରେ ହୋଇଯାଇଛି ଗୋଟିଏ ବଢ଼ିଉଠୁଥିବା ଟିକିଚୁଆ, ଇନ୍ଦ୍ରଧନୁ ସଙ୍କେତ ଦେଉଛି—ତା' ଭିତରେ ଅଛି ଅକଳନ ଶକ୍ତିର ପ୍ରବଣତା, ଯେ ବଢ଼ୁଥିବ, ଫୁଟୁଥିବ, ମାଡ଼ିଚାଲିଥିବ, ଅଟକିବ ନାହିଁ ।

ତଳେ ଶାନ୍ତିରେ ଅଲସେଇ ଆଉଜି ପଡ଼ିଛି ଫସଲ ଭର୍ତ୍ତି ହାଣ୍ଡିପରି ଉପତ୍ୟକା, ସେପାଖେ ଢାଲୁ ଉପରେ ଗାଁ, ଦାଢ଼ରେ ଠିଆହୋଇଛି ଢେଉଢେଉକା ପର୍ବତ, ତା'

ଉପରେ ତା' ଉପରେ, ଜଙ୍ଗଲ ପୂର୍ଣ୍ଣ, ବଣ ପାହାଡ଼ ଦିଶୁଛି ଇନ୍ଦ୍ରନୀଳ, ଧାଗୁଆ, ଶୁଆ-ପକ୍ଷିଆ, ତା' ଉପରେ ମେଘ ବାମ୍ଫ ଫୁଟିଛି ଧୂରୁସ ଫୁଲପରି ।

ମେଘ ପାଚିଛି, କ୍ଷେତରେ ପାଚିଛି ସୁଆଁ, ମାଣ୍ଡିଆ, କୋସ୍ଲା, ଆଉ କୋଣ୍ଡା ଧାନ—ଲଦଆ, ସିଙ୍କଣିଆ, ବୃନ୍ଦାଖଣ୍ଡ, ଲକ୍ଷ୍ମୀକୁଣ୍ଡ ଜାତର । ପାହାଡ଼ ତଳ ତଳ କ୍ଷେତରେ ପଲପଲ ମୟୂର ଚରୁଛନ୍ତି ଦିଶୁଛି, କେତେ କୋଡ଼ ହେବେ ?

ପାହାଡ଼—କ୍ଷେତଯାକ ଏଠିସେଠି ମଣିଷ, ସେମାନେ କେଞ୍ଚାରେ ଖୋଳେଇ ଖୋଳେଇ କାନ୍ଦୁଲ ( ବଡ଼ ହରଡ଼ ) ମଞ୍ଜି ପୋତୁଛନ୍ତି । ସେହି କାମ କରୁଥିଲା ଯେ ଜନେ, ତାର କୁଡ଼ିଆରେ ଟିକଏ ବସିପଡ଼ି ପିକା ଟାଣୁଛି ।

ଡାବୁକ ତଳର, ଉପରର, ଘୂରକରର ଚହ୍ଲା ଦୃଶ୍ୟକୁ ଶାନ୍ତ ଆନନ୍ଦରେ ଆଖିରେ ପିଉଥାଉଥାଏ, ଅନୁଭବ କରୁଥାଏ, ଏଇ ତା'ର ପୃଥିବୀ, ତା' ସଂସାର, ସମାଜ ଓ ତା'ର ଅସ୍ତିତ୍ୱ, ଅତୀତ କି ଭବିଷ୍ୟତ ବୋଲି ଭାବିଲେ ବି ଏଇ ମୁହୂର୍ତ୍ତ ଛଡ଼ା ତା'ର ଅନ୍ୟକିଛି ଧାରଣା ଆସେ ନାହିଁ ।

ବର୍ଷକୁ ବର୍ଷ—ଉପତ୍ୟକା ଡାକେ, କହେ ମତେ ଓସାର କର, ପର୍ବତ ଡାକେ, କହେ ବଣ ହାଣ୍, ଆହୁରି ଜମି କର୍, ମାଟି ଡାକେ, କହେ ମତେ ଚାଷକର, ବହନ ବୁଣ୍, ଫସଲ ଖା । ଜାଆଦା, ସମ୍ବର, କୋଟ୍ରା ଡାକୁଥାନ୍ତି, କହନ୍ତି ହେଇଟି ଆମେ । ତାଙ୍କରି ସଙ୍ଗେ ମିଶି, ତାଙ୍କରିଠୁଁ ଖାଇ ମଣିଷ ବଞ୍ଚେ, ବଢ଼େ, ସଂସାର କରେ, ସବୁ ଏଇଠି । ଏଇଠୁ ଜନ୍ମ, ଏଇଠୁ ଖାଅ, ମରି ପାଉଁଶ ହୁଅ ଏଇଠି । ଡାବୁକ ଭାବୁଥାଏ । ସବୁ ମିଶି ବସୁଧା, ମା' ଧରିତ୍ରୀ ।

ଆଗେ ବାହାର ଦୁନିଆଁ ସଙ୍ଗେ ସମ୍ପର୍କ ଥାଇ ନଥିଲା ପରି ହୋଇଥିଲା ତା'ର । ଯାହା ଦରକାର ଉପୁଜିବ ଏଇ ଗାଁରୁ, ନଝଟିଲେ ଉପୁଜିବ ନାହିଁ, ମେଘ ନପାଚିଲେ ଉପୁଜିବ ନାହିଁ । ସବାରୁ ଲୋଡ଼ା ହେଉଥିଲା ଲୁଣ, କୌପୁନୀ, କଉଡ଼ିଆ, ଲୁହା, କେବେ ଆଉ କିଛି, ଅଷ୍ଟମାଝି ମଣ୍ଡଳ ସେଥିପାଇଁ ଜିନିଷ ଦେଇ ତଳଦେଶକୁ ଲୋକ ପଠାଇ ବଦଳରେ ସେସବୁ ମଗାଇ ଆଣନ୍ତି, ସେମିତି ଜିନିଷ ବଦଳଦେଇ ଗାଁ ଗାଁକର ଲୋକ ତାକୁ ବାଣ୍ଟି ନଅନ୍ତି, ଅତି ଅଳ୍ପକେ କାମଚଳେଇନେବା ଅଭ୍ୟାସ ପଡ଼ିଯାଇଥିଲା । ତା'ଛଡ଼ା ବର୍ଷକେ ଥରେ ଗାଁ ଯାକରୁ ଭେଟି ଉଠାଇ ଗାଁର ହିଡ଼ମ୍ଭ ଜିନିଷରୁ କିଛି ଅଷ୍ଟମାଝି ମଣ୍ଡଳକୁ ପଠାଇବା ଦରକାର ପଡ଼େ, ସେ ଖଜଣା, କେଣ ଜଣକ ଆସୁଥିଲା ତା' ପରିମାଣ ଆଗରୁ ଧାର୍ଯ୍ୟ, ଆୟ ତୁଳନାରେ ସେ କିଛି ନୁହେଁ, ରଜାର ପ୍ରାପ୍ୟ ବୋଲି ଦେବାକୁ ପଡ଼େ ଦିଆଯାଏ, କ'ଣ ହୁଏ ସେ କେବେ ଭାବିନାହିଁ ।

ତା'ପରେ ଆସି ପହଞ୍ଚିଲା ନୂଆ ଯୁଗ—ଡାବୁକ ଭାବିଲା—ଡମ୍ବ ଆସିଲେ, ବେପାର କଲେ, କେତେ ନୂଆ ନୂଆ ଦରକାରି ଜିନିଷ ଆସିଲା, ପିନ୍ଧିବାକୁ ରଙ୍ଗ ରଙ୍ଗର

ଝାଡ଼, ରଙ୍ଗରଙ୍ଗର ମାଳି, କାଚ, ଜାତଜାତିକା ଅଳଙ୍କାର, ଆସିଲା ସୁନା, ରୁପା, ସୁଆଦିଆ ଖାଦ୍ୟ, ମଦ, ଡମ୍ବବାଦ୍ୟ ବାଜିଲା, ନାଚ ତେଜିଲା, ଦିଶିଲା ଜୀବନରେ ନୂଆ ସୁଖ ମଉଜ, ହାଟ ବଜାର, ମନଇଚ୍ଛା ଜିନିଷ କିଣ, ବଦଳରେ ଜିନିଷ ଦିଅ, ଦୂରକୁ ବି ଯିବାକୁ ହେବ ନାହିଁ, ଗାଁ ଗାଁକେ ପସରା ବୋହି ଡମ୍ବ ନହେଲେ ଡମ୍ବୁଣୀ, ଗାଁରେ ବୋଲହାକ କରିବାକୁ ଡମ୍ବ ବାରିକ୍, ଯାହା ଦରକାର ତାକୁ କହିଲେ ହେଲା । ମଉଜ୍ ପାଇଁ ବଦଳ ଦେଉ ଦେଉ ଏ ବର୍ଷ ଫସଲ ସରିଗଲା, କେତେ ଲୋକ ଫଳଗଛ ବନ୍ଧାଦେଲେ, କେତେ ଲୋକ ଉଧାରରେ ନେଇଛନ୍ତି ପଛେ ଫସଲ ଦେବେ । ଭାବୁ ଭାବୁ ଡାବୁକ ମନ ଭିତରେ ବୁଗୁବୁଗୁ ହେଲା ।

ଅକାଳ ପଡ଼ିଗଲା, ଅକାଳ ! ଏଡ଼େ ଅଭାବ ଆଗେ ତ କେବେ ପଡ଼ିନଥିଲା ! ନୂଆ ଜିନିଷ ପାଇବା ଲୋଭରେ ଘରୁ ଘରୁ ଏତେ ଏତେ ଫସଲ ବୁହାଇଦେବା କେବେ ଠିକ୍ ହୋଇନାହିଁ । ସେ ଲୋକଙ୍କ କେତେ ବୁଝେଇଛୁ—ଯାହା ମହଙ୍ଗା ତା' ଆମର କିଣିବା ଲୋଡ଼ାନାହିଁ । ମାନିଲା କିଏ ? ମାଇପେ ତ ବେଶି ବାଇ ହେଲେ । ଦେବତା ବି ଦାଉ ସାଧିଲେ ଏଥିକିବେଳେ, ବେଜୁଣୀ ବାରମ୍ବାର ଦେବତା-ଲାଗି ହୋଇ ପାଟିକଲା, ଗୋରୁ ମରିବି ବଳି ପକାଅ । ଏତେ ବଳି ! ବାରିକ୍ ସେ ଭୁଲକୁ ନେଇ କୁଆଡ଼େ ଯାଏ ? କ'ଣ କରେ ?

ଯାହା ଯାଇଛି ଯାଉ, ଚିନ୍ତା ନାହିଁ, ପୁଣି ଫସଲ ବଢ଼ିବ ହେବ, ପୁଣି ଗୋଠ ପୂରିଉଠିବ ।

ଡାବୁକ ଉଶ୍ବାସରେ ନିଶ୍ୱାସ ମାରିଲା । ଦେବତା ବି ମନ ବଦଳେଇବେ । ଦୟା କରିବେ ।

କିନ୍ତୁ ଏ ମୁଣ୍ଡାମାଝିମଣ୍ଡଳ ! ଦିନୁଦିନ ତାଙ୍କ ମାଗଣ ବଢ଼ିଯାଉଛି । ଆଗେ ନଥିଲା, ଗୋରୁ ଦିଅ । ଫସଲ ଦିଅ । ଏଇଟା ଦିଅ । ସେଇଟା ଦିଅ । କାହିଁକି ? ସେ କାହାର ଖାଏ ନା ଧାରେ ? ସେ ଉକ୍ତୁଳୁଛି ମୁଣ୍ଡାମାଝି ଆଉ ତା'ର ମଣ୍ଡଳ ସଭା କେବେ କି ଉପକାର କଲେ ତା'ର ?

କଥାକଥାକେ ଆସି ପହଞ୍ଚୁଛି ମୁଣ୍ଡାମାଝିର ବାରିକ୍, ଉଜାଡ଼ୁ ଡମ୍ବ । କେବେ କେବେ କାନ୍‌କଣ୍ଟା ବି ଆସେ । ଆଗେ କୌପୁନୀ ଝେଣ୍ଡେ ମାରି ବାରିକ୍ ଆସୁଥିଲା, ନେହୁରା ହୋଇ ବୁଝେଇ କହୁଥିଲା, "ମୁଣ୍ଡାମାଝି କହିପଠେଇଛି—" ବୁଝୋଉଥିଲା, "ମୁଣ୍ଡାମାଝିମାନେ ଦେଶ ଚଳାନ୍ତି, ଦରକାର ନଥିଲେ ସେ ମାଗନ୍ତା ? ମେଢ଼ଦେଲେ କାଲେ ଆସିବେ ଲଢ଼ୁଆ ଥାଟ !" ଏବେ ଡମ୍ବମାନେ ଲୁଗା ଅଙ୍ଗୀ ପିନ୍ଧି ବାଡ଼ି ଧରି ବାହାରନ୍ତି, କହନ୍ତି, "ଏ ପୋଷାକ ଆମର ଗୋଟାଏ ଚିହ୍ନ, ମୁଣ୍ଡାମାଝିମଣ୍ଡଳ ଅଧିକାର ଦେଇପଠେଇଛନ୍ତି, ତାଙ୍କର ଚିହ୍ନ ଏ । ଆମେ ଯାହା କହୁଛୁଁ ତାଙ୍କର କହିବା କଥା କହୁଛୁଁ, ସେ ଏ ରାଜ୍ୟ ଚଳେଉଛନ୍ତି, ତାଙ୍କ ଆଦେଶ ଅମାନ୍ୟ କଲେ

ଦଣ୍ଡବ ।" ସେମାନେ ନେହୁରୁ ହୁଅନ୍ତି ନାହିଁ, ମୁଣ୍ଡାମାଝିମଣ୍ଡଳ ନାଁରେ ମାଗଣ ଦାବିକରନ୍ତି, ଖେକ୍‌ଠୋକ୍ କଥା କହନ୍ତି ।

"କାହିଁକି ଆମେ ଦେବୁଁ ?"

"ପାଲୁ (କର) ପକେଇଛନ୍ତି ସେହିମାନେ, ତାଙ୍କ ପଟ୍ଟର । ରାଜ୍ୟରେ ଘର କରିଛ, ଘର-ପାଲୁ ଦେବ । ଜମି ଚଷୁଛ, ଜମି-ପାଲୁ ଦେବ । ବଣ ଚଷୁଚ, ବଣ-ପାଲୁ ଦେବ, ବାଟ ହୋଇଛୁ ବାଟ ଚାଲୁଛ, ବାଟ-ପାଲୁ ଦେବ, ଥାଟ ରହିଛନ୍ତି, ଥାଟ-ପାଲୁ ଦେବ, ମୁଣ୍ଡାମାଝିମଣ୍ଡଳ ଅଛୁ, ମଣ୍ଡଳପାଲୁ ଦେବ..."

ଆଗେ ଆସୁଥିଲେ ଏକୁଟିଆ, ମାଗଣ ଭିକାରି ପରି, ଏବେ ସଙ୍ଗରେ ଆଣୁଛନ୍ତି ଦଶଜଣ, କୋଡ଼ିଏ ଜଣ, ଡମ୍ବ, ପାଇକ, କନ୍ଧ, ସମସ୍ତେ ଲଢୁଆ ଥାଟର ଧାଂଡ଼ା, ପିନ୍ଧିଛନ୍ତି ଜର୍ଦ୍ଦିଆ, ହାତରେ ଖଣ୍ଡା, ବର୍ଚ୍ଛା, କାଠ, କାନ୍ଧରେ ଧନୁ । ଡର ସହିବ ନାହିଁ, ପାଟିକରୁଥିବେ—"ଖାଇବାକୁ ଦିଅ । ପାଲୁ କାଢ଼ିଦିଅ ।"

ଚୁପ୍‌ଚାପ୍ ଦେଇଦେଲେ ହୁଏ, ଦେଲେ କ'ଣ ସରିଯିବ ? ନହେଲେ ଗୋଲମାଲ ଲାଗିବ, ଧରାଧରି ମରାପିଟା, କ'ଣ ଥାଏ ସେଥିରେ ?

ସେଇଆ ଭାବି ତ ସେ ସେତେ ଯୁକ୍ତି କଲେ ବି ଅମାନିଆଁ ହୋଇନାହିଁ; କିନ୍ତୁ ଅଦୋଉତ ସେ ବଢ଼ି ବଢ଼ି ଚାଲିଛି । ଆଗେ କେହି ଆସିଲେ ବର୍ଷକେ ଥରେ, ପଛେ କେତେ ବର୍ଷ ହେଲା ବାରନ୍ଦ୍ ହେଲା ଦିନଠୁଁ ବର୍ଷକେ ଦି ତିନିଥର, ଏବେ ତ ମାସକୁ ଥରେ !

ଡାବୁକ ରାଗୁ ରାଗୁ ନିଆଁ ହୋଇଯାଇଥିଲା । ଉପତ୍ୟକା ଆଡ଼କୁ ମୁହଁକରି ଗର୍ଜନ ଛାଡ଼ିଲା, "ଏନ୍ଲାତକ ? (କାହିଁକି) !"

ପ୍ରଶ୍ନଟା ଫୋପାଡ଼ି ଦେଲାପରେ ତାକୁ ଯେପରିକି ଭରସା ଲାଗିଲା । ପ୍ରକୃତିର ଶାନ୍ତ ସୌନ୍ଦର୍ଯ୍ୟ ଉପଭୋଗ କେତେବେଳୁ ତା' ମନରୁ ଉଭେଇଯାଇଥିଲା, ଅନୁଭବ କରୁଥିଲା, ନାନା ଅଜଣା ହାତ ତାକୁ ଦଉଡ଼ିରେ ବାନ୍ଧିପକାଉଛି, ସେ ଛଟପଟ ହେଉଛି, ପାଖେ ତା'ର ନିଜୁଟିଆ 'ମୁଁ' ପଣ, ପାଖେ ତାକୁ କଲବଲ କରୁଥିବା ବାହାର ଦୁନିଆଁ । ଆପଣା ଭିତରୁ ପ୍ରଶ୍ନଟାଏ ଫୋପାଡ଼ି ଦେଲାପରେ ସେ ବନ୍ଧନ-ଅନୁଭୂତି ଆପେ ଭଲ ହୋଇଯାଉଛି, ଯେପରିକି ସେ ନାହିଁ । ମନ ତା'ର ଅସ୍ତିତ୍ୱକୁ ଛୁଉଁନାହିଁ, ତେଣୁ ସେ ନାହିଁ । କେତେଥର ଏମିତି ସେ କାହିଁକି ବୋଲି କହେ, ମନେ ମନେ ସ୍ୱାଧୀନ ହୁଏ । ପୁଣି ଯେତେବେଳେ ମାଗଣ ଆସେ ସେତେବେଳେ ସେ ନିଜେ ପଚାରିଥିବା ପ୍ରଶ୍ନ ତା'ର ମନରୁ ଉଭେଇଯାଏ, ସେ ଦିଏ, ତା'ପରେ ପୁଣି ମନେ ମନେ ହୁଏ ସ୍ୱାଧୀନ । ମନ ଭିତର ଗୁରୁଗୁରୁ ଜମିଆସୁଛି, ସରିନାହିଁ । ଡାବୁକ ଦୃଶ୍ୟ ଦେଖୁଛି —ଫସଲ, କ୍ଷେତ, ଯେଉଁ ଗାଲୁ ଅଗ୍ରକରେ ସେ କାନ୍ଦୁଲ ମଞ୍ଜି ପୋତୁଛି ତାକୁ ବ—

ଆପନ୍ତା ପରିପୂର୍ଣ୍ଣତା, ସେ ସାଗୁଆ, ହଳଦିଆ । ତା' ଉହାଡ଼ରେ ତା'ର ସ୍ତ୍ରୀ, ତା' ଘରପୁଅ, ଦୁଇ ବୋହୂ, ତିନି ଝିଅ, ଦୁଇ ଜ୍ୱାଇଁ, ନାତିନାତୁଣୀ, ତା'ର ତିନି ଭାଇ, ତାଙ୍କ ପରିବାର, ମା' ବୁଢ଼ୀ, ତା' ଗାଁ ଲୋକେ, ତା' ସମାଜ । ତାକୁ ବେଢ଼ି ସମସ୍ତେ, ସମସ୍ତିଙ୍କୁ ଗୁଣ୍ଡେଇ ପୁଣ୍ଡେଇ ସେ ନିଜେ ।

ତା' ନିଜ ଇଚ୍ଛାରେ ସେ କାମକରେ, ଫୁର୍ତ୍ତି କରେ, ବିଶ୍ରାମ କରେ, ତାକୁ ବାଧ କରିବାକୁ କିଏ ଅଛି ? ତା ମନକଥା ସେ ମନଖୋଲି କହିବ, ଇଚ୍ଛା ନହେଲେ ନକହିବ, ତାକୁ ବାଧ କରିବ କିଏ ? ସେ ସମ୍ପତ୍ତି ଅର୍ଜିବ, ସାଇତିବ କି ଫୋପାଡ଼ିବ, ସବୁ ତା'ର ନିଜ ଇଚ୍ଛାରେ, ବାଧ କରିବାକୁ କେହି ନାହିଁ । ଡାବୁକ ଘରିଆଡ଼କୁ ଅନେଇଲା ମାଲିକପଣର ସହଜ ଅନୁରକ୍ତିରେ. "ସ୍ତ୍ରୀ ମୋର, ସନ୍ତାନ ମୋର, ଘରସଂସାର ମୋର । ମୁଁ ସ୍ୱାଧୀନ ।"— ଯେପରି ଏହି ଧାରଣା ତା' ଚେତନାରେ ଗୋଳି ହୋଇଯାଇଥାଏ, ତା' ନିଶ୍ୱାସକୁ ବି ରଙ୍ଗେଇ ଦେଇଥାଏ ।

ପୁଣି ସେ ଓହ୍ଲେଇଗଲା ଆହୁରି କାଦୁଅ ମଞ୍ଜି ପୋତିବ ବୋଲି । ଆସିଗଲା ଅସରାଏ ବରଷା, ଯେମିତି ପଥର ଉପରେ ପଡ଼ି ନଗଡ଼ୁଥାଏ ସେମିତି ତା' ଉପରେ ପଡ଼ି ନଗିଡ଼ି ଗଳିଲା ମାଟିକୁ । ଡାବୁକ କେଆରେ ଗେଞ୍ଜୁଥାଏ, ମଞ୍ଜି ପୋତୁଥାଏ, ନଇଁପଡ଼ି ପୋତି ପୋତି ଚାଲିଥାଏ । କୌପୁନୀ ଝଣ୍ଡେ ପିନ୍ଧିଛି, ପିଠିରେ ପନ୍ଦ ପିନ୍ଧେଇ ହୋଇ 'ତଲ୍ଲା' (ଡାଙ୍କୁଣି), ମୁଣ୍ଡରେ ପନ୍ଦ ପିନ୍ଧେଇ (ତଲ୍), ଦେହ ଜୁଡ଼ୁବୁଡ଼ୁ ।

ହାତ କାମର ନିଶା ଦେହରେ ଚଢ଼ିଛି । ସେ ଚଞ୍ଚଳ କରି କାମ କରିବ, ସୁତୁରି କାମ । ଆଉ କିଛି ମନେନାହିଁ ।

ସେଦିନ ଶ୍ରାବଣ ମାସରେ ଥରେ ମେଘ ନଥାଏ, ଦିନ ତିନିଟା ବେଳ ହେବ, ଓଦା ଘାସ କ୍ଷେତ ଓ ବଣ ଉପରେ ଖରା ଝିକ୍‌ଝିକ୍ ହେଉଥାଏ, ଆକାଶ ତଳରେ ମେଘମାନେ ଗୁଣ୍ଡି ହେଉଥାନ୍ତି, ହାଉଳେ ହାଉଳେ, ଚଢ଼େଇ କେତେଗ ମିଶୁଛି ହେଉଥାନ୍ତି, ରାପ୍‌ଟାବାଲି ଗାକୁ ଆସିଲେ କାନ୍‌କଟା, ଉଜାଡ଼ୁ, ସଙ୍ଗରେ ଥାଟରୁ ଦଶଜଣ—ଦି'ଜଣ ପାଇକ, ତିନିଜଣ ଡମ୍ବ, ପାଞ୍ଚଜଣ କନ୍ଧ ।

କାନ୍‌କଟା, ଉଜାଡ଼ୁ ଯେନୁଆ ବାରିକ୍ ଘରକୁ ଗଲେ, ଥାଟର ଲୋକେ ଖେଳେଇ ହୋଇ ବୁଲିଲେ ।

ଯେନୁଆ ଗଲିଲା ଡାବୁକକୁ ଓ କନ୍ଧମାନଙ୍କୁ ଡାକି । ଗାଁରେ କେତେଜଣ ମାଇପେ ବି ଥିଲେ, ସେମାନେ ବି ଗଲେ, ଲୋକଙ୍କୁ ଡାକିବେ ।

ଲୋକ ଆସିବାକୁ ଡେରି ହେଉଛି । ଥାଟରେ ପାଇକ ଓ ଡମ୍ବ ଗଲେ, କାହାର ସିପୁର କ୍ଷେତରୁ ସପୁର ବାମ୍ନା ଆସୁଛି, ଛଣ୍ଡେଇ ଆଣିଲେ ଗୃଗପୁଞ୍ଜା, କୁର୍ହେଇ ଦେଇ ବସି ବସି ଖାଉଥାନ୍ତି ।

କେତେଜଣ କନ୍ଧଙ୍କ ସଙ୍ଗରେ ଡାବୃକ ମାଝି ଆସି ପହଞ୍ଚିଲା । ସେମାନେ ସପୁର ଖାଇବାର ଦେଖିଲା, ଧାଗଡ଼ା ପାଟିରେ ପଚ୍ଚରିଲା, "କୁଆଡ଼େ ସବୁ ଆସିଲ ?"

"ମଣ୍ଡଳ କାମରେ ଆସିଲୁଁ ଡାବୃକ ମାଝି", କାନ୍‌କଟା କହିଲା, "ତତେ ଉକ୍‌ଡୁକ୍‌ଟି ମୁଣ୍ଡାମାଝି ଡକେଇଥିଲା ତୁ ଗଲୁନାହିଁ, ମଣ୍ଡଳ ଲୋକେ ଗଦରଗୁଡ଼ରୁ ଡକେଇଲେ ବ ଗଲୁନାହିଁ", ଯେ ଅଟକିଲା, ଡାବୃକ ମୁହଁକୁ ଚାହିଁଲା ।

ଡାବୃକ କହିଲା, "ତୁ ସିନା କୁକୁର, ତତେ ଡାକଦେଲେ ଧାଇଁଯିବୁ, ମୋର କାମ ନାହିଁ କ ? ଫସଲ କଟାକଟି କ୍ଷେତରେ ଡୋଟାରେ ଲଟାବୁଦା ହଣାହଣି କେତେ କାମ, ମୋ କାମ ଅଟ୍ଟମାଝି ମଣ୍ଡଳ କରିଦେବେ କ ?"

"ସେମିତ କହନାହିଁ, ରାଜ୍ୟକୁ ଯେ ଚଲୋଉଛନ୍ତି ତାଙ୍କର ଅବାଧ ହେବୁ କି ?"

"କ'ଣ ଚଲୋଉଛନ୍ତି ? ତୁ କହ । ଆମ କାମ କରିଦେଉଛନ୍ତି କ ? ଆମୁକୁ ପୋଷୁଛନ୍ତି କ ? କ'ଣ କ'ଣ କରୁଛନ୍ତି ? କହୁନାହୁଁ ?"

"ତୁମର ରାଜ୍ୟ, ତୁମେ ପଚ୍ଚରି, ତୁମେ ବୁଝ । ଆମୁକୁ ହୁକୁମ୍ ହୋଇଛି ଆମେ ପାନୁ ନେବାକୁ ଆସିଛୁ ।"

"ଏଇଟା ପୁଣି କ ପାନୁ ?"

"ଏଇଟା ଆଟ-ପାନୁ । ତୋ ଗାଁକୁ ପନ୍ଦରଟି କୋଡ଼ିଏ ଘରି ଫସଲ, ଦଶଟା ଗୋରୁ । ଆଟରେ ମିଶିବାକୁ ସାତଟା ଧାଂଡ଼ା ବ ଦେବୁ । ଏତକ ଦେଇଦେ, ଆମୁକୁ କିଛି ଖାଇବାକୁ ଖାଦ ଦେଇଦେ, ଆମେ ଯିବୁ ।"

"ନଦେଲେ ?"

"ନ ଦେବୁ କେମିତ ? ଆମେ ଏତେ ଲୋକ ଖାଲି ହାତରେ ଫେରିଯିବାକୁ ଆସିଛୁଁ ?"

ଡାବୃକ ରାଗରେ ଅଙ୍ଗଭଙ୍ଗୀ କଲା । ଗମ୍ଭୀର ହୋଇ ତା' ସଙ୍ଗରେ ତା' ଗାଁର କନ୍ଧମାନେ କାନ୍ଧକୁ କାନ୍ଧ ଲଗାଇ ଠିଆହେଲେ । ଡାବୃକ ରଡ଼ିଲା—

"ନଦେଲେ କଏ ମୋର କ'ଣ କରିପକାଇବ ? ଖାଲି ଦଅ-ଦଅ-ଦଅ, ଆମେ ତୁମ ବାପର ଧନ ଖାଇଛୁଁ ଯେ ଥର ଥର କରି ଆସି ବୋହିନେବ ? ଯା ପଳା ।"

"ସେମିତ ହ'ନା ମାଝି", କାନ୍‌କଟା କହିଲା, "ଏମାନେ ଲଢ଼ୁଆ ଧାଂଡ଼ା, ପଛରେ ରାଜ୍ୟଯାକର ଆଟ ଅଛୁ, ହାତ ଦେଖେଇଦେଲେ ମାଡ଼ିଆସିବେ । ତୋ' ପଛରେ ଖାଲି ତୋର ଗାଁ ଲୋକେ, କ'ଣ କରିପାରିବେ ?"

"ଆରେ ଖାଲି ଗାଁ ଲୋକେ ସେତିକି ନୁହେଁ, ସ୍ୱରାଜ୍ୟଯାକର ଲୋକ ମୋ ପଛରେ ଅଛନ୍ତି । ସବୁ ଗାଁରେ ଏଇ ଜୁଲୁମ୍ ଚଳେଇଛ, କାମ ଦେଖାନାହିଁ, ମୁଣ୍ଡା-ମାଝିମଣ୍ଡଳ ଖାଲି ପାଲୁ ପକାଇବାରେ ଲାଗିଛ ଗାଁକୁ ଗାଁ, ଥରକୁ ଥର । ଆମେ ମାନିବୁଁ ନାହିଁ ସେମିତି ମୁଣ୍ଡାମାଝିଙ୍କି ।"

କନ୍ଧମାନେ ହାତଟେକି କୁଦାମାରି ରଡ଼ି ଛାଡ଼ିଲେ, "ମାନିବୁଁ ନାହିଁ, ମାନିବୁଁ ନାହିଁ ।"

"ଜାଣିଛୁ ଏମିତି ଅମାନିଆଁ ହେଲେ କ'ଣ ହେବ ? ବାଘ ସଙ୍ଗରେ କଳି କରୁଛୁ ମାଝି !"

"ଆରେ ଏତେଥର ଆଉ ଧମକାନା, ବୁଝିଲୁ ? କ'ଣ ତୋର କରିବାର ଅଛି କର୍ । କିଛି ନକହିଲାରୁ ମୁଣ୍ଡାମାଝିଙ୍କ ସାହସ ବଢ଼ିଯାଉଛି । ଆଟ ଧରି ମୋ ସଙ୍ଗରେ ଲଢ଼ିବାକୁ ଆସିବେ, ଏଇଆ ନା ? ଆମେ ଯେତେଜଣ ଅଛୁ, ସେତିକି ଜଣ ମଣିଷ ନେଇ ଆ, ଲଢେଇ କରିବା ।"

"ଏତେ ଗରଜା ମାଝି, ରାଜ୍ୟର ଆଟରେ କେତେ ଲୋକ ଅଛନ୍ତି ତୁ କ'ଣ ଦେଖିନାହୁଁ, ଏମିତି ପିଲାପରି କଥା କହୁଛୁ ? ଆସ ବସିବା, ଥଣ୍ଡାରେ କଥା ହ, ବୁଝ୍, ତୁ, ପାଲୁ ପଡ଼ିଛି, ପାଲୁ ଦେଇ ଦେ ।"

"ସେସବୁ ଠକ କଥା ମତେ ଆଉ କହନା, ତୁମେ ସବୁ ପଳାଅ । ଏଠି କିଛି ମିଳିବ ନାହିଁ । ଆଟ ସଙ୍ଗରେ ଲଢ଼ିବାକୁ ରାଜ୍ୟଯାକର ସବୁ ରଇତ ଉଠିବେ । ଲାଗୁ ଲଢେଇ । ଯେ ଆସିବ କେହି ଜୀବନ ଦେଇ ଯିବନାହିଁ । ସେ ମୁଣ୍ଡାମାଝିମଣ୍ଡଳ ବି ବଞ୍ଚିବ ନାହିଁ । ଚୁଟି ଧରି ଘୋସାରି ଟିକି ଟିକି କରି ହାଣି ପକେଇବୁଁ, ହେଇ ଦେଖ୍ ।" କାହା ଦୁଆର ମୁହଁରେ ଖୁଣ୍ଟଟାଏ ଦାଣ୍ଡରେ ପୋତା ହୋଇଥିଲା, ତାକୁ ଲମ୍ବା ଛୁରୀ କାଢ଼ି ମାରିଲା ସେଠି ଟେକେ, ଶୁଖିଲା କାଠଟା ଦ'ଗର ହୋଇଗଲା ।

ଆଟର ଧାଂଡ଼ା ଦ'ପାହୁଣ୍ଡ ପଛରେ ଯାଇ ଖଣ୍ଡା ଟେକି ଠିଆହେଲେ, ଆକ୍ରମଣ ପାଇଁ ପ୍ରସ୍ତୁତ ହେଲେ । କାନ୍‌କଟା ସେମାନଙ୍କୁ କହିଲା, "ତୁମେ ତୁନି ହୋଇ ଠିଆ-ହୋଇଥିବ ।"

ଶାମ ବଲିଆର ସିଂ କହିଲା, "ଆମ ଆଗରେ ଏ ମୁଣ୍ଡାମାଝିମଣ୍ଡଳକୁ ଅପମାନ କରୁଥିବ ଆମେ ଶୁଣୁଥିବୁ ?"

କାନ୍‌କଟା କହିଲା, "ଦଳପତି ତମକୁ ପଠେଇଛି ଯେ, କାହା କଥା ମାନିବାକୁ କହିଛି ନା ନିଜ ମନଇଚ୍ଛା କାମ କରିବାକୁ କହିଛି ?"

ଶାମ କହିଲା, "ତୋ କଥା ମାନିବାକୁ କହିଛି ।"

ଡାବୁକ ପାଟି କରୁଥାଏ "ଗୁରୁଦେବ, ଆସନ୍ତୁ ଲଢ଼ିବା, ଆସରେ ଡାଙ୍ଗୋଲଙ୍ଗା, କାଠ ବାଡ଼, ଟାଙ୍ଗି ବାଡ଼, ଠେଙ୍ଗା ବାଡ଼, ଧନୁ ବାଡ଼, ଆସ, ତିର-ର-ନାରନା, ତାର-ର-ନାରନା —"

"ହେ ମାଝି", କାନ୍‌କଟା କହିଲା, "ତୁମେ ସବୁ ଲଢ଼ୁଆ ଡାଙ୍ଗୋଲଙ୍ଗା ଗୋଠର କଥା ମୁଁ ଜାଣେ, ତୁ ତୁଣ୍ଡାଟାରେ ଏ ତିର ର-ନାରନା, ତାର-ର-ନାରନା ଯୁଦ୍ଧଡାକ ଦେ ନାହିଁ, ଏବେ କେହି ତୋ ସାଙ୍ଗରେ ଲଢ଼ିବାକୁ ଆସିନାହିଁ ।"

"ଆରେ ଆସିନାହିଁ ! ଆଉ ଏ ଥାଟର ଧାଂଡ଼ା କାହିଁକି ଆସିଛନ୍ତି ? କ'ଣ ନାଚ କରିବେ । ଆବେ ଘେନୁଆ ବାରକ୍, ବଜା ବାଜାଇ, ଏମ ନେ ନାଚ କରିବେ । ହେଲେ, ଏ ଗାଁର ଧାଂଡ଼ୀ ବି ଟାଙ୍ଗି କାଠ ଧରି ନାଚ କରିବ, କୁକୁର ବି ଦାନ୍ତ ଦେଖେଇ ନାଚ କରିବ । ବୁଝିଲୁ ? ଏଠି ତୋ ଥାଟକୁ କି ତୋ ମୁଣ୍ଡମାଝିଙ୍କି କେହି ଆଉ ମାନିବେ ନାହିଁ । ସ୍ବେର ଡକାଏତଗୁଡ଼ାକ, ପରଠୁ ଲୁଟି ଲୁଟି ସମ୍ପତ୍ତି ବଢ଼ାଉଛନ୍ତି, ନିଜେ ଫୁର୍ତ୍ତି ଉଡ଼ାଉଛନ୍ତି, ଆଉ କିଛି କାମ ନାହିଁ । ଯା ପଳା !"

"ଠାବ ଦେଉନାହୁଁ, ଖାଦ ବି ଦେଲୁ ନାହିଁ, ଯିବୁ ନାହିଁ ଆଉ ରହିବୁ କି ମାଝି ? ତୁ ଅଷ୍ଟମାଝିମଣ୍ଡଳ ପାଖେ ଦୋଷୀ ହେବୁ, ସେମାନେ ଥାଟ ପଠେଇବେ, ମତେ ଆଉ ଜିଦବୁ ନାହିଁ ମାଝି ।"

କନ୍ଧମାନେ ପାଟି କରୁଥାନ୍ତି, ଡାବୁକ ପାଟି କରୁଥାଏ, "ପଳା ପଳା ।"

ଆସିଥିବା ଲୋକେ ଲେଉଟିଗଲେ ।

ଡାବୁକକୁ ଘେନୁଆ ମୁହଁ ଶୁଖେଇ କହିଲା, "କୁଆଡ଼େ ବଣ ପର୍ବତରେ ପଳେଇ ଲୁଚିବା ହେଲେ ମାଝି, ସତକୁ ସତ ଥାଟ ଆସି ପହଞ୍ଚିଗଲେ ବାଟ ପାଇବା ନାହିଁ, ହାଣିବେ କାଟିବେ, ବାନ୍ଧିବେ ନେଇଯିବେ ।"

ଡାବୁକ ତା' କାନ ଧରିପକାଇ କହିଲା, "ଆଉ ଦିନେ ସେମିତି କହିଚୁ କି ତୋ ପିଠିରୁ ଗୁଲି ଉତାରିଦେବି । ତୁ ଆମୁକୁ ଗୁନଥାଁ କରିବୁ ବୋଲି କ'ଣ ତତେ ବାରିକ ରଖିଛୁଁ ?"

"ଏଡ଼େ କୋପ ତୋର କେବେ ଦେଖିନାହିଁ ମାହାପ୍ରଭୁ, ତୋ ହିତକୁ କହିଲି ସିନା !"

"ତୁ ବି ମଣିଷ ହୋଇଥିଲେ ତୋର କୋପ ବୁଝନ୍ତାରେ, ଅନ୍ୟାୟକୁ ସହିଲେ ବି ପାପ । ଥାଟ ଅଛୁ ଥାଟ ଅଛୁ କହି କେତେ ଡରରେ ହରେଇ ବାରମ୍ବାର ପାନ୍ତୁ

ପାନୁ କହି ଜିନିଷ ଧରି ପଳେଉଥିବେ ? ଆଜି ଆସି କ'ଣ ନକଲେ ? କାହାକୁ ମାରି ନାହାନ୍ତି, ପଶୁର ନାହାନ୍ତି, ଶଙ୍କରାକନ୍ଦର ସପୁରି ବାଡ଼ିରେ ପଶିଲେ, ସପୁରି ଛିଙ୍ଗି ଖାଇଲେ । ଚୋରଗୁଡ଼ାକ ! ମାଗିଲେ ଦେଇନଥାନ୍ତି ଦ'ଟା ? ନାଇ ନାଇ, ତାଙ୍କୁ ଆଉ ମୁହଁ ଦେଇଥିଲେ ଭଲ ହୋଇନଥାନ୍ତା ।''

''ମୁଁ ତୋ ଭଳିକର ମାହାପ୍ରୁ, ତୋ ହିତପାଇଁ ତୋ ଗାଁ ହିତପାଇଁ କହୁଛି । ମଣ୍ଡଳ ସଙ୍ଗରେ ବାଦ ହେଲୁ, ସେମାନେ ଚୁପ ରହିବେ ନାହିଁ । ଆଗରୁ କିଛି ଉପାୟ ହେଲେ କଣଥା, ହଠାତ୍ ଗାଁକୁ ଚଢ଼ିଆଉ ଘେରିସିବେ, ଚୁପି ଆସିବେ । ତୋ ପରି ଲଢ଼ୁଆ ଲୋକ କଏ ଅଛି ? ମାଡ ବେଶି ଲୋକ ଚୁପି ଆସିଲେ କ'ଣ କରିବୁ ?''

''ସତେ ଯଦି ଆମ ହିତ ପାଞ୍ଚୁଛୁ, ତେବେ ଏବେ ଯା, ଗାଁ ଗାଁ ବୁଲ୍, ସବୁ ଗାଁରେ ଲୋକଙ୍କୁ କହ, ମୁଣ୍ଡାମାଝିମଣ୍ଡଳ ମନଇଚ୍ଛା ଥର ଥର କରି ପାନୁ ମାଗୁଛନ୍ତି, ନଦେଲେ ଥାଟ ପଠେଇବେ, କେହି ଆଉ ତାଙ୍କୁ ନମାନନ୍ତୁ, କିଛି ନଦିଅନ୍ତୁ, ଲୋକେ ଏକାଠି ହୋଇ ନିଜ ଥାଟ ନିଜେ ଗଢ଼ନ୍ତୁ, ଉଠିବା, ଯିବା, ମୁଣ୍ଡାମାଝିମଣ୍ଡଳକୁ ତଡ଼ିବା, ଆଉ ଏ ଜୁଲୁମ୍ ରଖିବା ନାହିଁ ।''

''ତୁ କହିଲେ ମୁଁ ଯିବି ମାଝି, ହେଲେ, ସତେ ଲଢ଼େଇ ଲାଗିଯିବ ?''

''ଲାଗିବ ତ ଲାଗିବ, କଏ ଡରୁଛି ? ତୁ ଯା, ମୁଁ କହିଲି ପରି କର ।''

ଘେଲୁଆ ତା'ର ଘରଯା ଓ ପିଲାଙ୍କୁ ଘେନି ସନ୍ଧ୍ୟାପୂର୍ବରୁ ବାହାରିଗଲା । ଗୋଳମାଳ ଲାଗିଯିବ, ଏ ଗାଁରେ ରହିଲେ ବିପଦ, ଏପରି ଭାବି ସେ ଗଦରଗୁଣ୍ଡି ପଳେଇଲା । ବାଟରେ ରାତି କଟେଇଲା ପେନୁକାଡୁ ଗାଁରେ । କନ୍ଧମାନଙ୍କୁ ବୁଝେଇଲା, ସେ ପରିବାରଙ୍କୁ ଘେନି ଶଶୁରଘର ଯାଉଛି । ସକାଳେ ପହଞ୍ଚି ଡମ୍ବମାନଙ୍କୁ କହିଲା ।

ଡାବୁଳ ମାଝି ଚୁପ ହୋଇ ବସିଲା ନାହିଁ । ପାଟବାରିକ ଓ ତା' ସାଙ୍ଗର ଲୋକ ଚାଲିଯାଇଥିଲେ । ସନ୍ଧ୍ୟାରେ କନ୍ଧମାନେ ବସିଲେ ଓ କଥାଭାଷା ହେଲେ ।

ବୁଢ଼ା ସକରଜାନି ମୁହଁ ଶୁଖେଇ କହିଲା, ''କି କଥା ପାଇଁ ଏତେ କଳି ଆରମ୍ଭ କଲୁ ମାଝି ? ପାନୁ ତ ମାଗୁଛନ୍ତି, ଆମେ ଦେଉଛୁଁ ଥରକୁ ଥର, ନଦେଇ ପାରିବା ତ ବୁଝେଇ ସୁଝେଇ କହିବା, ମଣ୍ଡଳ ସଭାରେ ଆପତ୍ତି କରିବା । ତା' ନକରି ଅମାନ୍ୟ କରି ଅପମାନ ଦେଇ ଠେଙ୍ଗା ଉଞ୍ଚେଇ ତଡ଼ିଦେଲୁ ଯେ, ସ୍ଥାର କ'ଣ ପରିଣାମ ହେବ ? ଥାଟ ପେଷିବେ, ଲୁଟିବେ, ମାରିବେ, ଆମେ ବାଧା ଦେଲେ ହାଣକାଟ ଲାଗିବ । ରାଜ୍ୟସାକର ଲୋକ ତାଙ୍କ ପଟେ, ତାଙ୍କ ହାତରେ ଲଢ଼ୁଆ ଥାଟ

ଅଛୁ, ଆମେ ଲଢ଼ିଲେ ପାରିବା ? କାଲି ସକାଳୁ ଭର ଧରେଇ ଗୋରୁ ଧରେଇ ଉକ୍ତୁଲୁଟି ମୁଣ୍ଡାମାଙ୍କ ପାଖକୁ ଯିବା, କହିବୁ ମଦ ନିଶାରେ କ'ଣ କହିଦେଲି ଯିନା, ହେଇ ନିଅ ଯାହା ମାଗିଥିଲ । କଳି ତୁଟିଯିବ ।''

ଡାବୁକ କହିଲା, ''ପାଖ ପାଖ ଗ୍ରର କୋଡ଼ି ବର୍ଷ ଭୋଗ କରିବୃଣି ତୁ । ତୋ ଆଗରେ ମୁଁ ପିଲା । ମାତ୍ର କଳିଗୋଳକୁ ଡର ତୁ ଅସଲ କଥା ବୁଝିପାରୁନାହୁଁ, ଖାଲି ଏଥରକ କଥା ଭାବୁଛୁ । ଆରେ ସେମାନେ ରାଜ୍ୟଯାକକୁ ଡରେଇ ହରେଇ ଛେଳିକରି ରଖିଲେଣି । ସେ ମାଗୁଛନ୍ତି, ନେଉଛନ୍ତି, ଥରକୁ ଥର, ଆହୁରି ଆହୁରି । ମନା ନକଲେ ବନ୍ଦ ହେବ କେମିତି ?''

''ସେ କଥା ଯିନା ରାଜ୍ୟଯାକର ଲୋକମଣ୍ଡଳ ସଭାରେ ପକାନ୍ତେ, ତୁ ଜଣେ କହିଲେ କେମିତି ହେବ ?''

''ସେଇଟା କ'ଣ ମୁଁ ଭାବିନାହିଁ ତୁ କହୁଚୁ କାନ ? ତେବେ ଗୋଟିଏ କଥା । ରାଜ୍ୟଯାକର ଲୋକ କୋଉ ବିପଦରେ ହେଲେ ପଦେ କହୁଛନ୍ତି ? ତାଙ୍କୁ ଯେତେ ଗୋଇଠା ମାର, ଘରେ କାନ୍ଦିବେ, କବାଟ କିଳି ଗାଳିଦେବେ ଯିନା, ପଦାରେ ମୁଣ୍ଡ ଟେକିବ ନାହିଁ, ଡରିବେ, କହିବେ,—ଆମେ କି ଆମର କାମ, ଅଡ଼ୁଆ ଭିତରେ କିଏ ପଶେ ? ଆମ ଜାତି ଲୋକଙ୍କ ଧରଣ ସେଇଆ ।''

ସମସ୍ତେ କହିଲେ ''ସତ ସତ ।''

ଡାବୁକ କହିଲା, ''ଆରେ ଏତେବେଳକୁ କହିବ 'ସତ ସତ' । ତେବେ କହିବ କିଏ ? ଧୀରେ ଧୀରେ ଥର ଥର କରି ଆମର ସବୁ ଜିନିଷ ଓଟାରିନେବେ ମୁଣ୍ଡାମାଝି ମଣ୍ଡଳ । ନିଜେ ଖାଇବେ, ନିଜ ଲୋକଙ୍କୁ ଦିଆଇବେ । ଦେଖୁନାହୁଁ, ଆଗେ ଏମିତି ଥିଲି ? ଏବେ ଜୁଲୁମ୍ ଦିନୁଦିନ ବଢୁଛି । ଦିନେ ମନା ନକଲେ ଆହୁରି କ'ଣ ମାଗିବେ କିଏ ଜାଣେ ? ମୁଁ ତ କୋଉକାଳୁ ଭାବୁଛି । ଆଜି କହିଦେଲି । ଆଉ ପଛକୁ ଯିବାର ନାହିଁ, ପକାଇଦେବା ଛେପ ପୁଣି ଗିଳିବାର ନାହିଁ ।''

ମୁଣ୍ଡା ବଡ଼ ରଉଡ଼ି କହିଲା, ''ସତ ଯେ, ରାଜ୍ୟରେ ଏତେ ଲୋକ ଥାଉ ଥାଉ ଏକା ଆମେ କାହିଁକି ହାଣ କଣ୍ଟୁରି ବେକକୁ ନେବା ?''

ଡାବୁକ କହିଲା, ''ତାହେଲେ ତୁମେ କ'ଣ କରିବ ଭାବୁଛ ? ଏଥର ମାଗିଲେ, ଦେଇଦେବ । ପୁଣି ମାଗିବେ, ପୁଣି ଦେବ । ତୁମର ସବୁ ସରିଯିବ, ସେଇଠୁ କହିବେ, ତୁମ ନିଜ ଷେତ ପଡ଼ିଆ ଯାଡ଼୍, ଆସ ବେଠିରେ ଏ କାମ କର ସେ କାମ କର । କହିଲେଣି ତ, କହିଲେଣି ଆଣ୍ଟରେ ମିଶିବାକୁ ଧାଂଡ଼ା ଦିଅ । ତା ବି ଦେବ । ସେଉଠୁ କହିବେ, ମାଇକିନିଆମାନଙ୍କୁ ଦେଇଦିଅ, କହିବ ନେଇଯାଅ—''

ଏକାଠି କନ୍ଧମାନେ ପାଟିକରି ଉଠିଲେ, କହିଲେ, ''ମାରିପକାଇବୁଁ, ମାରି ପକାଇବୁଁ ।''

ସକର ଜାନି କହିଲା, "କିଏ ଏସବୁ ଦୁନିଆଁ କଥା କହୁଚି ଯେ ତୁ ଏଗୁଡ଼ାକ କହୁଚୁ ମାଝି ?"

ଡାବୁକ କହିଲା, "ଆଜି ନ କହିଲେ କାଲି କହିବେ । କି ନ୍ୟାୟ ଅଛି କହ ? ଆହୁରି ଆହୁରି ମାଗୁଥିବେ ତୁମେ ଦେଉଥିବ । ମନଇଚ୍ଛା ମାଗୁଛନ୍ତି, ମନଇଚ୍ଛା ଆହୁରି ମାଗିବେ । ମୁଣ୍ଡାମାଝି ମଣ୍ଡଳରେ କହି ଲାଭ ନାହିଁ, ଶୁଣିବେ ନାହିଁ । ଆମେ ଡରୁଛୁଁ ବୋଲି ତାଙ୍କୁ ମାନୁଛୁଁ, ସେମାନେ ଆମକୁ ନ ଡରିଲେ ଚେତିବେ ନାହିଁ, ଆମକଥା ଶୁଣିବେ ନାହିଁ, ଏ ଜୁଲୁମ୍ ଛାଡ଼ିବେ ନାହିଁ ।"

ସକର ଜାନି କହିଲା, "ରାଜ୍ୟର ଶାସନ ତାଙ୍କ ହାତରେ, ଗାଁ ଗାଁରୁ ପାନୁ ନେବେ ନାହିଁ ଖଜଣା ନେବେ ନାହିଁ କେମିତି ରାଜ୍ୟ ଚଳେଇବେ ?"

ଡାବୁକ କହିଲା, "ଖଜଣା ଦେଉଁ ଥରେ । ଆଉ କି ପାନୁ ? କେତେଥର ପାନୁ ଦେବୁଁ ? କାହିଁକି ଦେବୁଁ ? ରାଜ୍ୟର କି କାମ ସେମାନେ କରୁଛନ୍ତି ? ଆମ କାମ ଆମେ କରୁଛୁଁ । ଆମର ନଷ୍ଟିପୁଷ୍ଟି ଆମେ ତୁଲେଉଛୁଁ । ସେମାନେ କ'ଣ କଲେ ?"

ସମସ୍ତେ ତାକୁ ସମର୍ଥନ କଲେ । ସକର ଜାନି ପୁଣି କହିଲା, "ଏମିତି ଭାବିଗଲେ ହବ ଏ ବାପା ? ଲୋଡ଼ା ନଥିଲେ ପାନୁ ମାଗନ୍ତେ ? ଯେ ରାଜ୍ୟ ବୁଝୁଛି ସେ ଜାଣେ । ଥାଟ ପାନୁ ପଡ଼ୁଛି । ଥାଟ ନ ରହିଲେ କିଏ କାହାକୁ ମାନିବ ? ପୁଣି ପରଦେଶୀ ଶତ୍ରୁ ପଶିଆସିଲେ କିଏ ତାଙ୍କୁ ଆଗୁଳିବ ? ତୁ କଥା କହୁଚୁ !"

"ଜାଇଁ ତୁ କହୁଚୁ !" ଡାବୁକ ଖେଙ୍କିଲା, "ତୁ ବି କହୁନାହୁଁ ଯେ ତୋର ଡର ତତେ ଏକଥା କୁହାଉଛି । ଆଖି ଅଛି ଦେଖୁଛୁ କି ନାହିଁ ? ଏ ଧନ ନେଇ କ'ଣ କରୁଛନ୍ତି ? ନିଜେ ଖାଉଛନ୍ତି, ନିଜ ଧନ ବଢ଼ାଉଛନ୍ତି, ନିଜ ଶରଧା ଲୋକଙ୍କୁ ବିଶ୍ୱାସୀ ଲୋକଙ୍କୁ ଧନୀ କରୁଛନ୍ତି । ରାଜ୍ୟ ଖବର କିଛି ବୁଝୁ ନାହାନ୍ତି । ତାଙ୍କ ଦେହରୁ ଝାଳ ବୋହୁନାହିଁ । ଆମ ନିଜ ନିଜ ଗାଁ ଭିତରେ କିଏ କାହା ସଙ୍ଗେ କଳି ଲଗୁଛି ? କୋଉ ପରଦେଶୀ ଶତ୍ରୁ ମାଡ଼ିଆସୁଛି ଦେଖୁଛୁ ଏ ବନସ୍ତ ଭିତରକୁ ? ଆସିଲେ ବି କ'ଣ କରିବ ? ରଜା ହେବ ତ ? ପାନୁ ନେବ ତ ? ସେସ୍ତ ବି ତ. ସେଇଆ କଲେ, ଆପଣା ଦେଶର ହୋଇ ବି ପରଦେଶୀ । ନାହିଁ ନାହିଁ ଆଉ ସହିବା କଥା ନାହିଁ । ଯାଅ ଗାଁ ଗାଁକେ କହିବୁଲ, ଲୋକେ ଏ ମୁଣ୍ଡାମାଝିଙ୍କ ଜୁଲୁମ୍‌କୁ ନମାନନ୍ତୁ, ମନା କରନ୍ତୁ, ସେମାନେ ଥାଟ ପେଶିଲେ ଆମେ ବି ଲଢ଼ିବା । କୁକୁର ପରି ବଞ୍ଚି ଲାଭ ନାହିଁ, ଇଜ୍ଜତ୍ ନଥାଇ ବଞ୍ଚିବା ନାହିଁ । ଜୁଲୁମ୍ ବନ୍ଦ ହେବ ତ ହଉ, ନହେଲେ ଏ ମୁଣ୍ଡାମାଝିମଣ୍ଡଳକୁ ଭାଙ୍ଗିବା, ଆଉ ନୂଆଟାଏ ଗଢ଼ିବା ।"

"ନାଇଁ ନାଇଁ ନାଇଁ ମାଝି, ତୁ ସେମିତି କଥା କହନାହିଁ । ରଜା ଗଲା, ଆମେ ମୁଣ୍ଡାମାଝିମଣ୍ଡଳ ବାଛିଲୁ, ରାଜ୍ୟର ଭାର ତାଙ୍କୁ ସମର୍ପି ଦେଲୁ । ରଜା ନାହିଁ, ସେମାନେ ରଜା । କ'ଣ ତୁ କହୁଚୁ ? ମୁଣ୍ଡାମାଝିମଣ୍ଡଳ ଭାଙ୍ଗିବୁ !"

"ଆରେ ଜାନୁବୁଢ଼ା, ତୋର ବୁଦ୍ଧି ନଥିଲେ ବ ତୁ ମୋର ବାପ ପରି—"

"ସତ ବାପା—"

"ମୁଣ୍ଡାମାଝି ନହେଉଣୁ ଏମାନେ କ'ଣ ଥିଲେ ? ଆମରି ପରି ପରଜାତ ତ ? ତାଙ୍କୁ ମୁଣ୍ଡାମାଝି କିଏ କଲା ? ଆମେ ଏ ରାଜ୍ୟଯାକର ଲୋକ ତ ? ସେମାନେ ଯଦି ଦୁନିଆ କଲେ, ଆମୁକୁ ହରବର କଲେ, ନିଜେ ଦନୁଧନ ଲାଭ କଲେ, ଘୁଷ କଲେ, ଆମେ ତାଙ୍କୁ ତଡ଼ି ନୂଆଲୋକ ରଖିବୁ ନା ନାହିଁ ?"

"କାହିଁ ? ତାଙ୍କୁ ମୁଣ୍ଡାମାଝି କଲାବେଳେ ସେକଥା ତ କେହି କହିନଥିଲ !"

"କିଏ ଜାଣିଥିଲା ସେମାନେ ଏମିତ ହେବେ ବୋଲି ? ଆଗ ବଳଣା ଦେଉଥିଲୁଁ ଥରେ, କେତେବେଳେ କ ଲୋଡ଼ା ପଡ଼ିଲେ ଗାଁ ଗାଙ୍କୁ ଭେଦା ପଡୁଥିଲା । ଏବେ ? କେତେଥର ମାଗଣ ? କେତେଥର ପାଳୁ ? ଯାହା ନେଲେ ଘରେ ଝାଇଗଲେ । ଏଇଟା କ'ଣ ଧର୍ମ ?"

"ସେମାନେ ବଳ ଧର୍ମ ନିଜେ ପିନ୍ଧା ଜଗିବେ ମାଝି ?"

"ଜଗିଲେ ତ ନାହିଁ । ତେବେ କ'ଣ କରିବା ?"

"ସେଇଟା ରାଜ୍ୟଯାକର ଲୋକପିନା କହିବେ । କିଏ କହୁଚ ?"

"ପଗ୍ଗୁର୍ ଯା ସବୁ ଗାରେ ଜାନ, କିଏ ଙ୍କୁପି ଅଛୁ ପଗ୍ଗୁରିଆ । ଗଛ ପଟକୁ ପଗ୍ଗୁର୍, କହିବେ ଏ ମୁଣ୍ଡାମାଝିମାନେ ଭ୍ରଷ୍ଟାଗ୍ରସ୍ତ ।"

"ରାଜ୍ୟର ଲୋକ କିଏ ଆଉ କହୁଚ, ତୁ କହିଲ ପରି, ଯେ ଏମାନଙ୍କୁ ତଡ଼ିବା, ନୂଆ ଲୋକ ବାଛିବା ?"

"ସମସ୍ତେ ତୋରି ପରି ଭାବୁଥିବେ ଜାନ, କ'ଣ ନା,—ମୁଣ୍ଡାମାଝିମାନେ ଅନ୍ୟାୟ କରୁଛନ୍ତି ସତ ଯେ, ସେ କଥା ଆମେ ତୁ ଣ୍ଡରେ କହି କାହିଁକି ତାଙ୍କର ଶତ୍ରୁ ହେବା, ଆଉ କିଏ କହୁ । ସେମାନେ ନରହିଲେ ଭଲ ଯେ, ତାଙ୍କୁ ଆଉ କିଏ ତଡ଼ୁ, ଆମେ ଯେ କାମ ଆରମ୍ଭ କଲେ ବାଘ ଆଗ ଆମୁକୁ ଧରିବ ।"

ସମସ୍ତେ ହସିଲେ ।

ସହର ବୁଢ଼ା କହିଲା, "ଆରେ, ହସୁଛ କ'ଣ ? ଯେଉଆ ତ କଥା । ଥାଟରୁ ଅଳ୍ପ ଲୋକ ଆସିଥିଲେ ଲେଉଟିଗଲେ, ବେଶି ଲୋକ ଆସିବେ, ପାରିବ ? ଥାଟ ତୁମ ହାତରେ ନା ମୁଣ୍ଡାମାଝିର ହାତରେ ?"

ଡାବୁକ କହିଲା, "ଥାଟରେ ମଣିଷ ଅଛନ୍ତି ନା ବାଘ ହାତୀ ଅଛନ୍ତି ? ଆମରି ପରି ମଣିଷ ତ ? ଦଶଝଣ୍ଡ ଗାଁ ଲୋକ ହତଆର ଧରି ଠିଆହୋଇପଡ଼ିଲେ ହେଲା ଗୋଟାଏ ଥାଟ, ରାଜ୍ୟଯାକ ଲୋକ ଠିଆହେଲେ ସେ ଗୋଟାଏ ବଡ଼ ଥାଟ । ରାଜ୍ୟର ଲୋକେ ମନକଲେ ଥାଟ କ ବଡ଼ ?"

"କାହିଁକି ସେ ହଣାକଟା କଥା କହୁଚୁ ମାଝି ?"

"ମୁଁ କହଲି ନା ତୁ କହଲୁ ? ତୁଣ୍ଡରେ ଥାଟ ଆସି ହାଣିପକାଇବେ ସେମିତି ହେବନାହିଁ । ମୁଣ୍ଡାମାଝି ଏତେ ସାହସ କରିବେ ନାହିଁ । ଗୋଟାଏ ଗାଁରେ ହାଣକାଟ କଲେ ଆଉ କୋଡ଼ିଏ ଖଣ୍ଡ ଗାଁ ମାରିବାକୁ ଧାଇଁଆସିବେ । ଆଉ ଥାଟ ବି କ'ଣ ବିଦେଶୀ ଲୋକ ? ଆମ ରାଜ୍ୟର ଲୋକତ, ସେମାନେ କ'ଣ ଦେଖୁନାହାନ୍ତି କେତେ ଅଧର୍ମ ଚାଲିଛି ? ଆମେ ଗାଁ ଗାଁକେ କହିବୁଁ—"ମନେ ମନେ ଭାବୁଛ ଯେ ଏ ମୁଣ୍ଡା-ମାଝିମାନେ ଅନ୍ୟାୟ କରୁଛନ୍ତି, ସେକଥା ତୁଣ୍ଡରେ କହ, ଏକାଠି ହୁଅ, ଏକାଠି କହ, ଡର ନାହିଁ ।" ଆମେ ଥାଟର ଲୋକଙ୍କୁ କହିବୁଁ—ତୁମେ ଦେଖୁଛ ଅନ୍ୟାୟ ହଉଚି, ଆମେ ସେ କଥା ତୁଣ୍ଡରେ କହୁଚୁଁ, ତୁମେ ବି ତୁଣ୍ଡ ଖୋଲି କହ ।"

"ଲୋକ ନକହିବେ ? ଥାଟ ତମ କଥା ନଶୁଣିବେ ? ତେବେ ?"

ଡାବୁକ କହିଲା, "ତେବେ କିଛି ନାହିଁ । ଆମେ କହିବା କଥା ଆମେ କହୁଥିବା । ଯେ ଯେତେ ଡରାନ୍ତୁ, ଡରିବା ନାହିଁ । ଆମକୁ ଧରନେବାକୁ ଆସିବେ, ଜୀବନ ଥିଲଯାକେ ଲଢ଼ୁଥିବା ।"

ତା' ଗାଁର ଟୋକାମାନେ ଓ ଆଉ କେତେ ଲୋକ ତା କଥା ଶୁଣି ଉତ୍ସାହରେ ହୋ' ଦେଲେ । ଖଣ୍ଡେ ଛଡ଼ାରେ ମାଇପେ ଜମା ହୋଇଥାନ୍ତି, ଶୁଣୁଥାନ୍ତି, କିଛି କହୁନଥାନ୍ତି । ତାଙ୍କ ସଙ୍ଗେ ପିଲାଏ ଥା'ନ୍ତି । ସକର ଜାନି ସେହିଆଡ଼କୁ ଅନାଇଁଲା ଓ ନିରସ ହୋଇ ଭାବିଲା—ଏଇ ହୋ' ଶୁଣି ଡାବୁକ ମାଝି ଆହୁରି ଆହୁରି ତେଜ-ଚଢ଼ିବ, ହୁଏତ ଏମିତି, ଗାଁକୁ ଗାଁ, ସମାଲୋଚନା କରୁଛନ୍ତି ଅନେକ ଲୋକ, ହୋ' ବି ଦେବେ ଅନେକ ଲୋକ, କହିବେ ସତକଥା ସ୍ପଷ୍ଟ, ଏ ମୁଣ୍ଡାମାଝିମାନେ ଭଲ ପଡ଼ିଲେ ନାହିଁ, ସଭା କରିବା, ଅନ୍ୟ ମୁଣ୍ଡାମାଝି ବାଛିବା । ତାଙ୍କ ମନକଥା ସାହସ କରି ଜଣେ ଲୋକ ବଡ଼ପାଟିରେ ସମସ୍ତଙ୍କ ଆଗରେ କହିଦେଲେ ଅନ୍ୟମାନେ ବି ମୁହଁଖୋଲି କହିବେ ।

ଆଉ ମୁଣ୍ଡାମାଝିମାନେ—ତାଙ୍କ ହାତରେ ରାଜ୍ୟ, ଲୋକ, ଫୋଠ, ଥାଟ, ସେମାନେ କ'ଣ ଚୁପ ରହିବେ, ନା ଚମକଉଠି ଗଡ଼ଗୁଡ଼ିବେ—'ଏମାନେ ମେଳି କଲେଣି, ପଠାଅ ଥାଟ ?'

ସେତେବେଳେ ଏଇ ଯେତେ ଲୋକ ହୋ' କରୁଛନ୍ତି, ସେମାନେ କ'ଣ ମାରିବାକୁ ମରିବାକୁ ବାହାରିପଡ଼ିବେ ? କିଏ ରକ୍ତରେ ଭାସିବ, କିଏ ଖଣ୍ଡିଆଖାବଡ଼ା ହୋଇ ପଡ଼ିବ, କିଏ ଶିକୁଳିରେ ବନ୍ଧାହୋଇଯିବ, କିଏ ଦେଖୁଥିବ, ତା' ଜୀବନ ପ୍ରାଣପରି ଯେ ଆପଣାର ଲୋକ ତାଙ୍କ ଉପରେ ଅତ୍ୟାଚାର ହେଉଛି, ସେ କିଛି କରିପାରୁ ନାହିଁ, ଯାହା ପାଇଁ ତାହା ହୋଇଯାଉ ସେମାନେ କ'ଣ ସତେ ଜଣାଁକୁ ଡେଇଁବେ ? ନା

କିଏ ପଳେଇ ଲୁଚିବ, କିଏ କହିବ, "ମୁଁ ନୁହେଁ ମୁଁ କିଛି କହିନାହିଁ," କିଏ କହିବ "ସେ ଡାବୁକଣ୍ଟା ମେଳିଆ, ମୁଁ ତ ମୁଣ୍ଡାମାଝିର ଲୋକ ?" ସେମାନେ ଆସିବେ ନାହିଁ ଯେତେବେଳେ, ଆପଣା ଉପରେ ବିପଦ ନପଡ଼ିବାଯାକେ ଲୋକେ ଗୁଣ୍ଡରେ ଟେକ ଦିଅନ୍ତି, ନିଜେ କେତେ ଫୁଟାଣି ଦେଖାନ୍ତି । ଡାବୁକ ମାଝି ବୁଝୁନାହିଁ କାହିଁକି ?

ସକର ଜାନି କହିଲା, "ଶୁଣ୍ ମୋ କଥା ମାଝି । କେହି ନକରିବା କାମ ତୁ କରିବାକୁ ବସିଛୁ । ସାମାନ୍ୟ କଥା ନୁହେଁ । ସ୍ୱେ ମେଳି । ଏଥିରେ ବିପଦ ଅଛି । ହଣାହଣି ଲାଗିପାରେ । ଖାଲି ସାଅ କହିଲେ ମୁଣ୍ଡାମାଝି ଯିବେନାହିଁ । ତୁ ଏକୁଟିଆ ଏଡ଼େ ବଡ଼ କାମ କରିପାରିବୁ ନାହିଁ । ଆଗ ବଳ କଷିବା ଦରକାର ଥିଲା । ଜାଣିଥାନ୍ତୁ, ଯଦି ଲଢ଼େଇ କରିବା ଦରକାର ପଡ଼ିବ, ତେବେ ତୋ ପଟେ କେତେ ଲୋକ ବାହାରିବେ, ତୁମର ବଳ ବେଶି ନା ଊଣା, ଲଢ଼େଇ ହେଲେ ତୁମେ ଜିଣିବ ନା ହାରିବ ।"

ଡାବୁକ କହିଲା, "ସେ ହିସାବ କରୁଥିଲେ ଅସଲ କାମ କରିବା କେତେ-ବେଳେ ? ସେ ହିସାବ ବି ଏବେ ତତେ କିଏ ଦେଇପାରିବ ?"

"ଖବର ବୁଲିଗଲା, ମୁଣ୍ଡାମାଝିମାନେ ଜାଣିବେ । ଯାହାହେଲେ କରିବେ । ସବୁ ଖବର ସବୁଆଡ଼ୁ ତାଙ୍କୁ ମିଳୁଥିବ । ଯେ ମେଳି କରିବାକୁ ବାହାରେ, ସେ ଆଗ ଖବର ରଖେ—ଲୋଡ଼ା ପଡ଼ିଲେ ପଳେଇବ କୋଉବାଟେ ? ଆଉ ସେ ଖବର ରଖେ, ମୋ ନିଜ ବଳ କେତେ ? ମୁଁ ଜିଣିଲାଭଳି ଆଶା ଅଛି କି ନାହିଁ ?"

"ସେମିତି ଲୋକ ମେଳି କରିପାରେ ନାହିଁ ଜାନି, ରଜାମାନେ ମାଡ଼ିବସି ରାଜୁତି କରୁଥିଲେ, ତୁମେ ଆମେ ବସି ଖାଲି ସେଇଆ ସହୁଥିଲୁଁ ।"

ସକର ଜାନି ଆଉ ଉଚ୍ଚବାଚ ନକରି ଘରକୁ ଲେଉଟିଗଲା । ଖାଇପାରିଲା ନାହିଁ, ନିଦ ହେଲାନାହିଁ । ସେ ବୁଝିପାରିଲା, ଡାବୁକ ମାଝି ଖାଲି ହଠାତ୍ ରାଗିଯାଇ ଏପରି କହୁଛି ତା ନୁହେଁ, ପ୍ରକୃତରେ ଗୋଳମାଳ ଭିଆଇବାକୁ ସେ ଲାଗିପଡ଼ିଲାଣି । ଦିନକ ଭିତରେ କେତେ ଗାଁକୁ ସେ କନ୍ଧମାନଙ୍କୁ ପଠାଇଛି ଅନ୍ୟମାନଙ୍କୁ କହି ମତେଇବାକୁ, ନିଜେ ବି କେତେ ଲୋକଙ୍କୁ କହିଛି । ତୁଣ୍ଡି ବାଇଦ ବାଜିବ, ଆହୁରି କେତେ କେତେ ଉଠିବେ, କିଏ ଜାଣିଛି ? ସେତେବେଳେ ସତକୁ ସତ ଲାଗିଯିବ ମେଳି !

କ'ଣ ହେବ ? କନ୍ଧ-କନ୍ଧ ଭାଇ-ଭାଇ ମରାମରି !

ଆରେ ପିଲାଏ—ଥିଏଧର—ସକର ଜାନି ମନେ ମନେ କହୁଥାଏ—ସେ ଉକ୍ଡୁକୁଟି, ସେ ଟାଂଗ୍ରା, ସେ ତୁମ୍ବୁଡ଼ି,—ସେ ଡଟିଲା, ରାଡ଼ସା, ତ୍ରାମ୍ବୁ, ଡହ୍ନା, ଦଣାଙ୍ଗା—ରାଜ୍ୟର ଲୋକେ ତାଙ୍କୁ ଜଣ ଜଣ କରି କେତେଥର କହିଲେଣି,

ସେମାନେ ନିଜକୁ ସୁଧାରୁ ନାହାନ୍ତି କାହିଁକି ? ଯୋଡ଼ା-ହାଣ୍ଡି ପଥର ଉପରେ କ'ଣ କହି ଶପଥ କରିଥିଲେ, ଧର୍ମ୍ମ ଧର୍ତ୍ତିକୁ ସାକ୍ଷୀ ଥାଇ ?

ମଣିଷ ନିଜେ ସିନା ନିଜକୁ ସୁଧାରିବ !

ନ ସୁଧାରିଲେ ! ସେଇଠି ତ ଅଡୁଆ ! ସଂକରଜାନି ନିରାଶ୍ରୟ ହୋଇ ବାଉଳି ହେଲାପରି ଗରୁଥାଏ । ଏଇ ଚଲ୍ଲା ଘର, ଚଲ୍ଲା ଗା, ଚଲ୍ଲା ଅନ୍ଧାର, ଚଲ୍ଲା ଦୁନିଆଁ; କିନ୍ତୁ ତାକୁ ଲାଗୁଥାଏ, ଏହାରି ଉଚୁଆଳରେ କେଉଁଠି ଛପି ରହିଛି କ'ଣ ଭୟ ଉଦ୍‌ବେଗ ଆଶଙ୍କା, ସେ ତାକୁ ଦବେଇ ପାରୁନାହିଁ ।

ପୁଣି ତା' ମନ ଭିତରରେ କୁହୁଳିଲା—କାହିଁକି ଏ ଲୋକେ ଅଡ଼ୁଆ ଲଗେଇବାକୁ ଯାଉଛନ୍ତି ? କି ଶୁଭ ମାଡ଼ିଯିବ ? ଏ ମୁଣ୍ଡମାଳିଙ୍କି ତୁମେ ଡରିବ । ହେଲା । ରକ୍ଷିବ କାହାକୁ ? ସେ ଯାଙ୍କଠୁଁ ଆହୁରି ଝାମ୍ପ ନ ପଡ଼ିବେ ଜାଣିଲ କେମିତି ? କିଏ କିଏ ହେବେ ? ଡାକୁକ ନିଜେ ? ତା ତ ସେ କହୁନାହିଁ । ନିଜେ ବି ପଛେ କେମିତି ପଡ଼ିବ ସେ କ'ଣ ଜାଣିଛି ଏବଠୁଁ ?

ଏ ରାଜ୍ୟର ଲୋକ ବି କି ଭଲ ? ନିଜ ଦୋଷ ଆଖିରେ ପଡୁନାହିଁ । ଖଳାପ ମଦ ଥିଲା, ଲମ୍ବା ପେଣ୍ଡମ୍ କରନ୍ତି, ମହୁଲି ମଦରେ ଚଟକ ଲାଗିଗଲା, ସେଥିପାଇଁ ପ୍ରତିଦିନ ନିଜ ଘରୁ ତମ୍ବ ଘରକୁ ଫସଲଗୁଡ଼ାଏ ବୋହି ନଦେଲେ ଭାତ ହଜମ ହେବ ନାହିଁ ! ମଦୁଆ କାହିଁକେ ! ସବୁ ଫସଲ ବୁହାଇଦେଲେ, ତା ବଦଳରେ ଆଣିଲେ ସୁନା, ରୁପା, ଖଦି, ଅଲଙ୍କାର, କାଢ ଜାନ୍ଧ ଜିନିଷ । ସେଗୁଡ଼ାକ କ'ଣ ହେବ ? ଏତେ କାଳ ନଥିଲା ଯେ କାହାର କି କ୍ଷତି ହେଉଥିଲା ? ଅଭାବୀ ହେଲେ ନିଜ ଦୋଷରୁ, ସେଇଠୁ—ମୁଣ୍ଡମାଳି ପାନୁ ମାଗିଲେ ବି ବାଧୁଛି । କାହିଁ ? କେହି ତ ବାହାରୁନାହିଁ ଯେ ବୁଲି ବୁଲି ଲୋକଙ୍କୁ ବୁଝାନ୍ତା ଯେ ଏ ଜିନିଷଗୁଡ଼ାକ ଆଉ ଛୁଅଁ ନାହିଁ, ଏମିତି କଲେ ତୁମେ ଯେତେ ଫସଲ ଉପୁଜାଅ ସବୁ ଉଭେଇଯିବ ?

ସେ ଖାଲି ଦୋହଲୁଥାଏ । ଲାଗୁଥାଏ, ନିଜେ ସେ ଅକାମୀ, ଦୁର୍ବଳ, ନିଃସହାୟ ।

ତା' ଆଖିକି ନିଦ ନାହିଁ ।

ଡାକୁକ ତା' ଘର ପିଣ୍ଡାରେ ବସିଥାଏ । ଥାନ୍ତି ତା ସ୍ତ୍ରୀ ମୁରଇ, ତା' ବଡ଼ପୁଅ ଇରସା, ତା ଝିଅ ସୁକାଇ, ସାହିର କେତେ ସ୍ତ୍ରୀ ପୁରୁଷ ପିଲା । ଗାଁଲୋକଙ୍କୁ ସାହି ଲୋକଙ୍କୁ ସେ ବୁଝାଇ ସାରିଛି—ମୁଣ୍ଡମାଳି ପାନୁ ମାଗି ପଠାଇଲେ ଆଉ ଦିଆଯିବ ନାହିଁ ବୋଲି ନିଷ୍ପତ୍ତି ନିଆହେଲାଣି, ଗାଁ ଗାଁକେ ସେକଥା କୁହାହେଉଛି କୁହାହେବ,—ଯଦି ସେମାନେ ଥାଟ ପଠାଇବେ ତାହେଲେ ମେଳି ଲାଗିବ । କେହି ଡର ନାହିଁ, ଖବର ନେଉଥାଅ, ହୁସିଆର ଥାଅ । ଥାଟରେ ବେଶି ଲୋକ ଯଦି ଆସିବେ, ଦେଖିବା

ଯେ ମୁହାଁମୁହିଁ ପାରିହେବ ନାହିଁ, ବଣ ପର୍ବତରେ ଲୁଚି ଲୁଚି ଲଢ଼େଇ ଚାଲିବ, ତାଙ୍କୁ ଗୋଡ଼େଇ ଗୋଡ଼େଇ ମାରିବାକୁ ପଡ଼ିବ, ଲଢ଼େଇ ନହେଲେ ତ ଭଲ, ହେଲେ ବି କେହି ଡ଼ର ନାହିଁ । ଯଦି କେହି ଡରୁଛି ସେ ଏବଠୁ ପଳାଉ, ଲୁଚୁ, ଯେଉଁଠି ତା'ର ମନ ହେଉଛି, ଅଲଗା ଜାଗାରେ ବଣ ହାଣି ଘର ତୋଳି ରହୁ ।

ଗାଁ ଲୋକେ ଉତ୍ସାହ ଦେଉଛନ୍ତି, କେହି ଡର ନାହିଁ ।

ସାହିଲୋକ ଚାଲିଗଲେ । ଡାବୁକ ତା' ସ୍ତ୍ରୀକୁ କହିଲା, "କାଲିଠୁ ତୁ ଘର ଚୁନ-ଚାନ କାହିଁକି ମୁଗଇ ? ଡର ମାଡୁଛି ?"

ମୁଗଇ କହିଲା, "ଷୋଳ ବର୍ଷ ହେଲା ତୋ' ଘର କରୁଛି, ଚଉଦ ବର୍ଷ ହେଲା, ତୁ ମୋର ପାଖରେ ଥିଲେ କେବେ ଡରିଛି ଦେଖିଛୁ ?"

ଡାବୁକ ତା' ମୁଣ୍ଡକୁ ଥାପୁଡ଼େଇଲା, କହିଲା, "ମୁଁ ବି ଅଛି ତୋ ପାଖରେ ଥିବି କି ନଥିବି କିଏ ଜାଣେ ? ମୁଣ୍ଡାମାଝିମାନେ ଚୁନ ରହିବେ ନାହିଁ, ଆମେ ବି ଚୁନ ରହିବୁ ନାହିଁ । ଗୋଳମାଳ ଲାଗିଲେ କାହାର କ'ଣ ହେବ କିଏ କହିବ ?"

ମୁଗଇ କହିଲା, "ତେବେ ଏ ଗୋଳମାଳ କାହିଁକି ? ମତେ କହ । ଆମର ଏ ଗୋଳମାଳରେ କ'ଣ ଅଛି ? ପାନ୍ଲୁ ମାଗୁଛନ୍ତି, ପାନ୍ଲୁ ଦେଇପାରିବୁ ନାହିଁ, ନେଜେ ଯାଇ କହ, କଳିଗୋଳ କାହିଁକି ?"

"ଆଉ ମତେ ବୁଝାନା ମୁଗଇ, ସକର ଜାନ ବୁଝେଇ ପାରିଲି ନାହିଁ, ଏଇଟା ମାନ ଇଜ୍ଜତ୍ କଥା, ସତ ଧର୍ମ କଥା, ତାଠୁ ଆଉ ବଡ଼ କିଛି ଅଛି ?"

ମୁଗଇ କହିଲା, "କିଛି ନାହିଁ ।"

ଡାବୁକ କହିଲା, "ସେଥିରେ ମୋ ପ୍ରାଣ ଗଲେ ଯାଉ, ଏଇଆ ମୁଁ ଭାବିଛି ।"

ମୁଗଇ ଚୁନ ହେଲା ।

ଡାବୁକ କହିଲା, "ଗୋଳମାଳ ଲାଗିଲେ ପିଲା ମାଇକିନିଆ ପଳାଇବା ଭଲ, ସେତେବେଳେ କହିଦେବି । ତୁ ପଳେଇବୁ ।"

ମୁଗଇ କହିଲା, "ପିଲା ଯିବେ ଯାଉନ୍ତୁ, ମୁଁ ତତେ ଛାଡ଼ି କୁଆଡ଼େ ଯିବିନାହିଁ ।"

ମୁଗଇ ଘରେ ପଶିଲା, ଖାଇବାକୁ ଆଣିଦେବ । କାଠନିଆଁ ଧାସରେ ଦିଶୁଥିବା ତା' ପିଠି ଆଡ଼କୁ ଡାବୁକ ଅନାଇଁ ରହିଲା । ଆକାରରେ ସାନ, ବଳିଷ୍ଠ ସରୁ ଦେହ, ନାଚଲା ପରି ଚାଲେ, କେବେ ତାକୁ ଛତିଶି ବର୍ଷ ହେଲା ? ସୁକାଇ ତାଠୁ ଡେଙ୍ଗା, ବାପ ପରି ମୁହଁ ଆଣିଛି, ବଡ଼ ମୁଣ୍ଡ, ଲମ୍ବାଳିଆ ମୁହଁ, ମା' ମୁହଁ, ପରି ଗୋଲ ନୁହେଁ । ଡାବୁକ ଭାବୁଥାଏ, କାଲପରି ଲାଗୁଛି, ମୁଗଇକୁ ବାହାହେବ ବୋଲି ସେ କେତେ ତା ପିଛା ଧାଉଁଥିଲା, ବଇଁଶୀ ବଜେଇଥିଲା, ଗୀତ ଗାଇଥିଲା, ମୁଗଇ ଗୀତ

ଗାଈ ତାକୁ ଜବାବ୍ ଦେଇଥିଲା । ସେ ବୟସ ହେଲଣି ସୁରିଇର । ତା' ବୟସ ହେଲଣି ଇରିସାର, ସେମାନେ ବଷ୍ଣ ହେବେ ।

ଖାଇସାରି ପୁଅ ଝିଅ ଶୋଇବାକୁ ଗଲେ, ଇରିସା ଗଲା 'ଧାଂଡ଼ାବସା' ଘରକୁ, ସୁରିଇ 'ଧାଂଡ଼ୀବସା' ଘରକୁ ।

ଡାବୁକ ମାଝି ତା' ସ୍ତ୍ରୀ ପାଖେ ଶୋଇଲା । ପୁଣି ତା' ମୁଣ୍ଡ ଥାପୁଡ଼େଇଲା, କାନପାଖେ କହିଲା, "ଶୋଇପଡ଼୍ ଶୋଇପଡ଼୍ ।" ମନେପଡ଼ିଲା, ଏମିତ ତାକୁ ସେ ଥାପୁଡ଼େଇଲେ ତାକୁ ନିଦ ହୋଇଯାଏ । ପିଲାଟିଏ ପରି ।

କ୍ରମେ ମୁରିଇକୁ ସେ ଭୁଲିଗଲା, ମନେ ମନେ ତାଠୁଁ ଦୂରେଇଗଲା, କଟିଗଲା । ସେ ଏକୁଟିଆ, ସେ ଗୋଟିଏ ନୂଆ ପ୍ରକାଶ, ନୂଆ ଚେତନା । ତେଜ, ସାହସ, ବଳ । ତୁଣ୍ଡରେ ଯାହା କହୁଛି ସେଇଆ ସେ । ତା' ମନରେ ରାଗ ନାହିଁ, ଗୋଟାଏ ପୁଲକ ଅଛି, ବଙ୍କାକୁ ସିଧା କରିବ ସେ, ଭୁଲ୍‌କୁ ଠିକ୍ କରିବ । ଦଶିଲା କେତେ ଗାଁର କେତେ ମୁହଁ । ସେମାନେ ତା କଥାକୁ ସମର୍ଥନ କରିଛନ୍ତି । ସେ ଏକୁଟିଆ ନୁହେଁ ।

ତାକୁ ନିଦ ହୋଇଗଲା ।

ଉକ୍‌ଡ଼ୁକୁଟି ମୁଣ୍ଡାମାଝି ଉଜାଡ଼ୁ ବାରିକ୍‌ଠୁଁ ଶୁଣିଲା, ରାଗରେ ନିଆଁ ବାଣ ହେଲା, "କହିଲା କାନ୍‌କଟା ଆସିଲା ମାତ୍ରେ ଡାକଦେବୁଁ ।"

ଗୁଇଲେଉଟା ବେଳେ କାନ୍‌କଟା ଆସିଲା, ଉକ୍‌ଡ଼ୁକୁଟି ତାଡ଼ୁଁ ରିପ୍‌ଟାବାଳର ଘଟଣା କଥା ଶୁଣିଲା । କହିଲା "ଭଲ କଲୁ ? ନୁହେଁ ? ପାଲୁମାଗ ବୋଲି ତୁ ତ ବାହାର କଲୁ । ଡାବୁକ ତରେଇଦେଲା ଯେ ପଳେଇ ଆସିଲୁ ।"

"ପାଲୁ ନ ଉଠେଇଲେ ଆଉର ଧାଂଡ଼ାମାନଙ୍କୁ କେମିତ ତୁମେ ପୋଷିବ ମାହାପ୍ରୁ ? ତାଙ୍କର ଖଉଆ ନାହିଁ ସୁବଧା ନାହିଁ କହି ସେମାନେ ତ ଘରକୁ ପଳାଉଛନ୍ତି, ଆଉ ପଦା ହୋଇଯାଉଛି । ମୁଁ ଦଳପତିଙ୍କି ଆଉପତିଙ୍କି ତୁମମାନଙ୍କ ନାଁ କହି ବୁଝେଇ ଆସିଛି । ଆଉର ଯହୂନଅ ମାହାପ୍ରୁ, ନହେଲେ କାହା ବଳରେ ରାଜୁତି କରିବ ?"

"ସେଇଟା କିଏ ମନା କଲା ? ମୁଁ ପଚାରୁଛି, ଲଙ୍ଗୁଡ଼ ଜାକ ପଳେଇ ଆଇଲ କାହିଁକ ?"

"ସେମାନେ ଗାଁଯାକ ଲୋକ ମାହାପ୍ରୁ ।"

"ହଉ, ଥାଟରୁ ଆହୁରି ଲୋକ ପଠେଇବ, ଧରି ଆଣନ୍ତୁ ସେ ଢାବୁକ ମାଝିକୁ, ଆଉ ତା' ସଙ୍ଗରେ ଯେତେ ଲୋକ ପଟନେବେ ସମସ୍ତିଙ୍କୁ, ଏମିତ ଶାସ୍ତି ଦିଆଯିବ ଯେ ଆଉଦିନେ କେହି ଅବାଧ ହେବେ ନାହିଁ ।"

କାନ୍‌କଟା ଅଙ୍ଗେଇ ଅଙ୍ଗେଇ ହେଲା । କହିଲା, "ସେଇଟା ତ କରିବା କଥା ମାହାପ୍ରୁ, ଯେ ଅମାନ୍ୟ କଲା ତାକୁ ଶାସ୍ତି ଦେବାର କଥା,—ତେବେ ମୁଁ ସଦେ କହିବି ?"

"କହ ।"

"ଏବେ ଆଉ ଥାଟ ପଠାନା, ଆଜ୍ଞ ଦନାକେତେ ଯାଉ । ଏବେ ମଝିରେ ମଝିରେ ଲୋକ ପଠାଇ ପାନୁ ମାଗୁଥିବା, ନ ଦିଅନ୍ତୁ ।"

"ଏଟା କି ବୁଦ୍ଧି ବତୋଉଚୁରେ ଡରୁଆ ? ତତେ କଏ ମାରିପକାଇବ କି ?"

"ତୋର ଲୁଣ ଖାଉଚୁ ମାହାପ୍ରୁ, ମତେ କି ଡର ?"

"ତେବେ ?"

"ସବୁ ଖବର ଆମେ ପାଉଚୁଁ, ରାଜ୍ୟଯାକର ଖବର, ତୁମର ଭଲ ହେଉ ବୋଲି ଆମେ ଖବର ରଖୁଁ । ଥାଟ ଠିକ୍ ନାହାନ୍ତି, ଲୋକ ଠିକ୍ ନାହାନ୍ତି, ଅଇଚ୍ଛା ଗୋଲମାଲ ଲଗେଇଦେଲେ ଭଲ ହେବ ନାହିଁ ।"

"କ'ଣ ଠିକ୍ ନାହିଁ ?"

କାନ୍‌କଟା କହିବ କହିବ ହୋଇ କଥା ଗିଳିପକାଇଲା । ଉକ୍ରୁଡ଼୍‌କୁଟି କହିଲା, "ସବୁ କହ ପାଟ୍-ବାରିକା ।"

କାନ୍‌କଟା କହିଲା, "ମୁଁ ତ କହୁଚି କୋଢ଼କାକୁ, ଆମ କଥା ତୁମେ ଶୁଣିଲ ନାହିଁ । ଲୋକଙ୍କ କଥା ତ,—ସେମାନେ ଯାହା ବୁଝିଛନ୍ତି ସେଇଆ । ପାନୁ ଦେଲେ, ଖଜଣା ଦେଲେ, ନାହିଁ କଲେ ନାହିଁ; କିନ୍ତୁ କହୁଛନ୍ତି କ'ଣ ?"

"କ'ଣ ?"

କାନ୍‌କଟା କହିଲା, "ତୁମେ ଜାଣିନାହଁ ଯେ ମୁଁ କହିବି ? ତତେ ତ କେତେ ଲୋକ କହିଥିବେ !"

"କି କଥା !"

"କହୁଛନ୍ତି, ମୁଣ୍ଡାମାଝିମାନେ ଗାଁ ବୁଝିଲେ ନାହିଁ, ଆମ ସଙ୍ଗରେ ମିଶିଲେ ନାହିଁ, ଭଲ ଅସାର ବୁଝିଲେ ନାହିଁ, ଆମ ପାଇଁ କାମ କିଛି କଲେ ନାହିଁ । କଜେ

ଭଲରେ ରହିଲେ, ଖାଲି ପାନୁ ଆଉ ଝଜଣା ଅସୁଲ କଲେ, କେତେ ଲୋକ ଏମିତି କହୁଛନ୍ତି ମାହାପ୍ରୁ ।"

"କୁକୁର ଭୁକିଲେ ହାତୀର କ ଯାଏ !"

"ସେଇଟା ସତ କଥା ଯେ ମାହାପ୍ରୁ, ଏମାନେ ଯଦି ଏମିତି କହୁଥିବେ, କେତେବେଳେ କିଏ ମେଳି ଲଗାଇଦେଲେ ବହୁତ ଲୋକ ମେଳିଆ ପଟ ନେବେ ।"

"ଡାକୁକକୁ ମେଳି ଛାଡ଼ିଦେଲେ ସେମିତି ତ ହେବ, ସେଥିପାଇଁ ମୂଳରୁ ତାକୁ ଧରିପକାଇବା ଦରକାର ।"

"ଶୁଣ ମାହାପ୍ରୁ, ତୁଣ୍ଡରେ ଲୋକେ କହୁଛନ୍ତି, ହିଡଆର ଧରି ମେଳି କରିବାକୁ କେହି କହିନାହିଁ । ଡାକୁକକୁ ଧରିଲେ ରାପ୍‌ଟାବାଲିରେ ତ ହାଣକାଟ ଲାଗିଯିବ । ଅନ୍ୟ ଗାଁ ଲୋକେ ହିଡଆର ଧରି ମାଡ଼ିଆସିବେ । କହିବେ ଅନ୍ୟାୟ ହେଲା, ଅନୀତି ହେଲା, ଆଉ ମାନିବା ନାହିଁ, ଆଉ ସହିବା ନାହିଁ, ଆସ ମେଳି କରିବା ।"

"ଆମର ଥାଟ ନଥିବେ କ ?"

"ସେଇଟା ତ ଅସୁବିଧା । ଯେ ହେଲେ ହିଡଆର ଧରି ଲଢ଼ିବାକୁ ଆସିଲେ ସେ ବି ଥାଟରୁ ଧାଂଡ଼ା ପରି । ଧନୁ, ଟାଙ୍ଗି, କାଢ, ଏଇଟା ସେଇଟା ସେ ତ ଘରେ ଘରେ ଅଛି । ତେବେ, ଥାଟ କହିଲେ ଏତକ ଯେ ସେଥିରେ ବେଶି ଲଢ଼ୁଆ ଧାଂଡ଼ା ଥା'ନ୍ତି । ଲଢ଼ିବାଟା ତାଙ୍କର ବୃତ୍ତି । ତୁମ ଥାଟରୁ ତ ଲୋକ କେତେ କେତେ ଚାଲିଗଲେଣି । ମୁଣ୍ଡାମାଝିମାନେ ଥାଟଟାକୁ ବି ଭଲ କରି ରଖିପାରିଲେ ନାହିଁ । ଜମି ଦେଇଛ, ସେ ତ ଗାଁ । ରଇତଙ୍କର ବି ଅଛି । ଆଜି ଅଧିକ କ'ଣ ଦେଲେ ସିନା ହୁଅନ୍ତା । ଥାଟର ଲୋକ ସନ୍ତୋଷ ନଥିବେ, ଲଢ଼ିବାକୁ କହିବ, ସେ କହିବେ ଆମର କ ଯାଏ ? ଥାଟରୁ କେତେ ଲୋକ ମେଳିଆଙ୍କ ପଟକୁ ଚାଲିଗଲେ ତ ଆହୁରି ଅଡ଼ୁଆ । ଏତେବେଳେ ଯଦି ରାପ୍‌ଟାବାଲିରେ ମାରଧର ଚାଲିବ, ସେ ଗୋଳମାଳରେ କ'ଣ ଯେ ହେବ କିଏ କହିବ ?"

ଉକ୍‌ଡ଼ୁକୁଟି ବୁଝିଲା । ସେ ଗୁମ୍ ହୋଇ ବସିପଡ଼ିଲା । ଓଠ ଚାଟି ଚାଟି ଧୀରେ ଧୀରେ ସେ କହିଲା, "ତୁ କହ ।"

କାନ୍‌ଙ୍ଗା କହିଲା, "ଡାକୁକ ପାନୁ ନଦେଉ, ଆଉ କୋଉ ଗାଁ ବି ନଦେଉ, ପୁଣି ଖବର ପଠୋଉଥିବ ତୁମେମାନେ, ମଣ୍ଡଳ ସଭାକୁ ଡାକୁଥିବ, ଆସିବେ ତ ନାହିଁ, ତୁମେ ଲୋକଙ୍କୁ କହିଚାଲୁଥିବ 'ଚିହ୍ନିଥା ଏମାନଙ୍କୁ, ଏମାନେ ମାନୁନାହାନ୍ତି, ଏମାନେ ଆଉ କାହା କଥାରେ ପଡ଼ି ନାଚିଲେଣି, ଆମ ରାଜ୍ୟର ଭଲ ଖୋଜୁନାହାନ୍ତି ।' ଏମିତି କହୁଥିବ, ଜଗିଥିବ, ଛପିଥିବ, ଯେ ଆସି କ୍ଷମା ମାଗିବ ତାକୁ ଗାଳିଦେଇ ଛାଡ଼ିଦେଉଥିବ ।"

ଅସଲ-କାମ ହେଲା ଦୁଇଟା,—ପାଖେ ଥାଟକୁ ଖୁସି ରଖିବ, ଦମ୍ଭ ରଖିବ, ଯାହା ଖର୍ଚ୍ଚ ପଡୁ ଖର୍ଚ୍ଚ କରିବ । ପାଖେ ଲୋକଙ୍କୁ ଖୁସି ରଖିବ ।''

ଉକଡ଼ୁକୁଚି ଥଟ୍ଟା କରି କହିଲା, ''ଲୋକଙ୍କୁ ଖୁସି ରଖିବୁଁ ! କ'ଣ ଭୋଜଭାତ ଦେବୁଁ, ତାଙ୍କ ସଙ୍ଗେ ନାଚ କରିବୁଁ ?''

କାନ୍‌କଟା କହିଲା, ''ସେଇଟା ତ ସତରେ ଖୁବ୍ ଦରକାରୀ କାମ ମୁଣ୍ଡାମାଳି । ତା' ତ କରିବ । ଖାଲି ସେତକ ନୁହେଁ । ଗାଁ ଗାଁ ବୁଲି, ଘରେ ଘରେ ରହି, ଗପ କରି, ଦୁଃଖ ସୁଖ ବୁଝ, କାହାର କି ଲୋଡ଼ା ଅଛି ପଚାରି ବୁଝ, କହ, 'ହେବ, କରିବା', ନାହିଁ ପଦ ତୁଣ୍ଡରେ ଧରନାହିଁ । ଗାଁ ପାଖେ ବଣ ଅଛି, ଲୋକଙ୍କୁ ଦେଖେଇ ଦିଅ, କହ 'ମନ ହେଲେ ଯାକୁ ହାଣି ଜମି କର ।' କାହାର ବେଶି ଜମି, କାହାର ଊଣା, ଥିବା ଲୋକଠୁଁ ମାଗିଆଣି ନଥିବା ଲୋକଙ୍କୁ ଦେଇଦିଅ । ପଚାର, କୋଉ ନାଳରେ ମୁଣ୍ଡା ବାନ୍ଧିଲେ ଜମିରେ ପାଣି ମାଡ଼ିବ, ଜାଗା ଦେଖ, ଲୋକଙ୍କୁ କହ 'ତୁମେ କର, ଆମେ କୋଠରୁ ଧନ ଦିଆଇବୁଁ ।' କୋଉଠି କମ ଧୋଇଯାଏ, ବନ୍ଧ ଦିଆଯିବ, କୋଉଠି ପୋଖରୀ ହେବ, କୋଉଠି ସଡ଼କ, ଲୋକଙ୍କଠୁ ଭେଦା ଉଠେଇ ତାଙ୍କର ହାତରେ କରାଅ, କୋଠରୁ ବି କିଛି ଦିଅ । କହ 'ପାଳୁ ଏଇସବୁ କାମ ପାଇଁ ନିଆଯାଏ ।' ଭଲ ଦେଶରୁ ଜାତିଜାତିକା ପଶୁବା ବିହନ ଆଣିଦେବୁଁ, ମକା ବିହନ ଆଣିଦେବୁଁ, ହାତେ ହାତେ ଲମ୍ବ ମକା, ଜାତି ଜାତି ଫଳଗଛ ଚାରା ଆଣିଦେବୁଁ, ଏଡ଼େ ଏଡ଼େ ଆମ୍ବ ଫଳେ, ବଡ଼ ଜାତି ଛେଳି କୁକୁଡ଼ା ଆଣିଦେବୁଁ, ପୋଷିଲେ ବଢ଼ିବେ, ତୁମେ ଶରଧାରେ ବାଣ୍ଟ, ଲୋକେ ଖୁସି ହେବେ । ବଡ଼ ବଡ଼ ଗାଁରେ ନିଜ ହାତରେ ଦି'ଟା ତିନିଟା ଚାରା ଗଛ ଲଗାଅ, ଲୋକେ ମନେ ରଖିବେ । ଗାଁ ଗାଁକେ କିଛି କିଛି କରିଆ, ମାଲି, ମୁଦ, ଶରଧାରେ ବାଣ୍ଟ, ନାଚ ଲଗାଅ, ଭୋଜି କର ।''

''କହିଦେଲୁ ତ ବହୁତ କଥା ପାଟ୍-ବାରିକା, ଏତେ ଖର୍ଚ୍ଚ ଦବ କିଏ ?''

କାନ୍‌କଟା କହିଲା, ''କୋଠରୁ ସରିବ, ତୁମ ହାତରୁ ବି ପଡ଼ିବ ମାହାପ୍ରଭୁ, ରାଜ୍ୟ ମୁଣ୍ଡେଇଛ, ରାଜ୍ୟ ଅଛି ବୋଲି ସିନା ସବୁ । ଲୋକଙ୍କ ଶରଧା ପାଇବାକୁ ହାତରୁ ଖର୍ଚ୍ଚ ନକରିବ କେମିତି ? ଆମକୁ କହିଲେ ଆମେ କିଛି ଉଧାରରେ ବି ଆଣିପାରିବୁଁ ମାହାପ୍ରଭୁ, ସବୁ ନୁହେଁ, କିଛି କିଛି । ତୁମେ ପଛେ ଶୁଝିବ । ଲୋକେ ଶରଧା ପାଇଲେ ଖୁସିରେ ପାଳୁ ଦେଉଥିବେ ।''

''ଖାଲି ଖର୍ଚ୍ଚ ବି ନୁହେଁ, ବୁଲିବାକୁ ପଡ଼ିବ । ଏତେ କିଏ ବୁଲିବ ? ନିଜ ଘର ନିଜ କାମ ଛାଡ଼ି ଦିନ ଦିନ ରାତି ରାତି ଖାଲି ବୁଲୁଥିବ ବୁଲୁଥିବ !''

''ଆଠ ମୁଣ୍ଡାମାଳି ଆଠ ଆଡ଼େ ବୁଲିଲେ ଚଳିବ । ବାଧା ତ ଲାଗିବ, ଦିନ ବି ବଢିବ, ନ ବୁଲିଲେ ଏ ରାଜ୍ୟ ରଖିବ କେମିତି ମାହାପ୍ରଭୁ ?''

"ରାଜ୍ୟ ରହନାହିଁ କ'ଣ କୁଆଡ଼େ ପଳେଇଣ ?"

"ଆଣ୍ଟକୁ ବାଣ୍ଟକୁ ନଜଗି ଥିବାରୁ ତ,—ପଗ୍ଭରିଲୁ, କହିଲ, ଏଣିକ ତୋ ମନ ।"

"ଆଉ ମେଲିଆଙ୍କୁ ଶାସ୍ତି ଦେବାଟା କେବେ ହେବ ?"

"ଦେଖିବ, ସବୁ ଲୋକ ତୁମର ଜୟଜୟକାର କଲେ, ଆଣ୍ଟ ବି ଟାଣ ହେଲି, ସେତେବେଳେ ସେ କଥା ଭାବିବ । କୁକୁର ପିନ୍ଧା କାମୁଡ଼ିବାକୁ ଧାଇଁଯାଏ ମାହାପ୍ରଭୁ, ବାଘ ଯେ ସେ ଘରଆଡ଼କୁ ଦେଖେ, ଛକ ଛକ ଲୁଚିଯାଏ, ଯୋଗପାଗ ଦେଖେ, ତେଇଁପଡ଼ି ଧରେ । ମୁଁ ସେଇକଥା କହୁଛି ।"

ଉକ୍‌ଡ଼ୁକୁଟି କହିଲା, "ଦେଖେଁ, ମଣ୍ଡଳ ସଭାରେ କହିବ, ସେଠି ଯାହା ନିଷ୍ପତ୍ତି ହେବ ।"

ଅଷ୍ଟ ମୁଣ୍ଡମାଝିମଣ୍ଡଳରେ କଥାଟା ପଡ଼ିଲା, ରାଗ-ରୋଷ ହେଲା, ଧର-ମାର ଶୁଭିଲା, ତା'ପରେ ଉକ୍‌ଡ଼ୁକୁଟି ମୁଣ୍ଡମାଝି ବୁଝେଇଲା—କାନ୍‌କଟା କହିଥିବା କଥା ଅବିକଳ, ଗୋଟି ଗୋଟି ।

ଆଉ, ସେ ଆଠଜଣଯାକ ମୁହଁ ଚାହାଁଚାହିଁ ହେଲେ । ସେମାନେ ଜାଣିଥିଲେ,—ଅନେକ ଲୋକ ତାଙ୍କ ସମାଲୋଚନା କରନ୍ତି, ଯାହା କହନ୍ତି ସବୁ ବି ମିଛ ନୁହେଁ, ଆଣ୍ଟ ବି ଠିକଣା ନାହିଁ; କିନ୍ତୁ ସେମିତି ତ ଚାଲିଆସିଛି ଏତେକାଳ, ଏପରି କେବେ ଘଟିନାହିଁ ଯେ ରାଜ୍ୟ ଭିତରେ କେଉଁ ଗାଁର ଲୋକ ହଠାତ୍ ମୁହଁ ମୋଡ଼ିଦେଇ ଠିଆ-ହେବେ ଆଉ କହିବେ,—"ଆମେ ତମକୁ ମାନିବୁ ନାହିଁ, ପାଲି ଦେବୁ ନାହିଁ ।"

ଦଶାଙ୍ଗା କହିଲା, "ରାଜା ରାଜୁତି କରୁ, ମୁଣ୍ଡମାଝି ରାଜୁତି କରନ୍ତୁ, ରାଜ୍ୟ ଲୋକ ଯେତେ ଯାହା ଲୋଡ଼ିବେ ସବୁ ଦେଇଦେବ ସବୁ କରିଦେବ ଏମିତି କିଏ ଅଛି ? ଯାହା କର, ଥୋଡ଼ାଏ ଲୋକ ତମକୁ ଗାଳି ଦେଉଥିବେ ।"

ଡିଟ୍‌କା କହିଲା, "ସେ ଆଣ୍ଟର ଲୋକଙ୍କ କଥା ବି ଦେଖ ।"

ଅଡ଼ୁଆ ତ ସମସ୍ତେ ବୁଝୁଥିଲେ; କିନ୍ତୁ ସମସ୍ତେ ଭାବୁଥିଲେ "ଉପାୟ କ'ଣ ?"

ରାଡ଼ପା କହିଲା, "ଆଣ୍ଟ କଥା କାହିଁକି ପଡ଼ୁଛି ? ଆମେ ପାଲି ମଗେଇଲୁ, ଗୋଟାଏ ଗାଁ ଦେବାକୁ ମନାକଲେ । ଏମିତି ଆଉ ଗାଁଲୋକ ବି କରିବେ । ତେବେ,

—ଏକା ମୁଣ୍ଡମାଳି କାହିଁକି, ଓକାଳି ସବୁ ମୁଣ୍ଡିଆଳଙ୍କୁ, ସଭା ବସୁ, ସେଇଠି ଏକଥା ପଡ଼ିବ । ସମସ୍ତେ ଯାହା କହିବେ ସେଇଆ ହେବ ।''

ଟାଂଗ୍ରା କହିଲା, ''ଆମେ ପାଲୁ ବସେଇଲାବେଳେ ସମସ୍ତଙ୍କୁ ପଚାରିଥିଲୁଁ କି ? ମୁଣ୍ଡିଆଳମାନେ ଯଦି କହିବେ—'ଆମର ଏ ପାଲୁକୁ ରାଜି ନାହିଁ' କ'ଣ କରିବା ?''

ଓଟିଲା କହିଲା, ''ଥାଉ, ସେ କଥା ନାହିଁ । ଆମେ ଏବେ କିଛୁ ନକରି ରହିକି ପଡ଼ିଲେ କ'ଣ ଷଢ ହେବ ? ଉକ୍‌ଡୁକୁଟି ଯେମିତି କହୁଚି ସେମିତି କରୁ ।''

ସମସ୍ତେ ପୁଣି ବଦଳିଗଲେ, କହିଲେ, ''ସେଇ ଭଲ, ସେଇ ଭଲ, ଏତେ ତେଣ୍ଟା ଲଗେଇ କି କାମ ?''

ଉକ୍‌ଡୁକୁଟି କହିଲା, ''ଏବେ କିଛୁ କରିବା ନାହିଁ କହୁଛ ? ମୁଁ ରାଜା । ମାଡ ଡାକୁକୁ ଜିନା ଏବେ କିଛୁ କରିବ ନାହିଁ, ଥାଟକୁ ସଜାଡ଼ିବାକୁ, ଲୋକଙ୍କୁ ଆସ୍ତିକୁ ଆଣିବାକୁ, ଯାହା ଯାହା କହିଲି ସବୁ କରିବା ତ ? ହାତରୁ ପଇସା ଖର୍ଚ୍ଚ ହେବ, ଉଧାର ବି କରିବା, ପୁଣି ଘରେ ନବସି ରାଜ୍ୟସାକ ବୁଲୁଥିବା, ଗାଁ ଗାଁକେ ରହୁଥିବା, ଲୋକଙ୍କ ସଙ୍ଗରେ ମିଶୁଥିବା, ତାଙ୍କ କାମ କରେଉଥିବା, ଏତେ ଏତେ କଥା କରିବାକୁ ପଡ଼ିବ । ସେପାଖେ ଡାକୁକ ବି କହି କହି ବୁଲୁଥିବ, ତା'କଥା ଶୁଣି ଅନ୍ୟମାନେ ବି ପାଲୁ ଦେବାକୁ ମନାକରୁଥିବେ । ଆମେ କହୁଥିବା—ଦେଖ ଏ ଅମାନଆଁ ଗୋଲମାଲିଆ ଲୋକଙ୍କୁ, ସ୍ୱାର୍ଥର ଉନେ ବାଟ, ଏମାନେ କେମିତି ଦେଶ ଗୋଟାକକୁ ଦଦେଇବାକୁ ବସିଛନ୍ତି ଦେଖ । ଲୋକ ଆମ କଥା ଶୁଣିବେ । ସେଥକି-ବେଳେ ଏକାଥରେ ଭୋଟ ହାଣିବା, ସବୁ ଗୋଲମାଲିଆ ଲୋକଙ୍କୁ ଦବା ଜବତ୍ କରି । ଥାଟ ବି ଟାଣ ଥିବେ, ଥାଟ ଆଉ ଲୋକ ସମସ୍ତେ ଆମପଟେ ଥିବେ ।''

ରାଡ଼ପା କହିଲା, ''ହୁ, ଭଲ ବୁଦ୍ଧି କହୁଚୁ । ଡାକୁକ କଥାରେ ଲୋକେ ଆମ ବରୁଦ୍ଧରେ ନମାଠବେ କାହିଁକି ? ଏବେ ଏକା ଡାକୁକ ନାଚୁଛି । ସେତେବେଳେ କେତେ କେତେ ନାଚବ, ଜାଣି ଜାଣି ଶତ୍ରୁର ବଳ ବଢ଼େଇବା ନା ?''

ପୁଣି ଗୁଳେଣି, ପୁଣି ଅନିଶ୍ଚିତତା ।

ଉକ୍‌ଡୁକୁଟି କହିଲା, ''ତେବେ—ଅଇଗୁ ଗୋଲମାଲ ଲାଗିଲେ ଆମେ ତ ଅଡ଼ୁଆରେ ପଡ଼ିବା !''

ରାଡ଼ପା କହିଲା, ''ଲାଗିଲେ କ'ଣ ? ଲାଗିଗଲାଣି । ଡେରି କଲେ ଢପଦ । ଏବେ ଧରିଦେଲେ ବିପଦ ।''

ବହୁତ ଯୁକ୍ତିତର୍କ, ବହୁତ ଚକ୍ରା, ତା'ପରେ କଥା ଛିଡ଼ିଲା—ଉକ୍ଟଡ଼ୁକୁଟି ଯେଉଁ ବ୍ୟବସ୍ଥା ବୁଝାଇଥିଲା, ଅର୍ଥାତ୍ କାନ୍‌କଟା ଯାହା ମନ୍ତ୍ରଣା ଦେଇଥିଲା—ସେପରି କରିବାକୁ ପଡ଼ିବ ଅତି ଶୀଘ୍ର, ଅଳ୍ପଦିନ ପରେ ଡାକୁକକୁ କାବୁ କରିବାକୁ ପଡ଼ିବ ।''

''ଟାଲ୍‌ଟୁଲ୍—ଟାଲ୍‌ଟୁଲ୍—ଆଜି ନୁହେଁ ପରେ—''

ଗୋଟାଏ ଅପ୍ରୀତିକର ପରିସ୍ଥିତିକୁ ପଛକୁ ପେଲିଦେଇ ଅଷ୍ଟମୁଣ୍ଡାମାଝି ମଣ୍ଡଳ ଉଶ୍ୱାସରେ ନିଶ୍ୱାସ ମାରିଲା ।

ଡାକୁକ କହିବୁଲିଲା, ଗାଁକୁ ଗାଁ, ଜଣକୁ କହି ଆଉ ଜଣକୁ । ନିଜ କାମ ଧନ୍ଦା କରି କମ୍ପା ପକେଇ ଦେଇ ଯେତେ ବୁଲିପାରେ ସେତେ ବୁଲିଲା । କେହି ଅଟକାଉ ନାହିଁ । ତାକୁ ସତେକି କାଳିଶି ଲାଗିଛି । କହୁ କହୁ ବଢ଼ି ବଢ଼ି କଥା କହୁଛି, ନୂଆ ନୂଆ କଥା କହୁଛି । ତାକୁ ପାଲୁ ମଗା ହୋଇଥିଲା, ଆଉ ସେ କଥାରେ ସେ ଗୁରୁତ୍ୱ ଦେଉନାହିଁ, ଯାହା କହୁଛି ସତେ ଅବା ସମନ୍ତିଙ୍କ ପକ୍ଷରୁ କହୁଛି । କହୁଛି ଏ ମୁଣ୍ଡାମାଝି-ମାନେ ମନ୍ଦ, ସ୍ୱେଚ୍ଛାଗ୍ରସ୍ତ, ସ୍ୱାର୍ଥପର, ନିଜେ ନିଜ ସୁଖରେ ବ୍ୟସ୍ତ, ଖାଲି ଜାତିଜାତିକା ମାଗଣ ମାଗୁଛନ୍ତି, ଲୋକଙ୍କ ପାଇଁ କାମ କିଛି କରୁନାହାନ୍ତି । ସେମାନେ ଯିବା ଭଲ । ଅନ୍ୟଲୋକ ରଖିଲେ ଭଲ । କ'ଣ କାମ କରନ୍ତେ ? କେମିତି କରନ୍ତେ ? ସେ ବିଷୟରେ ସ୍ପଷ୍ଟକରି ସେ କିଛି କହିପାରି ନାହିଁ, ଏତିକି କହୁଛି ଯେ ସେକଥା ଲୋକେ ଭାବି ବିଚାରି ଠିକଣା କରିବେ, ହଠାତ୍ ନୁହେଁ, କାଳକ୍ରମେ । ''ନିଜ କାମ ସମସ୍ତେ ଜାଣନ୍ତି, କରନ୍ତି'', ସେ କହେ, ''ସମନ୍ତିଙ୍କ କାମ କ'ଣ ସେଇଟା ଦଶଜଣ ବସି ଠିକଣା କରିବେ ସିନା, ସମସ୍ତେ ଭାବିବେ, ଅଷ୍ଟ ମୁଣ୍ଡାମାଝି ମଣ୍ଡଳକୁ କହିବେ, ସେ କରେଇବେ, ସେଥିପାଇଁ ତ ସେ ଅଛି । ସେମାନେ କୋଉ ତା କରେଉଛନ୍ତି ? ଭାବ, ଠିକଣା କର, ସମସ୍ତେ ଭାବ ।''

ସେ କହେ ନାହିଁ ଯେ ତମ୍ଭଠୁଁ ନୂଆ ନୂଆ କିଷମ କରି ଲୋକେ କେମିତି ଫସଲ ବୃଦ୍ଧିକରିଦେଲେ, ଗରିବ ହେଲେ ସେ କଥା; କିନ୍ତୁ ଲୋକେ ଗରିବ ହୋଇଛନ୍ତି, ସେହି କଥାକୁ ସେ ଉପଲକ୍ଷ୍ୟ ଦିଏ, ''ଦେଖ ଦିନୁଦିନ କେମିତି ଅକାଳ ପଡ଼ୁଛି, ଆଗେ କେତେ ଥିଲା, ଏବେ ନାହିଁ, ଏବର୍ଷ ଆମେ ଆମ୍ବ ଟାକୁଆ ଖାଇଲୁଁ । ମୁଣ୍ଡାମାଝିମାନେ କ'ଣ ଭଲ ପାଇଲେ ?''

ସେ ଜଣଜଣକର ସ୍ୱଭାବ ଚରିତ୍ରର ଦୋଷ ଦୁର୍ବଳତା କଥା କହେ, କହେ, ''ଏଇମାନେ ଆମ ମୁଣ୍ଡାମାଝି ! ଏମାଙ୍କୁ ଆମେ ମାନିବୁଁ !''

କହୁ କହୁ ତା' କଥାରେ ପୂରିଯାଏ ହିଂସା, ଦ୍ୱେଷ, ଆକ୍ରୋଶ, ସେ ରାଗିଯାଏ, କହେ, "ସହୁଥିଲେ ସହୁଥିବା, ଆଉ ତା' କରିବୁଁ ନାହିଁ, ବଡ଼ ପାଟିରେ କହିବୁଁ ମାନିବୁଁ ନାହିଁ । କି ଡର ? ରାଜ୍ୟଯାକ ଲୋକ ସମସ୍ତେ ଜାଣନ୍ତି, ସମସ୍ତେ ଆମରି ଲୋକ, ଥାଟର ଲୋକ ହେଲେ ଆମରି ଲୋକ, ବାଟର ଲୋକ ହେଲେ ଆମରି ଲୋକ ।"

ଆଗ ଆଗ କେତେ ଲୋକ ଡାବୁକ କଥା ଶୁଣି ନଶୁଣିଲା ପରି ଚାଲିଗଲେ, କେତେ ଲୋକ ତା' ଉପରେ ବିରକ୍ତ ହେଲେ, କେତେ ଲୋକ ଶୁଣିଲେ, ଭାବିଲେ, ଡରିଲେ, ତୁଣ୍ଡ ଖୋଲିଲେ କାଳେ ବିପଦ ପଡ଼ିବ ବୋଲି । କିନ୍ତୁ କ୍ରମେ ଅନେକ ଲୋକ ଭାବିଲେ—ସେମାନେ ମନେ ମନେ ଯାହା ଭାବୁଥିଲେ, କେତେବେଳେ ଦୁଇ ତିନି କରି ପାଞ୍ଚଜଣ କଥାଭାଷା ହେଉଥିଲେ, ଏ ଲୋକଟି ବଡ଼ପାଟିରେ ସେହି କଥା କହିବୁଲୁଛି, ତାକୁ କିଛି ବିପଦ ତ ପଡ଼ୁନାହିଁ !

ମୁଣ୍ଡାମାଝିଙ୍କ ପଟିଆ ଲୋକେ ତଳିଆ ଲୋକେ ଶୁଣୁଛନ୍ତି, କିଛି ଅନର୍ଥ ଘଟାଉ-ନାହାନ୍ତି । ସେମାନେ ଖାଲି ତୁଣ୍ଡରେ ଲୋକଙ୍କୁ ବୁଝାଉଛନ୍ତି—

"ଦେଖ ଭାଇ, ଏ ଡାବୁକ ମାଝି କେମିତି ମିଛରେ ମୁଣ୍ଡାମାଝି ମଣ୍ଡଳ ନାଁରେ ଅପବାଦ ରଟାଉଛି, ଲୋକଙ୍କୁ ମତାଉଛି । ଦେଖ, ଚନ୍ଦ୍ର, କେଡ଼େ ଗୋଳମାଳିଆ ଲୋକ ଏମାନେ ! ଆମେ ରାଜ୍ୟଯାକର ଭାଇମାନେ ଗୋଟାଏ ପଟ ହେଲେ ସ୍ୱାର୍ଥ ଯେ ଭିନେ ଗୋଠ । ତୁମେ କହ କାହାକୁ ହରବର କରିବାକୁ ଆମ ରାଜ୍ୟରେ ରଜା ଅଛି କି ? ରଜା ତ ଆମେ ସମସ୍ତେ । ସମସ୍ତିଙ୍କ ତରଫରୁ ରାଜ୍ୟ ପାଳୁଛନ୍ତି ଆଠ ମୁଣ୍ଡା-ମାଝି । ତାଙ୍କୁ କିଏ ବସେଇଛି ? ଆମେ, ରାଜ୍ୟଯାକର ଲୋକେ । ସେ କାହାକୁ ମାରଜୁର କଲେ କି ? କେବେ ଶୁଣାନାହିଁ । କିଛି ଅନ୍ୟାୟ କଲେ କି ? କେବେ ଜଣା ନାହିଁ, ତାହେଲେ ଏ ଡାବୁକ ଆଉ ଏମାନେ କାହିଁକି ପାଟିକରୁଛନ୍ତି ? ସେଇଟା ତୁମେ ଭାବ । ଅସଲ କଥା ତାଙ୍କର ମନ ଅଛି ମୁଣ୍ଡାମାଝି ହେବେ, କି ରଜା ହେବେ । ଏଡ଼େ ବଡ଼ ଅଧର୍ମ ବସୁଧା ସହିବ ? ପାଳି ବିଷୟରେ କଳିକରୁଛନ୍ତି, ତୁମେ ଭାବ, ଆମେ ସମସ୍ତେ ପାଳି ନଦେଲେ ରାଜ୍ୟ ଚାଲିବ କେମିତି ? ଥାଟ ନରଖିଲେ ଦେଶକୁ ଜଗିବ କିଏ ? ପାଇକ ନରଖିଲେ, କାମ କରିବାକୁ ଲୋକ ନରଖିଲେ, ଧନ ନଥିଲେ ସେସବୁ କାମ ହେବ କେମିତି ? ସେଥିପାଇଁ ତ ଆମେ ପାଳି ଦେଉ, ସମସ୍ତେ ଦଅନ୍ତି, ଏମାନେ ମନାକରୁଛନ୍ତି । ପୁଣି କହୁଛନ୍ତି, ଆହୁରି କାମ ହୁଅନ୍ତା । ଧନ ତ ନାହିଁ କି ଅଧିକା କାମ ହେବ ?

ଅଧିକା କାମ ବି କ'ଣ ସେଇଟା କହୁନାହାନ୍ତି । ଆମେ ତଳଦେଶୀ ଲୋକ ନୋହୁଁ, ଆମେ କନ୍ଧ ଲୋକ । ଆମର ଅଧିକ କିଛି ଲୋଡ଼ା ହୁଏ ନାହିଁ, ଯାହା ଲୋଡ଼ା ହୁଏ ଆମେ ନିଜେ କମେଉଁ, ଫସଲ ବଦଳ ଦେଲେ ମିଳୁଛି । ଆମ ଥଜା ପଣଥଜା-ମାନେ ବି ସେମିତି ଚଳୁଥିଲେ । ସ୍ୱେ କ'ଣ ଅଧିକା କରିପକାନ୍ତେ ?

ମିଛ କଥା । ଏମାନେ ରଜା ହୋଇଥିଲେ ରାଜ୍ୟଟାକୁ ଆଉ କେମିତି କ'ଣ ଭଲ କରିପକାନ୍ତେ ସେମିତି ଧାରଣା ବି ଏମାନଙ୍କର ନାହିଁ ।

କିଛୁ ଧାରଣା ନାହିଁ । ଖାଲି ଗୋଳମାଳ କରିବାକୁ ମନ । ହଠାତ୍ କାହିଁକି ମାତିଛନ୍ତି ସେଇଟା ଭାବ । ଆମେ ଶୁଣୁଛୁ ଆମ ରାଜ୍ୟ ବାହାରେ ପରଦେଶୀ ରାଜାମାନେ ସୁଆଙ୍ଗ ଲଗେଇ ଦେଇଛନ୍ତି, ତାଙ୍କୁ ମାଇଁ ଗୁପ୍ତରେ ତାଙ୍କଠୁଁ କିଛି ଆଶା ପାଇଥିବ, ଲାଭ ପାଇଥିବ—ଲାଞ୍ଚ, କ'ଣ ଆଉ ବୁଝୁଛ ! ସେ ପରଦେଶୀମାନେ ଆମ ଶିରୀ ସହିପାରୁନାହାନ୍ତି । ଏଠି ରଜା ହେବାକୁ ମନବଳେଇଛନ୍ତି ପରା । ତାଙ୍କୁମାନଙ୍କୁ ନଚେଉଛନ୍ତି । ତାଙ୍କ ଉଦ୍ଦେଶ୍ୟ ଜଣାପଡ଼ୁଛି । ଯଦି ଆମ ରାଜ୍ୟର ଲୋକେ ଦି' ବାଡ଼ ହୋଇଯିବେ, ରାଜ୍ୟର ବଳ ତୁଟିଯିବ, ସେତିକବେଳେ ପରଦେଶୀ ମାଡ଼ିଆସିବେ ।

ତୁମେମାନେ ଏଇସବୁ କଥା ବୁଝ, ତାଙ୍କୁ ଆଉ ସେମିତିଆ ଲୋକଙ୍କୁ ଚହ୍ନି-ରଖ, ତମକୁ କହିଲେ ତୁମେ ବି କହ, ତାଙ୍କୁ ଦେଖ, ଯାହା ଉପାୟ କରିବ କର ।

ଅଷ୍ଟ ମୁଣ୍ଡାମାଇଁ ମଣ୍ଡଳ କେଡ଼େ ଭଲ, କେଡ଼େ ଶାନ୍ତ ସୁଧାର ମଣିଷ ସେମାନେ, ଆଉ କାଏ ହେଲେ ତାଙ୍କୁକୁ ଧରିନଥାନ୍ତେଣି । ଭଲ ଦେଶରେ ଏମିତି ଚଳିବ କି ? ରଜାକୁ ମନ୍ତ୍ରୀକୁ ଛାଡ଼, କୋଉ ପାଇକକୁ କେହି ନାହାକରି ପଦେ କହିଦେଲେ ତା' ନଣ ଓ୍ୱାଡ଼ି ଦେବେନାହିଁ ? ତେବେ ଏଠି ଭନେ, ଆମେ କିଛି ଲୋକ, ରଜା ନାହିଁ ପରଜା ନାହିଁ, ସମସ୍ତେ ଆମେ ଭାଇ ଭାଇ । ସେଥିପାଇଁ ଆମ ମୁଣ୍ଡାମାଝିମାନେ ତାଙ୍କୁକର କିଛି କରୁନାହାନ୍ତି । କିନ୍ତୁ କିଛି ନକଲେ ଆମ ଦେଶ ନଶିଯିବ ଯେ । ତାଙ୍କୁମାନଙ୍କୁ ଚୁନକର, ଚୁନ ନପଡ଼ିଲେ ଯିବା, ଅଷ୍ଟମୁଣ୍ଡାମାଇଁ-ମଣ୍ଡଳରେ ଜଣାକରିବା ।"

କିନ୍ତୁ ମୁଣ୍ଡାମାଝିମଣ୍ଡଳ ପାଇଁ ଗାଁ ଗାଁକେ କହିବୁଲିବା ଲୋକ ବି ବେଶି ନଥିଲେ । ମୁଣ୍ଡାମାଝିଙ୍କ ବନ୍ଧୁକୁଟୁମ୍ବ ଲୋକଙ୍କ ଭିତରୁ କେହି କେହି ଆଖପାଖରେ କେତେବେଳେ କାହାକୁ କହନ୍ତି, କେତେବେଳେ କାନ୍‌କଥା କାହାକୁ ବରିଗିଆଏ । ତମ୍ଭ ନିଜେ ପ୍ରକାଶ୍ୟରେ ପର୍ମୁର କରି ବୁଲନ୍ତି ନାହିଁ, ସେମାନେ କୁହାକୋହି ହୁଅନ୍ତି— "ଗୋଳମାଳରେ ଆମର କି କାମ ? ଜଣକ ପଟ ନେଲେ ଆଉ ଜଣେ କଳିକରିବ, ନହେଲେ ଅହନ୍ତା ରଖିବ । ଆମେ ଆସିଛୁ, ବେପାର କରିବୁ ନହେଲେ କିଛି କାମଧନ୍ଦା କରିବୁ, ଦୁନିଆ ଭଲ ଥିଲେ ଆମର ଭଲ ।"

ତାଙ୍କୁକ ଅଟକଳ ନାହିଁ, କହିବୁଲିଲେ, କ୍ରମେ ତା' ଦେଖାଦେଖି ଅନ୍ୟ ଲୋକ ବି ମୁଣ୍ଡାମାଝିଙ୍କ ବିରୁଦ୍ଧରେ ବାଟରେ ଘାଟରେ କୁହାକୋହି ହେଲେ, ଆଗେ ଯେ ଚୁନ ଚୁନ କହୁଥିଲେ, ଏତେବେଳେ ସେମାନେ ବଡ଼ପାଟିରେ କହିଲେ, ଆଗେ ଯେ ମୁଣ୍ଡ ଖେଳୋଉ ନଥିଲେ, ଏବେ ସେମାନେ ରାଜ୍ୟର ହାଲ୍‌ଚାଲ୍ ବିଷୟରେ ଭାବିଲେ,

…ସତେ ତ ! ମୁଣ୍ଡାମାଝିମଣ୍ଡଳ ଅଛୁ, ଖଜଣା ମାଗନ୍ତି, ପାଲୁ ମାଗନ୍ତି, ଲୋକେ ଦଅନ୍ତି, ପାଆନ୍ତି କ'ଣ ? ମୁଣ୍ଡାମାଝିମାନେ ନିଜେ ସୁଖରେ ଅଛନ୍ତି, ଶୁଣାଯାଏ, ତାଙ୍କର ଧନ ବଢ଼ିଛି; କିନ୍ତୁ ଲୋକେ ତ ଗରିବ ହେଲେଣି । ଡମ୍ବ ଆସିଲେ, ନୂଆ ଜିନିଷ ଦେଖାଇଲେ, ଭଲ ମନ୍ଦ ଟୋପାଏ ମିଳିଲା, ହାଟ ବେପାର ବଢ଼ିଲା । କିନ୍ତୁ ସେମାନେ ଚଢ଼ା ଭାଉ ନେଇ ନେଇ ଏତେ ଜିନିଷ ଯେ ବୋହିନେଉଛନ୍ତି, ଯେତେ ନେହୁରା ହେଲେ ମାନୁନାହାନ୍ତି, କାହା ବଳରେ ? ଏଇ ମୁଣ୍ଡାମାଝିମାନଙ୍କ ବଳରେ ତ ! ସେମାନେ ଆସିଲା ଦିନୁଁ ରାଜ୍ୟକୁ ଅକାଳ ପଡ଼ୁଛି, ଏକଥା କ'ଣ ମିଛ ? ତେଣୁ ଏ ମୁଣ୍ଡାମାଝିମାନେ ଅପାରଗ, ଆଉ ବି ଭାଙ୍ଗିଯାଉଛୁ, ଲୋକ ଗୁଡ଼ି ପଳୋଉଛନ୍ତି ।

"ଏମାନେ ଯାଉନ୍ତୁ"—ଏ ବିଷୟରେ ସବୁ ସମାଲୋଚନାକାରୀ ଏକମତ । ତା'ପରେ ?

ଅଡ଼ୁଆ ସେଇଠି ।

ସ୍ୱାଙ୍କ ଛଡ଼ା ଅନ୍ୟ ଯେ ମୁଣ୍ଡାମାଝି ହୋଇ ରହିବେ ସେମାନେ କି କି କାମ କରିବେ ଏପରି କେହି ଭାବି ନାହାନ୍ତି ।

ଏମାନେ ଗଲେ କନ୍ଧ ରାଜ୍ୟ କେମିତି ଚାଲିବ ସେ ବିଷୟରେ ବି ସମସ୍ତିଙ୍କ ଧାରଣା ସମାନ ନୁହେଁ । ତାରୁକ ମାଝି ଚାହେଁ, ସବୁ ଗାଁ ଲୋକ ଏକାଠି ବସି ନିଜ ନିଜ ଗାଁର ମୁଣ୍ଡିଆଲଙ୍କୁ କହିବେ, ଅନ୍ୟ କେଉଁ ଆଠଜଣ ମୁଣ୍ଡାମାଝି ହେଲେ ଭଲ ହେବ । ମୁଣ୍ଡିଆଲମାନେ ହାତାପଥର ପାଖେ ଜମା ହେବେ, ନିଜ ଭିତରେ ଆଲୋଚନା କରିବେ, ନାଁ ଠିକଣା କରିବେ ।

କିନ୍ତୁ ଜାକାସିକା ଗୋଜିର ଦାଉଡ଼ା ସାଓଁତାର ମତ ସେପରି ନୁହେଁ । ସେ ଆଉ ମୁଣ୍ଡାମାଝି ଚାହେଁନାହିଁ । "ସବୁ ଗାଁ ନିଜ ନିଜ ଲୋକଙ୍କ କଥା ବୁଝେ, ଆଜି ନୁହେଁ, ସବୁଦିନେ । ଗାଁ କଥା ଗାଁ ଲୋକ ଭାବନ୍ତି ବସନ୍ତି ଏକାଠି, କଥା ପଡ଼େ । ଦୁଇ ଗାଁ ଭିତରେ ମତଭେଦ ହେଲେ ଆଉ ତିନିଚାରି ଗାଁ ଲୋକଙ୍କୁ ଡାକି ପଞ୍ଚାୟତ କଲେ ଚଳିଯିବ । ଆମେ କନ୍ଧଲୋକ, କଳି ତ ଲାଗେନାହିଁ । ଗାଁ ଗାଁ ଉପରେ ରାଜ୍ୟର ମୁଣ୍ଡାମାଝି ବୋଲି ଥୋଡ଼ାଏ ଲୋକଙ୍କୁ ବୃଥାରେ ପୋଷି ଲାଭ କ'ଣ ! ସେଥିପାଇଁ କାହିଁକି ପାଲୁ କି ଖଜଣା, ଆଉ କି ଗୋଠ ?" ଖାମ୍ବେସି ଗାଁର ମୁଣ୍ଡିଆଲ ଦାଉଡ଼ା ସାଓଁତାର ବହୁତ ପ୍ରତିପତ୍ତି, ଦଶ ପନ୍ଦର ଖଣ୍ଡି ଗାଁ ତାକୁ ମାନନ୍ତି । ପଚାଶ ବର୍ଷର ପୁରୁଖା ମଣିଷ, ହୃଷ୍ଟପୁଷ୍ଟ ମାଲୁଆ କନ୍ଧ, ଗାଁ ଲୋକଙ୍କ ପ୍ରତି ଅତି ବଦାନ୍ୟ, ନିଜେ ଧନୀ ନୁହେଁ କି ସ୍ୱାର୍ଥପର ନୁହେଁ, ଭାବଚନ୍ତି ଭଲବାଟ ବତାଏ ବୋଲି ଲୋକଙ୍କର ବିଶ୍ୱାସ ଅଛି । ତା ମତ ପଟେ ବି ବହୁତ ଲୋକ ।

କାଣୀବାବୁ ଗାଁ ମୁଣ୍ଡିଆଳ ବାହେଲା ମାଝିର ମତ ବି ଆହୁରି ଭିନେ—ଯେତେ ହେଲେ ରାଜ୍ୟଭାର ତୁଲେଇବାକୁ ରଜା ସିନା ସମର୍ଥ, ଆଉ କିଏ ? କାଳ କାଳ ସେମିତି ବିତିଥିଲା, ରଜା ଥିଲେ, ଲାଭ ସେମାନେ ଖାଉଥିଲେ, ଲୋକପାଣ ସେମାନେ ତୁଲେଉଥିଲେ । "ରାଜାଟିଏ ଖୋଜାଯାଉ ।" ରାଜଭକ୍ତ ବାହେଲା ଗଦ ଗଦ ହୋଇ କହେ, "ରଜାଠିଁ ଦେବତା କଳା ଥାଏ, ଆମଠିଁ ନାହିଁ ।" ଅଶୀବର୍ଷର ବୁଢ଼ା, ମୁଣ୍ଡ ଧୋଟ, ସେଥିପାଇଁ କେତେ ଲୋକ ତା' କଥାକୁ ବି ମାନନ୍ତି ।

କୁଡ଼ୁବେଲର ଡିଣ୍ଡୁଙ୍ଗାକା ଗୋଛର ଲମ୍ବ କନ୍ଧକୁ ବୟସ ବତିଶ ହେବ । ସେ ବି ଗାଁ ମୁଣ୍ଡିଆଳ । ବହୁତ ମଦୁଆ । ସବୁ ଜମିବାଡ଼ି ଡମ୍ବଙ୍କୁ ବନ୍ଧାଦେଇଛି । ସେ କହେ—ଆଗ କାମ ଆଗ । ଆଗ ଡମ୍ବମାନେ ଏ ରାଜ୍ୟ ଛାଡ଼ି ଚାଲିଯାନ୍ତୁ । ତା' ସଙ୍ଗେ ସଙ୍ଗେ ଏ ଆଠ ମୁଣ୍ଡାମାଝି ବି ଯାଆନ୍ତୁ । ସେଉଠୁ ଭୋଜଭାତ କରିବା, ପୂଜାରେ ଭାବିବା କ'ଣ କରିବା, ଯାହା ହେଲେ କରିବା ।

ନାନା ମୁନିଙ୍କର ନାନା ମତ ।

ମୁଣ୍ଡାମାଝିମାନେ ଶୁଣୁଥାନ୍ତି, ବଦଳୁ ନଥାନ୍ତି । କାନ୍‌କଟାର ଗୋଟିଏ ବୋଲି ଉପଦେଶ ସେମାନେ କାର୍ଯ୍ୟରେ ଲଗାଇଲେ ନାହିଁ । ଗାଁ ଚାଲି ବାହାରିଲେ ବି ନାହିଁ ।

ଖଜଣା କି ପାଲୁ କେହି ଦେଲେ ନାହିଁ ।

କ୍ରମେ କ୍ରମେ ଗାଁ ଦାଣ୍ଡରେ ବି ଲୋକେ କୁହାକୋହି ହେଲେ, "ମେଳି ହୋଇ ଯିବା, ମୁଣ୍ଡାମାଝିଙ୍କି କହିବା ତୁମେ ଆଉ ମୁଣ୍ଡାମାଝି ନୁହଁ ।"

ଉତ୍ତେଜନା ବଢ଼ି ବଢ଼ି ଉଠୁଛି, ଗୋଏ କିଛି ହେବ—କାନ୍‌କଟା ସବୁ ଖବର ପାଉଥାଏ, ନଜର ରଖିଥାଏ, ଦେଖୁଥାଏ, ସେ ଭାବେ ତା'ର କିଛି ଆଉ କରିବାକୁ ନାହିଁ । ଡମ୍ବମାନଙ୍କୁ ବହୁତ ଉପଦେଶ ସେ ଦେଇଥିଲା—"ଲଢ଼ୁଆ ଥାଟ ପାଇଁ ପାଲୁ ଅସୁଲ କର, ଲଢ଼ୁଆ ଥାଟକୁ ଟାଣୁଆ କର, ନିଜେ ଥାଟରେ ମିଶ, ମୁଣ୍ଡାମାଝିଙ୍କ ହାତ ଟାଣ କର, ସେମାନେ ବଳୁଆ ନଥିଲେ ଆମର କ୍ଷତି ।" ସମସ୍ତେ ହଁ ହଁ କଲେ, ସେ କାମରେ କେହି ହାତ ଦେଲେ ନାହିଁ ।

ଆଉ ସେ ନିଜେ ? ଯେତେବେଳେ ସେ ଭାବେ ମୁଣ୍ଡାମାଝିଙ୍କ ନିଷ୍କ୍ରିୟତା କଥା । ସେମାନେ ବି ତା' କଥାରେ ହଁ ହଁ କଲେ; କିନ୍ତୁ କେହି ବାହାରିଲେ ନାହିଁ

ଗାଁ ଗାଁ ବୁଲି ଲୋକଙ୍କ ସଙ୍ଗେ ଶରଧା ଲଗାଇବାକୁ, ଆଗେ ଯେମିତି ଥିଲେ ସେମିତି, ବସିଥିବେ, ଖାଉଥିବେ, ମଉଜ କରୁଥିବେ, ନିଜ ସ୍ୱାର୍ଥର କଥା ଖାଲି ଭାବୁଥିବେ, ରାଜ୍ୟ ତା' ମନକୁ ମନ ଚାଲୁଥିବ । ତାକୁ ଜଳଜଳ ଦିଶୁଥାଏ, ଏମାନଙ୍କ ଦିନକାଳ ସରିଆସିଲା ।

ନିଜକୁ ସେ ମନେ ମନେ ବାହାଦୁରି ଜଣାଏ, ଦୁଷ୍ଟାମି କରି ଏମାନେ ଡାକୁଙ୍କ ସଙ୍ଗେ ହଣାହଣି ଆରମ୍ଭ କରିଦେଇଥାଆନ୍ତେ, କନ୍ଧଦେଶରେ ଲାଗିଯାଇଥାନ୍ତା ହାଣକାଟ, ଏମାନେ ଯେ ନିଷ୍ଠିତ ଭାବେ ଜିତିଥାନ୍ତେ, ଏଭଳି ଭରସା ବି ଦିଶୁନଥିଲା, ସେ ଅଶୋଭନୀୟ ପରିସ୍ଥିତି ତା'ରି ପରାମର୍ଶ ଲାଗି ପଡ଼ିପାରିନାହିଁ । ଏଣିକି ସେଭଳି କରିବାକୁ ମୁଣ୍ଡାମାଝିମାନଙ୍କର ସାହସ ବି ନାହିଁ, ଲଢୁଆ ଥାଟ ଆତୁରି ପାତଳ ହୋଇଗଲେଣି, ଯେଉଁମାନେ ରହିଛନ୍ତି ସେମାନେ ବି ଯିବ ଯିବ ହେଲେଣି, ବିରୋଧୀ ଜନମତ ପ୍ରବଳ ହେଲାଣି ।

ଡାକୁଙ୍କ ମାଝି ଓ ଦାଉଡ଼ା ସାଓଁତାଙ୍କ ବୁଝାମଣା ପଡ଼ିଯାଇଛି, ସେ ଜାଣେ । ଗାଁ ଉପରେ ଆଉ କେହି ହୁକୁମ ଚଳାଇବା ଦରକାର ନାହିଁ—ଏ କଥା ଡାକୁଙ୍କ ମାନି-ନେବାକୁ ରାଜି । ଦାଉଡ଼ା ବି ରାଜି ଯେ ସବୁ ଗାଁକୁ ଏକାଠି ମେଳେଇବା ପାଇଁ, ବାହାରୁ ଶତ୍ରୁ ଆସିଲେ ତାଙ୍କ ଦାଉରୁ ରକ୍ଷା କରିବା ପାଇଁ ସବୁ ତରଫରୁ ମୁଣ୍ଡାମାଝି ମଣ୍ଡଳଟିଏ ଗଢ଼ା ହେଲା । ତହିଁଙ୍କ ବିଚାର ଏକା, ରଜା ଗଲା ପରେ ଯେଉଁ ସକଳ ବିଚାର କରି କନ୍ଧମାନେ ମୁଣ୍ଡାମାଝିମଣ୍ଡଳର ଶାସନ ଗଢ଼ିଥିଲେ ସେ ବିଚାରଠୁଁ ଏ ଭିନେ ନୁହେଁ । ବାହେଲା ଆଉ ବେଶି କହୁନାହିଁ, ଅରେ ରଜା ଗଲା ପରେ ପୁଣି ରଜାଟାଏ ଗାଦିରେ ବସିବ ଏଭଳି ଧାରଣାକୁ ଲୋକେ ହସରେ ଉଡ଼ାଇଲେ ।

ହୁଏତ ଅମଲ ବଦଳିଯିବ, ନୂଆ ଶାସକ ଆସିବେ, ସେତେବେଳେ ତା'ର କି ଅବସ୍ଥା ହେବ ? ତମ୍ଭମାନଙ୍କର କ'ଣ ଅବସ୍ଥା ହେବ ? ହୁଏତ ବାରିକ୍ କାମ ଯିବ, ନୂଆ ମୁଣ୍ଡାମାଝିମାନେ ନିଜ ବୁଦ୍ଧିରେ ଚଳିବେ । ହୁଏତ ବେପାର ଏଭଳି ରହିବ ନାହିଁ । କନ୍ଧମାନେ ଏତେ ଲାଭ ଦେବେ ନାହିଁ । କେତେବେଳେ ରାଜ୍ୟରୁ ତଡ଼ିଦେଇ ପାରନ୍ତି, "ପଳାଅ ତୁମେମାନେ, ଆମେ ଏ ଜିନିଷ ନେବୁନାହିଁ କି ଏତେ ଜିନିଷ ଦେବୁନାହିଁ, ଆମର ଆମେ ଯେମିତି ଥିଲୁ ସେମିତି ରହିବୁଁ ।"

କାନ୍‌କଟା ଦୁଃଖିତ ହୁଏନାହିଁ, ଯାହା ଆସୁ ସେ ସହିବାକୁ ରାଜି, ଖାଲି ମୁଣ୍ଡଟା ଥାଉ ।

ପୁଣି କ'ଣ ବାଟ ?

ଦୁଃଖ ପରିବର୍ତ୍ତେ ତା' ମନରେ ଆସେ ଏକପ୍ରକାର ଆବେଗ ଓ ଔତ୍ସୁକ୍ୟ, ପୁରୁଣା ଜୀବନ ମନେପଡ଼େ ।

ତମ୍ବମାନଙ୍କୁ ଡାକି ସେ ସଫା ସଫା ବୁଝେଇଦେଲା, "ଦେଖ, ଯେତେ କହିଲି ମୁଣ୍ଡାମାଝିଙ୍କି ତୁମେ ଦମ୍ଭ କରେଇବାକୁ କିଛି ବି କଲନାହିଁ । ସେମାନେ ନିଜେ ଦୁର୍ବଳ ହେଲେଣି, ଆଉ ତୁମ ପିଠିରେ ପଡ଼ିପାରିବେ ନାହିଁ । ଏଣିକି ଏ ଦେଶରେ ନିଗପଦରେ ଯଦି ରହିବାକୁ ମନ ଅଛି, ତେବେ ଲୋକଙ୍କୁ କନ୍ଦାଅ ନାହିଁ, ଲୋକେ ଯଦି ରାଗିବେ, ତୁମ୍ଭକୁ ରକ୍ଷା କରିବାକୁ କେହି ନାହିଁ । ଯେତିକି ଆଖିବୁଜା ଲାଭ କରିଛ ସେତିକି, ଆଉ ଏତେ ଶୋଷ ନାହିଁ । ଜମିବାଡ଼ି ବନ୍ଧା ରଖନାହିଁ, ଜିନିଷ ବିକି ଦଶଗୁଣ କୋଡ଼ିଏଗୁଣ ଦାମ୍ ନିଅ ନାହିଁ । ଲାଭ ଖାଅ, କିନ୍ତୁ କାନ୍ଧ ନଚଢ଼ୁ ।"

ସେମାନେ ବି ବୁଝିଥିଲେ—ସମସ୍ତ ଭଲ ନୁହେଁ, ସତର୍କ ନରହିଲେ ବିପଦ । ଯେଝା ବାଟେ ସେ । ତେଣୁ ସେମାନେ କାନ୍‌କଟା କଥାରେ ଆପତ୍ତି କରିନାହାନ୍ତି ।

ନୂଆ ପରିସ୍ଥିତିରେ ଏ ଦେଶକୁ ସେ ନୂଆକରି ଚିହ୍ନିଥିଲା । ନିଜ ଦେଶର ଶାସନର ଧାରଣା ନେଇ ସେ ଏ ଦେଶକୁ ଆସିଥିଲା, ଭାବିଥିଲା ଏଠି ବି ସେହିପରି ସୁଦୃଢ଼ ଶାସନ, ରଜା ନଥାଉ, ତା ବଦଳରେ ମୁଣ୍ଡାମାଝି ଆଠଜଣ । କିନ୍ତୁ ଏ ବିଚିତ୍ର ମଣିଷ ସବୁ ତେ ସେପରି ଭିନେ ଉପାଦାନରେ ଗଢ଼ା । ମାନିଥିବେ ନିଜ ଇଚ୍ଛାରେ—ପ୍ରୟୋଜନରେ, ସ୍ନେହରେ, ନିଜ ରୁଚିରେ, ନମାନିଲେ ମୁହୂର୍ତ୍ତିକେ ନାହିଁ,—'କି-ନାକି' (ଆମେ ପ୍ରଜା ନୋହୁଁ); ସେହି ତାଙ୍କର ସ୍ୱାଧୀନତା, ତେଣୁ ସେମାନେ 'କୁଇ' ଲୋକ ! ନିଜ ରୁଚିରେ ମାନୁ ମାନୁ ଅଭ୍ୟାସ ହୋଇଯାଇଥିଲା, ମାନିବା ହୋଇଥିଲା ସଂସ୍କାର, ଖଜଣା ଦେଉଥିଲେ, ପାଳୁ ଦେଉଥିଲେ, ଲଢ଼ିବାକୁ ଆଣ୍ଟ ଥିଲେ, ମୁଣ୍ଡାମାଝିଙ୍କୁ ଡରୁଥିଲେ । ତା'ପରେ ଯେତେବେଳେ ନମାନିଲେ, ଦଣ୍ଡିବାକୁ କିଛି ଉପାୟ ନାହିଁ, ବଳ ନାହିଁ । ଆପେ ଲଢ଼ୁଆ ଧାଂଡ଼ା ଘରକୁ ଫେରିଗଲେ, ମୁଣ୍ଡାମାଝିଙ୍କି ଡରିବା ସଂସ୍କାର ବି କୋହଲ ହୋଇଗଲା ।

ହେବ ତ ? କ'ଣ ସେମାନଙ୍କ ହାତରେ ଅଛି ଯାହା ଅନ୍ୟମାନଙ୍କଠିଁ ନାହିଁ ? ସମସ୍ତିଙ୍କଠିଁ ସେହି ହାତ ଗୋଡ଼, ଟାଙ୍ଗି, ଫାର୍ସା, ଧନୁ, ଖଣ୍ଡା, ବର୍ଚ୍ଛା, ଠେଙ୍ଗା, ଯାହାଠିଁ ନାହିଁ, ଗଢ଼ି ନେବାକୁ ଅବା କେତେବେଳ ? ସବୁ ଗାଁରେ ଗାଁ ମେଣ୍ଟ, ପୁଣି ଏକା ଗୋତର କନ୍ଧଙ୍କର ମେଣ୍ଟ, ସେ ଥାଉ ଯେଉଁ ଗାଁରେ, ବନ୍ଧୁ-ବାନ୍ଧବଙ୍କ ମେଣ୍ଟ, ଗୋଠର ଚଳଣି ମୂଳରୁ ଅଭ୍ୟାସ, କେହି ଗୋଟି ଗୋଟିକିଆ ନୁହେଁ, କେହି ନୁହେଁ ନିରାଶ୍ରୟ ।

ନିଜ ଅଧିକାର ଉପରେ ଆଉ କେହି ଆକ୍ରମଣ କଲେ ଏମାନେ ଝିଙ୍କ ଘର ଫୁଲଝଠି କଜିଆ କରିବାକୁ ଆସନ୍ତି; କିନ୍ତୁ କଳ ଭୁଟେ ପଞ୍ଚାଏତରେ । ଏମାନେ ଡରୁଆ ନୁହନ୍ତି । କିନ୍ତୁ ହାଣକାଟ ଖିନଖରାପ କରିବାକୁ ଏମାନଙ୍କର ପ୍ରବୃତ୍ତି ହୁଏ ନାହିଁ । ନିଷ୍ଠୁର ହୋଇପାରନ୍ତି ନାହିଁ । ନ୍ୟାୟଗତ କାରଣ ନଥିଲେ କାହା ଉପରେ

ଦାଉ ସାଧିବାକୁ ଏମାନେ ନିଜକୁ ତଡାଇ ପାରନ୍ତି ନାହିଁ । ଆଖିବୁଜି ପରିଚ ଆଦେଶ ମାନନ୍ତି ନାହିଁ, ଭାବୁଥାନ୍ତି—ଠିକ୍ କି ଭୁଲ୍ ? ଠିକ୍ କି ଭୁଲ୍ ?

ଉକ୍‌ଡ଼ୁକୁଟି ଡାକେ, ପରାମର୍ଶ ମାଗେ ।

“କେବେ ଆଉ ତାବୁକକୁ ଧରିବା ପାଟ୍-ବାରିକା ?”

“ତୁମେମାନେ ଠିକଣା କର ମୁଣ୍ଡାମାଝି, ତୁମର ରଇତ, ତୁମର ଭାଇ, ତୁମର ରାଜ୍ୟ, ମୁଁ ସିନା ତୁମ କୁକୁର ।”

“କେହି କଥା ମାନୁନାହାନ୍ତି । ଥାଟରେ ମିଶିପ ନାହାନ୍ତି, ଗୋଳମାଳ ଲାଗିଲେ ସମ୍ଭାଳି ପାରିବା ନାହିଁ । କ’ଣ କରିବା ?”

“ବଳ ନଥିଲେ ତୁନିହୋଇ ରହିବାକୁ ପଡ଼େ ମୁଣ୍ଡାମାଝି, ମୋ କଥା ତ କେହି ମାନିଲେ ନାହିଁ, ଥାଟକୁ ସଜାଡ଼ିଲି ନାହିଁ କି ଲୋକଙ୍କ ପାଖକୁ ଗଲି ନାହିଁ, ଏ ହେଲା ବଣରେ ନିଆଁ ଲଗିଲା ପରି, ମୋର ଆଉ କି ବୁଦ୍ଧି ?”

“ଆଚ୍ଛା, ତୁ ବି ଖବର ରଖିଥା, ଯାହା ହେଲେ କହିବ, ବରଗିବ ।”

“ହଉ ମାହାପ୍ରଭୁ ।”

କିନ୍ତୁ ସେ ଜାଣେ, ବରଗିବାକୁ କିଛି ନାହିଁ । ମାଗିଲେ କେହି ଖଜଣା ବି ଦିଅନ୍ତି ନାହିଁ । ଲୋକଙ୍କ ସଙ୍ଗେ ବନ୍ଧୁତା ରଖିଛି ବୋଲି ସେ ନିଜପାଇଁ କିଛି ମାଗିଯାଚି ଆଣେ, ଆଗପରି ‘ବେପାର’ ବି କିଛି କରେ, ସେହି ତା’ର ଆୟ ।

କିଛି ନଜାଣିଲା ପରି ମୁଣ୍ଡାମାଝିମାନେ ମଝିରେ ମଝିରେ ଗଦରଗୁଡ଼ରେ ମଣ୍ଡଳସଭା କରନ୍ତି, ବାରିକ୍‌ମାନେ ଉପସ୍ଥିତ ହୁଅନ୍ତି, ସେ ବି ଖାଲି ଅଭ୍ୟାସ । ସମସ୍ତେ ଜାଣନ୍ତି, କିଛି ଗୋଟାଏ ପରିବର୍ତ୍ତନ ହେବ । ତାବୁକ ଓ ଦାଉଡ଼ା ଗାଁକୁ ଗାଁ ଲୋକ ପଠାଇଲେଣି । ମଣ୍ଡଳ ସଭାରେ ମୁଣ୍ଡାମାଝିମାନେ ଗର୍ଜନ ତର୍ଜନ କରନ୍ତି, କିଛି କରିବାକୁ ଆଦେଶ ଦିଅନ୍ତି ନାହିଁ ।

ଏକୁଟିଆ ତମ୍ବୁମାନେ ନିଜ ଭିତରେ କଥାଭାଷା ହୁଅନ୍ତି । ସେମାନଙ୍କର ଭାବିବା କଥା ଯୋଡ଼ିଏ—ଏ ଦେଶରେ ରହିବା ଆଉ ନିରାପଦ କି ନୁହେଁ ? ରହିଲେ ବେପାର ଚାଲିବ କି ନାହିଁ ? ଅଳ୍ପ କେତେଜଣ ,ଯାହାଙ୍କର ନିଜ ଗାଁରେ ଡେର ଅଛି, ଖାଲି ଲାଭ ପାଇଁ ଆସିଥିଲେ, ସେମାନେ ଲେଉଟିଗଲେଣି, ସେଠି ଅପେକ୍ଷା କରିବେ, ପଛେ ସୁବିଧା ଦେଖି ଆସିବେ । କେତେ ଲୋକ, ଯାହାଙ୍କର ନିଜ ଗାଁରେ ବର୍ଣ୍ଣାପୀ ବନ୍ଧୁ କୁଟୁମ୍ବ ଅଛନ୍ତି, ସେମାନେ ନିଜର ସୁନା ଆଦି ସହିତ ପିଲାପିଲି ସେଠିକୁ ପଠାଇ

ହେଲେଣି । କିନ୍ତୁ ବେଶି ଝଗଡ଼ା ଡମ୍ବ ଆଗପରି ଅଛନ୍ତି । କାନ୍‌କଣ୍ଟା ପରି ସେମାନେ ବି କହନ୍ତି, "କପାଳରେ ଥିଲେ ବିପଦ ଯେଉଁଠି ହେଲେ ପଡ଼ିବ, ଏଠି କ'ଣ, ସେଠି କ'ଣ ? ସେ ଦେଶରେ ଆମପାଇଁ କିଛି ନଥିଲା, ଏଠି ଅଛି ଜାଉଣା, ମଲେ ହେଲେ ଏଇଠି ମରିବା ଭଲ । ଆମେ ତ କାହାରି ଝିଅବୋହୂ ନୋହୁଁ ବେପାରୀ ଲୋକ, ସମସ୍ତେ ଆମର, ଆମକୁ କାହିଁକି କିଏ ହରବର କରିବ ?"

ଡମ୍ବ ବାଜା ବାଜେ, କନ୍ଧ-କନ୍ଧୁଣୀ ନାଚନ୍ତି ।

ତା'ପରେ ପରିକ୍ଷା ପର୍ବ ଆସିଗଲା ସେଦିନ, ଦଶହରା ପୂଜା ସରିଥାଏ । ଆକାଶ ସଫା । ଜଙ୍ଗଲ ଶାନ୍ତ ଓ ପୂର୍ଣ୍ଣ । କ୍ଷେତରେ ଫସଲ ଭର୍ତ୍ତି । ଉକାଉକି ହୋଇ କନ୍ଧରାଜ୍ୟର ସବୁ ଗାଁରୁ ଗାଁ ମୁଣ୍ଡିଆଳ ଓ ଦଳଦଳ ଲୋକ ଗଦରଗୁଡ଼ ପାଖ ଘୋଡ଼ା ହାତୀପଥର ପାଖକୁ ଗଲେ । ସେମାନେ ବର୍ଚ୍ଛା, ଧନୁ, ଖଣ୍ଡା ଧରିଥାନ୍ତି, ଟାଙ୍ଗିଆ ଧରିଥାନ୍ତି, ପ୍ରସ୍ତୁତ ହୋଇ ଆସିଥାନ୍ତି ଗୋଳମାଳ ଲାଗିଲେ ଲଢ଼ିବେ । ସଙ୍ଗରେ ଥା'ନ୍ତି ଡାବୁକ, ଦାହଡ଼ା, ଲହ, ଆହୁରି ଲୋକ । ଆଠଜଣ ମୁଣ୍ଡାମାଝି ଭିତରୁ ଜଣେ ହେଲେ ସେଠି ନଥିଲେ, ତାଙ୍କ ଗାଁ ଲୋକେ ବି ଯାଇନଥିଲେ । କିନ୍ତୁ ବାରିକ୍‌ମାନେ ଥିଲେ, ଆହୁରି କେତେଜଣ ଡମ୍ବ ବି ଯାଇଥିଲେ, ସେମାନେ ଗୋଟିଏ ଦଳ ହୋଇ କଣକଥା ହୋଇ ଅପେକ୍ଷା କରିଥାନ୍ତି ।

"କୁଆଡ଼େ ଆସିଲୁ ବାରିକ ?" ଥଟ୍ଟା କରି ଡାବୁକ ପଚାରିଲା, "ଡର ମାଡ଼ୁନାହିଁ ?"

"କି ଡର ମାହାପ୍ରଭୁ", କାନ୍‌କଣ୍ଟା କହିଲା, "ତୁମେ ବାଘ କି ଭାଲୁ ଯେ ଡରିବୁଁ ? ତୁମ ଦେଶରେ ମାଗିଖାଇ ଆସିଛୁଁ, ବୋଲହାକ କରୁଁ, ବେପାର କରୁଁ, ଯାହାର ମନ ହେଲେ କିଣେ, ମନ ନହେଲେ ନାହିଁ । ଗଣ୍ଡେ ପୋଷେ ମିଳିଲେ ତ ଖାଉଁ, ତୁମେ ଯାଚିକରି ଦେଲେ ନଉଁ, ନ ମିଳିଲେ ଉପାସ୍ ।"

ବଡ଼ପାଟିରେ କହିଲା । କନ୍ଧମାନେ କହିଲେ, "ସତ, ସତ ।" ଆସିବା ଆଗରୁ ଡମ୍ବମାନେ ପରାମର୍ଶ କରିଥିଲେ । କାନ୍‌କଣ୍ଟା ବୁଝେଇଥିଲା, "ବର୍ଷା ଯୁଆଡ଼େ, ଛତା ସେଆଡ଼େ । ଓଲଟା ବାଟେ ଡେରିଲେ ପାଣି ପଡ଼ିବ, ପବନ ଉଡ଼େଇନେବ । ଆମେ ଲୁଚିବା ନାହିଁ, ବୁଲିଗଲା ପରି ଦେଖିଗଲା ପରି ଯିବା, କିଛି ଅଗଗ୍ର ଭଲ ମନ୍ଦ ବୋଲି ତୁଣ୍ଡ ଫିଟେଇବା ନାହିଁ । ଶୁଣୁଥିବା । ଲୁଚିବା କି ଦୋଷରୁ ? ଲୁଚି ବୁଲିବା କୋଉଠି ? ସବୁଆଡ଼େ ତ ତାଙ୍କ ରାଜ୍ୟ ।"

ଗଦାଗଡ଼ ଓ ଆଖପାଖ ଗାଁ ଲୋକ ବି ଉଠିଆସିଥିଲେ । କଥାଭାଷା ପଡ଼ିଲା, ବହୁତ ବେଳ । ଆଗ ପଡ଼ିଗଲା ମୁଣ୍ଡାମାଝିମାନଙ୍କ ବିରୁଦ୍ଧରେ । ସେମାନେ କାହାରି କିଛି କାମରେ ଆସୁନାହାନ୍ତି, ନିକମା, ଅପଦାର୍ଥ, ସ୍ୱାର୍ଥପର, ଶୋଷକ ଖାଲି ମୁଣ୍ଡାମାଝି ହୋଇଛନ୍ତି ବୋଲି ସେହି ନାଁରେ ପ୍ରତାପ ଦେଖାଉଛନ୍ତି । ସବୁ ଗାଁ ଲୋକ ରାୟ ଦେଲେ, ସେମାନେ ଆଉ ଦଣ୍ଡେ ମୁଣ୍ଡାମାଝି ନରହନ୍ତୁ । କେହି ତାଙ୍କୁ ମୁଣ୍ଡାମାଝି ବୋଲି ନମାନୁ ସେମାନେ ଜୁଲୁମ୍ କଲେ ଲୋକେ ଶାସ୍ତି ଦେବେ, ପଞ୍ଚାଏତ୍ ବସିବ, ତାଙ୍କୁ ଦଣ୍ଡ ଦେବ ।

ତା'ପରେ ପଡ଼ିଗଲା, ଏଣିକି ଚଲାଚଳ ବିଷୟରେ କଥା । ଗାଁ ଗାଁକେ ଲୋକେ ଗୁଁଳୁ ଗୁଁ ଚଳୁଛନ୍ତି, ଚଳିବେ । ଗାଁ ପଞ୍ଚାଏତ୍ ସବୁ କଥାକୁ ଦାୟୀ । ଯେଉଁଠି ଦୁଇ ଗାଁ ଭିତରେ କଳି ଉପୁଜିବ, ପାଖର ଆଉ ତିନିଖଣ୍ଡ ଗାଁ ଲୋକଙ୍କ ପଞ୍ଚାଏତ୍‌କୁ ଏକାଠି କରି ବଡ଼ ପଞ୍ଚାଏତ୍‌ଟାଏ ବସିବ, ସେହି ତୁଟେଇଦେବ । ସବୁ ଗାଁକୁ ଭେଳେଇ ରଖିବା ପାଇଁ ମୁଣ୍ଡାମଝି ଆଠଜଣ ବଛାଯିବେ, ସମ୍ମାନ ପାଇବେ । ସେମାନେ ଦେଖୁଥିବେ କେଉଁ ଗାଁରେ କିଛି ଅଭାବ ଅସୁବିଧା ପଡ଼ିଲେ ଅନ୍ୟ କେଉଁ ଗାଁରେ କିହି ସେ ଅଡ଼ୁଆ ସଜାଡ଼ି ହେବ । ଯେତେ ବିଷୟ ରାଜ୍ୟଯାକ ଲୋକଙ୍କ କାମ ତାକୁ ବି ବୁଝିବେ; କିନ୍ତୁ ଖାଲି ନିଜ ମଣ୍ଡଳି ମତ ଅନୁସାରେ ନୁହେଁ, ଗାଁ ପଞ୍ଚାଏତ୍‌ମାନଙ୍କ ପରାମର୍ଶ ଅନୁସାରେ । ନିଜକୁ ରଜା ବୋଲି ଭାବିବେ ନାହିଁ, ରଇତ ବୋଲି ଭାବିବେ, କାମ ନକରିପାରିଲେ ନିଜ ମନକୁ ସେମାନେ ଛାଡ଼ିଦେବେ, ନହେଲେ ପୁଣି ଗାଁ ପଞ୍ଚାଏତ୍‌ମାନେ ସଭାକରି ତାଙ୍କୁ ବି ତଡ଼ିବେ । ସବୁବେଳେ ଲଢ଼ୁଆ ଥାଟ ସଜେଇ ରଖିବା ଆଉ ଦରକାର ନାହିଁ, ଦରକାର ପଡ଼ିଲେ ଗାଁ ଗାଁକେ ସମସ୍ତେ ଲଢ଼ିବାକୁ ଠିଆହୋଇପଡ଼ିବେ ।

ଡମ୍ବମାନଙ୍କ କଥା ବି ପଡ଼ିଗଲା । କେତେ ଲୋକ କହିଲେ, ସେମାନେ ଆସିଲାଦିନୁଁ ଏ ଦେଶରେ ଅକାଳ ପଡ଼ିଗଲା । ଲୋହ କନ୍ଧ କହିଲା, "ସେମାନେ ଏ ରାଜ୍ୟରୁ ଚାଲିଯାଆନ୍ତୁ ।" କେତେ ଲୋକ କହିଲେ, "ଜିନିଷ ଦେଉଛନ୍ତି, ତା ବଦଳରେ ବହୁତ ନେଇଯାଉଛନ୍ତି ।" ଦୁରୁଦୁରୁ ଛାତି, ଆଖି ଜୁଳୁଜୁଳୁ କରି ଡମ୍ବମାନେ ଅପେକ୍ଷା କରି ରହିଲେ, ସଭା ଆଗରେ କାନ୍‌କଟା । "ଧଏଧର", ସେମାନଙ୍କୁ ସେ ବୁଝେଇଥାଏ, "ଦରକାର ପଡ଼ିଲେ ଶେଷରେ ମୁଁ କହିବି ।"

ଲୋହ କନ୍ଧର କଥା ସମର୍ଥନ ପାଇଲା ନାହିଁ । ଆପେ କନ୍ଧମାନେ ବୁଦ୍ଧାକୋନ୍ଧ ହେଲେ—ଡମ୍ବ ହେଲେ ବୋଲି କି ଦୋଷ ? ଆମରି ପରି ମଣିଷ ତ ? କାହାକୁ ମାରିଲେ ନା ଧରିଲେ ? କାହାର କି ଅନିଷ୍ଟ କଲେ ଯେ ଏଡ଼େ କୋପ ? ମାଗି ଖାଇଲେ, କାମ କରି ଖାଇଲେ, ଆମକୁ ନୂଆ ଜିନିଷ ଦେଲେ, ତା ବଦଳରେ ଜିନିଷ

ନେଲେ । ସେ ଯେତେ ଚାହୁଁଛନ୍ତି ଆମର ମନ ନହେଲେ ଆମେ ସେତେ ଦେବାକୁ ରାଜି ହେବାନାହିଁ କି ସେ ଜିନିଷ କିଣିବା ନାହିଁ । କିଏ ମଦ ନପିଉଛି ? କିଏ ତମ୍ଭଠୁ ନୂଆ ଜିନିଷ ନ କିଣୁଛି ? ମନ ନାହିଁ, ନକିଣ, ତାଙ୍କୁ ଚିଡ଼ିବ କାହିଁକି ? ସେମାନେ ବାଇଦ ବଜାନ୍ତି, ଆମେ ନାଚୁଁ, ସେମାନେ କୋଉ ଗାରେ ବାରିକ୍, ଡକାହକା କରନ୍ତି, ବୋଲହାକ କରନ୍ତି, କେଉଁଠି ଗାଈଜଗୁଆଳ, କେଉଁଠି ଗାଆଁ ଝାଟିଆ, ଜମି କ'ଣ ଅଭାବ ? ରହିଛନ୍ତି, ରହିଥାନ୍ତୁ ଆମ ସଙ୍ଗେ ଭାଇ ଭାଇ ପରି । ଡାବୁକ, ଦାଉଡ଼ା, ଅନ୍ୟ କେତେଜଣ ଗା ମୁଣ୍ଡିଆଳ ଏହିପରି କହିଦେବା ପରେ ସେ ବିଷୟରେ ଆଲୋଚନା ବନ୍ଦ ହେଲା ।

ତା'ପରେ ଆସିଲା ନୂଆ ମୁଣ୍ଡାମାଝି ବାଛିବା ବେଳ । କେତେ ଲୋକ କହିଲେ ପୁରୁଣା ମୁଣ୍ଡାମାଝିମାନେ ତ ଆସିନାହାନ୍ତି, ତାଙ୍କ ଗା ଲୋକ ବି ଆସିନାହାନ୍ତି । କଥା ଉଠିଲା—ସବୁ ଗାଁକୁ ଖବର ଯାଇଥିଲା, ଯେ ନଆସିଲେ ନାହିଁ, ରାଜ୍ୟସାକର ଗା ପଞ୍ଚାଏତଙ୍କ ନିଷ୍ପତ୍ତିକୁ ସେମାନେ ମାନିବାକୁ ବାଧ୍ୟ । ସେଥିପାଇଁ କାମ ଅଟକିବ ନାହିଁ ।

ଆଗ ସମସ୍ତିଙ୍କ ଜିଭ ଅଗରେ ଥିଲା ଡାବୁକର ନାଁ, ଡାବୁକ ଓଟରା ହେଲା । ଆହୁରି ବଡ଼ ହେଲା, ଦାଉଡ଼ା । ବଡ଼ହେଲେ ପୁଡ଼ୁଙ୍ଗା, ସିପୁଙ୍ଗା, ରାଓସାଙ୍ଗା, ଗାହି, ବୁଚି, ଲୁହୁ । ତିରିଶ ପଇଁତିରିଶ ବର୍ଷ ଭିତରେ ଗାଁ ମୁଣ୍ଡିଆଳ ଗୁଡ଼ିଏ । ଦାଉଡ଼ା ସବୁଠୁ ବୟସ୍କ ।

ଏଥର ସଭାରେ ନୂଆହୋଇ ଗୋଟିଏ ନିଷ୍ପତ୍ତି ହେଲା—ଆଠଜଣ ମୁଣ୍ଡାମାଝି ରହିଲେ ସତ; କିନ୍ତୁ ତାଙ୍କ ଭିତରେ ବି ଜଣେ ମୁଖିଆ ରହିବା ଦରକାର, ପୁଣି ତା' ସାଙ୍ଗକୁ ଆଉ ଜଣେ । ମୁଖିଆ ହେବ ପାଟମୁଣ୍ଡାମାଝି, ଆରକ ହେବ ବଣି ମୁଣ୍ଡାମାଝି । ଅଡ଼ୁଆ ନାହିଁ, ଡାବୁକ ପାଟମୁଣ୍ଡାମାଝି ହେବ, ତା' ସାଙ୍ଗରେ ଦାଉଡ଼ା ହେବ ବଣି ମୁଣ୍ଡାମାଝି । ସେମାନେ ସମସ୍ତେ ଶପଥ ନେଲେ—ଅବିକଳ ଆଗର ମୁଣ୍ଡାମାଝିଙ୍କ ପରି, ଉପରେ ଧର୍ମ, ତଳେ ବସୁମତୀ, ସେମାନେ ନିଷ୍ଠା ସହକାରେ ଦାୟିତ୍ୱ ତୁଲେଇବେ ।

ଆଗପରି ଗଦରଗୁଡ଼ାହିଁ ହେବ ମଣ୍ଡଳ ସଭାର ବୈଠକ ବସିବା ସ୍ଥାନ; କିନ୍ତୁ ମୁଣ୍ଡାମାଝିମାନେ ମନକଲେ ଯେଉଁଠି ଇଚ୍ଛା ସେଠି ସଭା କରିବେ ।

ଆଗପରି ମୁଣ୍ଡାମାଝିମାନଙ୍କ ପାଖେ ବାରିକ୍ ରହିବେ କି ନାହିଁ ? ତମ୍ଭମାନଙ୍କୁ ଓକିସ ପଡ଼ିଲା । କାନ୍‌କଟାକୁ ଡାବୁକ ପଚାରିଲା, "କ'ଣ କହୁଚୁ କହ ।"

କାନ୍‌କଟାକୁ ସବୁଠୁ କଷ୍ଟ, ସବୁଠୁ ଅଖାଡ଼ୁଆ ଲାଗିଲା ଏ ପ୍ରଶ୍ନର ଉତ୍ତର । ସମସ୍ତିଙ୍କ ଆଖି ତା' ଉପରେ । କାନ୍‌କଟା ଅଙ୍ଗେଇ ଅଙ୍ଗେଇ ନହୋଇ କହିଲା—

"ଯାହାର ଖାଇବୁଁ ତା'ର ସେବା କରିବୁଁ । ଏପର୍ଯ୍ୟନ୍ତ ଆଗର ଖାଉନ୍ଦ ଥିଲେ, ତାଙ୍କର ଲୁଣ ଖାଇଥିଲୁଁ, ତାଙ୍କ ପାଖେ ବାରକ୍ କାମ କରୁଥିଲୁଁ । ଆଜ ତୁମେ ତାଙ୍କୁ ତଡ଼ିଦେଲ, ସେମାନେ ଜାଣିନାହାନ୍ତି, ଜାଣିବେ । ଆମେ ତାଙ୍କଠୁଁ ଗୋପରପର ପଳେଇଆସିବୁଁ ନାହିଁ, ସବୁ କଥା କହି ପୋଛି ବୁଝେଇ ବଡେଇ ଭଲରେ ଭଲରେ ଆସିବୁଁ । ଆସିବୁଁ ନଷ୍ଟେ, ସେଇଟା ତ ଆମ ବେଉସା, ନହେଲେ ଜିଇଁବୁ କେମିତ ? କଏ କଏ ବାରକ୍ ରହିବୁଁ ଆମେ ଭାବି ଠିକ୍ କରି ତୁମ ପାଖକୁ ଆସିବୁଁ । ଥରେ ରହିବୁଁ କହିଦେଲେ ଆମର ଆଉ ଭନେ କଥା ନାହିଁ । ବାରକ୍ ତ ମୁଣ୍ଡାମାଝି-ମାନେ ରଖିବେ, ଆମେ କହିଲେ ତୁମେ କହିବ ନାହିଁ ?"

"ତୁମେ ପୁରୁଣା ବାରକ୍‌ମାନେ ଆମର୍ ବାରକ୍ ହେଲେ ଆମ୍ଭକୁ ମାନି ଚଳି-ପାରିବ ନା ପୁରୁଣା ମୁଣ୍ଡାମାଝିଙ୍କ ସଙ୍ଗେ ମିଶି ଦୁଷ୍ଟାମି କରିବ ?"

"କି ଦୁଷ୍ଟାମି ମାହାପ୍ରୁ ! ଆମେ ଯାହାର ବାରକ୍ ହେବୁଁ ତାର ପୋଷା କୁକୁର୍ ହେବୁଁ । ସେ ଯେଉଁ କାମ ବରଗିବ ସେହି କାମ କରିବୁଁ । ମୁଁ ଆମ ଲୋକଙ୍କୁ ଡାକେଁ, କଥା ହୁଏଁ, ପଛରେ, ମୁଁ ଆସିବି ଜଣାକରିବି । ହେଲେ, ତୁମେ ସମସ୍ତେ ଅଛ, ଆଗ ଆମର ପଦେ ଗୁହାରି ଅଛି ମାହାପ୍ରୁ ।"

"କହ ।"

"ଗାଁ ଗାଁକେ ଆମ ଲୋକ ରହିଛନ୍ତି । କାହାର ଟିକଏ ଟିକଏ ଜମିବାଡ଼ି ଅଛି, କାହାର ନାହିଁ । ଯେ ଚାଷ କରିବ ତାକୁ ଜମିବାଡ଼ି ଦିଅ, ତୁମର ରଇତଙ୍କୁ ଯେମିତ ଦେଖୁଛ ତାକୁ ସେମିତ ଦେଖ, ପର ଭାବ ନାହିଁ ।"

"ରାଜି ।"

"ଆମେ ବେପାର କରୁଛୁଁ, ଯାହାର ମନ ହେବ ସେ କିଣିବ, ଯାହାର ମନ ନାହିଁ ସେ ନ କିଣୁଁ, ଆମ ବେପାର ବନ୍ଦ କରନାହିଁ ।"

"ରାଜି । ତୁମର କିଛି ଭୟ ନାହିଁ ।"

"ଗୁଡ଼୍‌ଗୁଡ଼ରେ କନ୍ଧ ଗାଁ ପାଖେ ଆମେ କେତେ ଘର ବସ୍ତି କରିଛୁଁ । ଆମେ ଆଉ ଗୋଟାଏ ଅଲଗା ଜାଗା ବାଛିଛୁଁ, ଖାଲି ପଡ଼ିଛି ଜାଗାଟା, ଜୁବାଖାଲ୍, ପାଟରେ ବଣ ଅଛି, ପଦା ଅଛି, ଆମ୍ଭକୁ ସେ ଜାଗାଟା ଦିଅ, ଗୋଟାଏ ଡମ୍ବ-ଗାଁ ବସେଇବୁଁ । ପାଖ ପାଖ ହୋଇ ଜାତି ଭାଇ ବନ୍ଧୁ ସମୁଦୀ ହୋଇ କେତେ ଘର ହେଲେ ରହିଯିବୁଁ ।"

ଜୁବାଖାଲ୍ ଘପ୍‌ଟାବାଲ୍ ଇଲକା ଭିତରେ । ଡାକ୍ତର ରାଜହେଲା ।

ସଞ୍ଜ ନହେଉଣୁ ସବୁ ସାରିଗଲା । କାନ୍‌କଟା ଓ ଡମ୍ବମାନେ ବି ଲେଉଟିଗଲେ ।

ତହିଁ ଆରଦିନ ଗୁଡ୍‌ଡ଼ୁଡ଼ି ଗାଁରେ ଡମ୍ବମାନେ କନ୍ଧମାନଙ୍କୁ ସବୁକଥା କହିଲେ । କନ୍ଧମାନେ ତୁନିହୋଇ ଶୁଣିଲେ ।

କାନ୍‌କଟାଠୁଁ ଉକ୍‌ଡ଼ୁକୁଟି ସବୁ ଶୁଣିଲା, ରାଗରେ ଗର୍ଜିଲା, କାନ୍‌କଟା ତାକୁ ବହୁତ ବୁଝେଇଲା ।

"ଶୁଣ୍, ଅଣ୍ଡା ହ' ମାଝି । ମା' ପେଟରୁ କେହି ମୁଣ୍ଡାମାଝି ହୋଇ ଜନ୍ମ ହୁଏ ନାହିଁ, ତୁ ବି ହେଇନଥିଲୁ । ଏଇ ଲୋକ ତତେ ମୁଣ୍ଡାମାଝି କରିଥିଲେ, ଏଇ ଲୋକେ ପୁଣି ଏକାଠି ହେଲେ, ସେ ଗାଦିରୁ ଖସେଇପକାଇଲେ, ତୁ ଜଣେ ଲୋକକୁ ସେମାନେ ଶହ ଶହ, ହଜାର ହଜାର, କାହା ଉପରେ ରାଗିବୁ ? ତୁ ଜଣକୁ ମାରିବୁ, ତେବେ ଦଶଜଣ ଏକାଠି ହୋଇ ତତେ ମାରିପକାଇବେ ।"

"ମୂଳରୁ ପାଟି ବନ୍ଦକରିଥିଲେ କାମ ତୁଟିଥାନ୍ତା ।"

"କାହା ପାଟି ତୁ କେମିତି ବନ୍ଦ କରନ୍ତୁ ? ମାରିଥାନ୍ତୁ, କଇଦୀ କରି ରଖିଥାନ୍ତୁ, ଡରେଇ ହରେଇ ରଖିଥାନ୍ତୁ । ସେଥିପାଇଁ ବଳ ତ ନଥିଲା, ପାରିନଥାନ୍ତୁ । ବଳ ଥା'ନ୍ତା, ଯଦିବା କରିଥାନ୍ତୁ, କେତେ ମାସ ? କେତେ ବର୍ଷ ? କେତେ ଯୁଗ ? ମଣିଷ ପରା, କାଠ ପଥର ନୁହେଁ, ଜନ୍ତୁ ନୁହେଁ, ତାକୁ ବାନ୍ଧି ଡରେଇ ରଖି କାଳକାଳକୁ ଅକ୍ତିଆର କରିହେବନାହିଁ, ତା' ମନକୁ ଅକ୍ତିଆର କରିବାକୁ ଯାହା ଦରକାର ତା' ତୁମମାନଙ୍କୁ କହିଥିଲି, ମୋ କଥା ମାନିଲ ନାହିଁ । ବଣର ନିଆଁ ବ୍ୟାପିଗଲା ।"

ଉକ୍‌ଡ଼ୁକୁଟି ଦବିଗଲା, କହିଲା, "ବୁଦ୍ଧି ଦେ, କ'ଣ କରିବା ପାଠ୍ ବାରିକା ?"

"ତୁ ଆଉ ମୁଣ୍ଡାମାଝି ନାହୁଁ କି ମୁଁ ଆଉ ପାଟ-ବାରିକା ନାହିଁ । ତୋ ହିତ-କଥା କହିଆସିଛୁ, ସେହି ହିତ କଥା କହିବି । ଆଉ ମୁହଁ ଶୁଖାନା । ଯେ ପଚ୍ଚରିଲେ କହି—"ଭଲ ହେଲା, ଆମ ମୁଣ୍ଡରୁ ବୋଝ ଗଲା, ଜଞ୍ଜାଳ ଗଲା, ନିଜ କାମ ବୁଝିବାକୁ ବେଲ ମିଳିବ ।" ତୋ ଗାଁ ଲୋକଙ୍କୁ ହାତରେ ରଖିଥା, ସେତେଦିନଯାକେ ତୁ ଗାଁ ମୁଣ୍ଡିଆଲ । ଗାଁ ମୁଣ୍ଡିଆଲ ହୋଇ ମଣ୍ଡଳସଭାକୁ ଯିବୁ, ସେଠି କହିବୁ, ଯେ ପଚ୍ଚରିଲେ କହିବୁ—'ଆମର ରାଜ୍ୟଯାକର ଭାଇ ଯାହାଙ୍କୁ ନୂଆ ମୁଣ୍ଡାମାଝି ବାଛିଲେ

ଆମର ବି ସେଥିରେ ଖୁସି, କିଛି ଅମତ ନାହିଁ ।' ଯଦି ଲୋକଙ୍କ ଉପକାର କରିବାକୁ ମନ ହେଉଛି, ତେବେ ଯାହା ତୋ ଦ୍ୱାରା ହୋଇପାରିବ କରିଯା, ଲୋକେ ଭଲ ପାଇବେ ।''

''ଏବେ ବି କ'ଣ କେହି ଆମର ନାହିଁ ପାଟ୍-ବାଡ଼ିକା ? ଆଟପଡ଼ି ଦଳପତି-ମାନଙ୍କୁ କହିବା, ଆଟର ଲୋକଙ୍କୁ ବୁଝେଇବା, ଦୁଇଶହ ଲୋକ ଦଳହୋଇ ଗୋଷ୍ଠ ହୋଇଉଠିଲେ ମେଳିଆ ଡରିଯିବେ, ତୁ କହୁଚୁ କ'ଣରେ ? ସେଉଠୁ ବାଟ ଚାଲିଲେ ଆହୁରି ଶହ ଶହ ଆସିଯିବେ, ଦେଖିବୁ ।''

କାନ୍‌କଟା କହିଲା, ''ଖାଲି ଦେଖ୍ ମୁଣ୍ଡାମାଝି । ମୋ ଜାଣିବାରେ କେହି ଆସିବେ ନାହିଁ ।''

''ଇଚ୍ଛାରେ ଆସିବେ ନାହିଁ ସିନା, ଉଦ୍ୟୋଗ କଲେ ଆସିବେ ନାହିଁ ? ତୁମେମାନେ ଆସିବ ନାହିଁ ?''

''ଏ ପର୍ଯ୍ୟନ୍ତ ତୁମ ଜୀବନକୁ ବିପଦ ପଡ଼ିନାହିଁ, ତୁମେ ତୁନି ହୋଇ ରହିଲେ ପଡ଼ିବ ବି ନାହିଁ । ବହୁତ ସମ୍ପତ୍ତି ଅଛି, ତହିଁରୁ ବି ଯଦି କିଛି ଛଡ଼େଇନେବେ, ତଥାପି ତମ୍ଭି ଖାଇବାକୁ ବହୁତ, ଛଡ଼େଇବା କଥା ବି କହୁନାହାନ୍ତି । ତୁମେ ଗୋଳମାଳ ଲଗେଇଲେ ତୁମେ କେତେ ଲୋକଙ୍କୁ ମାରିହାଣି ପାର, ସମସ୍ତେ ମିଶି ଆସିବେ, ତମମାନଙ୍କୁ ହାଣି ଚିକି ଚିକି କରିଦେବେ, ପୁଣି ନିନ୍ଦା ରହିଯିବ କାଳ କାଳକୁ ।''

''ସବୁ ତ ଚାଲିଗଲା, ଆଉ କି ଡର ?''

"ଡର ଅଧର୍ମକୁ, ତୁମେ ପୁଣି କନ୍ଧ । ରାଜ୍ୟଟା ରଇତଙ୍କର ନା ତମର ?''

''ଆରେ ତୋର ସବୁଦିନେ ଡରୁଆ କଥା । ଶୁଣ୍, ଯାହା ପଡ଼ିବ ଦେବ, ଗୋଟି ଗୋଟି ଲୋକ ଠିକଣା କର । ଗୋଟିଆ କାମ ହେବ । ସେ ଡାବୁକ, ସେ ଦାଉଡ଼ା, ସେ ଯେତେ ଯେତେ ମୁଣ୍ଡାମାଝି ବୋଲି ଠିଆହୋଇଛନ୍ତି, ଯେତେ ତାଙ୍କ ପଛରେ ଅଛନ୍ତି, ସମସ୍ତିଙ୍କୁ ବାନ୍ଧି ଟେକି ନେଇଆସିବେ । ସକାଳ ପାହିଲା ବେଳକୁ ମାରଣା ଧାଂଡ଼ା ଖଣ୍ଡା ଉଞ୍ଚେଇ ଚାଲିବେ, ଯେ ପାନ୍ଚିକଲା ବାନ୍ଧିବେ । ତାଙ୍କ ସଙ୍ଗରେ ଆହୁରି ଲୋକ ମିଶିବେ । ମୁଁ କହୁଚି, ବାହାରିପଡ଼ ।''

''ଇଚ୍ଛା କଥା ମୁଣ୍ଡାମାଝି, ଆଉ ସେମିତି ନହୁଏ । ତମର ଲୋକ ଚଳଦେଶିଆ ନୁହଁନ୍ତି ଯେ ଡରିଯିବେ, ସମସ୍ତେ ମାଳୁଆ କନ୍ଧଟି ! ନିଗ୍ରୁଥିବାଯାକେ କେତେ ଶାନ୍ତ ପୁଧାର, ଛେଳି ମେଣ୍ଢା ପରି, ଗ୍ରଚ୍ଚିଗଲେ ନିଆଁ ବାଣ, ବେକ କଟିଯାଉପଛେ, ମାଡ଼ିଆସିବେ । କି ଡର ଦେଖେଇ ଡରେଇବୁ ? ତାଙ୍କ ହାତରେ ବି ସେଇ

ହୁଡଆର । ରାତିବେଳେ ତୁମେ ଛକ ଛକ ମାଡ଼ିବସିବ, ଦିନବେଳେ ବଣ ଝଡ଼ାଡ଼ରେ ଥାଇ ଅନ୍ୟଲୋକ ତମକୁ ତୀର ମାରିବେ । ଲୋକେ ତମକୁ ଭଲ ପାଉ-ଥାନ୍ତେ, ଭିନେ କଥା, ତୁମ ଦେହରେ ମାଛି ବସେଇ ଦେଉନଥାନ୍ତେ । ଲୋକେ ଯାହାଙ୍କୁ ଚଡ଼କିନ୍ତ କେତେଦିନ ଯାକେ ସେମାନେ ଡରିହରି କରେଇ ନିଶ୍ଚିନ୍ତ ହୋଇ ବସିବେ ? କଏ ଦଣ୍ଡେ, କଏ ମାସେ, କଏ ବର୍ଷେ, କଏ ବା କେତେ ବର୍ଷ, ତା' ଉତ୍ତାରୁ ଦିନେ ନା ଦିନେ ସର୍ବନାଶ ହେବେ, କେହି ରକ୍ଷା କରିପାରିବ ନାହିଁ । କେହି ତୁମ ପଟେ ନାହାନ୍ତି ମୁଣ୍ଡାମାଝି, ଆଉ ବାସ୍ତା ହନା, ଏଣିକ ନିଜ ପ୍ରାଣ ବଞ୍ଚେଇବା ବଡ଼ କାମ ।''

ଉକ୍‌ଡ଼ୁକୁଟି ପଗ୍ଭରିଲା, ''ତୁ କ'ଣ କରିବୁ ପାଟ୍‌-ବାରିକା ?''

''ସେଇଟା ତୋ' ସାଙ୍ଗରେ କଥା ହେବ । ସେମାନେ ମୁଣ୍ଡାମାଝି ହେଲେ, ବାରିକ୍ ତାଙ୍କର ରହିବେ । ଏତିକବେଳେ ବେଲ ପଡ଼ୁଛି । ତାଙ୍କ ମନକୁ ସେମାନେ ଆମକୁ ଡାକୁଛନ୍ତି । ତୁମର ତ ସବୁ ଗଲା, ମୁଣ୍ଡାମାଝି ମଣ୍ଡଳ ଭିତରେ ତୁମର ହୋଇ କେହି ଆଉ ରହିଲେ ନାହିଁ । ଏତିକବେଳେ ଆମେ ଯଦି ରହିଯିବୁ, ବାରିକ୍ ହୋଇ, ତୁମର କିଛି କେହି ଅନିଷ୍ଟ କଲେ ଆମେ ନଜା ରଖିଥିବୁଁ, ଆଗରୁ ଖବର ଦେବୁଁ, ସେଠି ତୁମ ପାଇଁ କହିବୁଁ । ଭିନେ ଲୋକ ରହିଲେ ତା' କରିବ ନାହିଁ । ସେଥିପାଇଁ ଭାବୁଥିଲି ଆଗପରି ଆମେମାନେ ବାରିକ୍ କାମରେ ରହିଯିବୁଁ ।''

''ତୁ ହେବୁ ଡାକୁକ ତଳେ ପାଟ୍‌-ବାରିକା ! ତୁ ! ତୁ ହେବୁ !'' ଉକ୍‌ଡ଼ୁକୁଟି ମୁଣ୍ଡରେ ପୁଣି ରାଗ ଚଢ଼ିଗଲା, ସେ କଟମଟ କରି କାନ୍‌କଟାକୁ ଅନାଇଁ ରହିଲା ।

"ନହେଲେ ଆଉ'', କାନ୍‌କଟା କହିଲା, ''ମୋର କ'ଣ ପେଟ ଅପୋଷା ରହିବ ? ତୋ' ପାଖେ ହଳିଆ ରହିଲେ ତୁ ହେଲେ ଖାଇବାକୁ ଦେବୁ । ସେ ହେଲେ ବେପାର କରିବାକୁ ଦେବେ । ତାଙ୍କର ଲୋକ ଅଭାବ ରହିବେ ନାହିଁ, ଯାହାକୁ ମନ ତାକୁ ପାଟ୍‌ବାରିକା କରିବେ । ମାତ୍ର ତାଙ୍କ ମଣ୍ଡଳରେ ତୋର ନିଜର ହୋଇ କେହି ରହିବେ ନାହିଁ ।''

ପୁଣି ଉକ୍‌ଡ଼ୁକୁଟି ବୁଝିଗଲା । କହିଲା, ''ହଉ, ତୁ ପାଟ-ବାରିକ୍ ଥା ତାଙ୍କ ପାଖେ ।''

''ଏକା ମୁଁ ନୁହେଁ, ଆମେ ସମସ୍ତେ ।''

''ହଉ ।''

''ଆମେ କହି ଦେଖିବୁ, ତଥାପି ତମକୁ ବିପଦ ପଡ଼ିଲେ ଆଗରୁ ଖବର ଦେବୁଁ । ତୁମ ପାଖରେ ସେମାନେ ରହିବାକୁ ଦେବେ ନାହିଁ, ଆମୁକୁ ସନ୍ଦେହ

କରିବେ । ଲୁଚି ଲୁଚି ଆମେ କେବେ ଆସୁଥିବୁଁ । ତୋ' ଗାଁରେ ଦି'ଘର ଡମ୍ବ ଛାଡ଼ି-ଦେଇ ଯିବ । ଯାତ୍ରା ଲେଉଟା ପଡ଼ିଲେ ଖବର ଦେବୁଁ ।"

ଡାକୁକ ପାଖେ ପାଟ୍-ବାରିକା ହୋଇରହିଗଲା କାନ୍‌କଟା, ଦାଉଡ଼ା ପାଖେ ଉଜାଡ଼ୁ, ସିପୁଙ୍ଗା ପାଖେ ଜାମ୍‌ଧର୍, ଗାନ୍ଧିପାଖେ ସାବୁ, ଲୁଦୁପାଖେ ରାଚଡ଼, ପୁମ୍ବଙ୍ଗା ପାଖେ ସୋନାଖାଉ, ବୁଚ୍ଛିପାଖେ ଚମ୍ବ୍ରୁ, ରାଓସାଙ୍ଗା ପାଖେ ସାଆଁଲ୍, ଲୁହୁ ପାଖେ ଟିଟି । ଆଠ ମୁଣ୍ଡାମାଝିଙ୍କୁ ଆଠ ବାରିକ, ମଣ୍ଡଳ ସଭରେ ମୁଣ୍ଡାମାଝିମାନେ ଡମ୍ବ ବାରିକମାନଙ୍କୁ ତାକିଦ୍ କରିଦେଲେ,—ପୁରୁଣା ଲୋକ, କାମ ଜାଣିଛନ୍ତି; ତେଣୁ ତାଙ୍କୁ ବାରିକ୍ କାମରେ ରଖାଗଲା; କିନ୍ତୁ ପୁରୁଣା ମୁଣ୍ଡାମାଝିଙ୍କ ସଙ୍ଗେ ମିଶିଲେ କି ଲୋକଙ୍କ ପ୍ରତି ବିଶ୍ୱାସଘାତକତା କଲେ ତାଙ୍କୁ ଶାସ୍ତି ଦେଇ ରାଜ୍ୟରୁ ତଡ଼ିଦିଆଯିବ, ଗୁରୁତର ଅପରାଧ କଲେ ମୁଣ୍ଡ କଟାହେବ । ଡାକୁକ ଡରେଇଦେଲା, "କନ୍ଧମାନଙ୍କ ଉପକାର କର, ସବୁ ଡମ୍ବଙ୍କୁ କହ, ଆମ ଲୋକଙ୍କ ସଙ୍ଗେ ଭାଇବନ୍ଧୁ ପରି ଚଳିବେ, ମନ ଅଛି ତ ରହନ୍ତୁ, କେହି ହରବର କରିବ କି ଦେଖିବ, ଶାସ୍ତିଦେବ, ରାଜ୍ୟରୁ ତଡ଼ିଦେବ ।"

ଡମ୍ବମାନେ ପ୍ରତିଶ୍ରୁତି ଦେଲେ, ନିଷ୍ଠାପରଭାବେ ସେବା ହିଁ କରିବେ, କାହାର କିଛି ଅନିଷ୍ଟ କରିନାହାନ୍ତି, କରିବେ ବି ନାହିଁ ।

ରାପ୍‌ଟାବାଲ ପାଖ ଜୁବାଖାଲ୍‌ରେ ତିନିସାହି ହୋଇ ତିରିଶ ଘର ଡମ୍ବ ଘର ଚଳେ । ଆଠଜଣ ମୁଣ୍ଡାମାଝିଙ୍କ ବାରିକ୍ ବି ସେଠି ଏକାଠି ରହିଲେ, କିନ୍ତୁ ପ୍ରତି ମୁଣ୍ଡାମାଝି ଗାଁରେ ଜଣେ ଦି'ଜଣ ବା ତିନିଜଣ ଡମ୍ବ ଘର କଲେ, ଅନେକ ଗାଁରେ ଡମ୍ବମାନେ ବାରିକ୍ ହୋଇ ରହିଗଲେ । ଘରତୋଳା ଧୀରେ ସୁସ୍ଥେ ଚାଲିଥାଏ । କାନ୍ଥ ଭିତରେ ଚୋର ଠଣାମାନ, ଚଟାଣ ତଳେ ଗୁପ୍ତ ଘର, ପ୍ରତି ବଖରା ଭିତରେ ଅନ୍ଧାରି ଗୁପ୍ତଗୁମ୍ଫା, ଛାତତଳେ ଆଟୁ, ଜିନିଷ ଲୁଚେଇ ରଖିବାକୁ, ଲୁଚି ଲୁଚି ଘରୁ ପଳେଇବାକୁ । ନାନା ଉଦ୍ଦେଶ୍ୟ ପାଇଁ ନାନା ଉପାୟ, ପଦାକୁ ଦେଖିବାକୁ ସାଧାରଣ ଘର । ଘର ଭିତର ଅଗଣା ଚାରିକରେ ପାଚିରି ଥାଏ, ତା' ଚାରିକରେ ପଛଆଡ଼େ ବାରିଥାଏ, କନ୍ଧ ଗାଁ ପରି ଗାଁ ଚାରିକରେ ବାଡ଼ ଥାଏ, ଯୋଡ଼ିଏ ବାଟ; କିନ୍ତୁ ଉଚ୍ଚ ବାଡ଼ ।

ଶୀତଦିନେ ମୁଣ୍ଡାମାଝିମାନଙ୍କ ବାରିକ୍‌ମାନେ ଓ ଅନ୍ୟ ବାଇଶ ଘର ସେଠିକି ଉଠିଗଲେ । ଗାଁ ମୁଣ୍ଡିଆଳ ହେଲା କାନ୍‌କଟା, ବାରିକ୍‌ମାନେ ସହିକେ ସେ ଗାଁର ମୁଖିଆ

ଲୋକ । ନିଜ ଗାଁ, ନିଜ ଚଳଣି, ଏକାଠି ବସାଉଠା, ସବୁଥିରେ ପରିଚ୍ଛରେ ଘିଟିଗୋ ପରାମର୍ଶ ଓ ସହଯୋଗ ସେମାନଙ୍କୁ ନିରାପଦ ଲାଗିଲା ।

ସେମାନେ ବି କନ୍ଧପରି ଗୋରୁ ମଇଁଷି ଖାଆନ୍ତି, ଆଗରୁ ଖାଉଥିଲେ । ମଦ ପିଅନ୍ତି । କନ୍ଧଙ୍କ ଦେଖାଦେଖି ନାନା ପୂଜା ଅନୁଷ୍ଠାନ ସେମାନେ ଆଦରିନେଲେ, ଉତ୍ସବ କଲେ, ଠାକୁର ବୋଲି ଖୁଣ୍ଟ ପୋତିଲେ, ପଥର ଥୋଇଲେ । 'ଧରଣୀ' ନକହି 'ଠାକୁରାଣୀ' କହିଲେ, 'ଝାକର' ନକହି 'ଗ୍ରାମଦେବତା' କହିଲେ । ଆଗପରି ପ୍ରଧାନ ହେଲା ସେମାନଙ୍କର 'ଲକ୍ଷ୍ମୀ ପୂଜା', ପ୍ରତି ଗୁରୁବାର ଦିନ, ଆଉ ଆଗରୁ ମାନୁଥିବା ହିନ୍ଦୁ ଉତ୍ସବ କେତୋଟି । କିନ୍ତୁ କନ୍ଧଙ୍କର ଧାଂଗ୍ଡ଼ୀନାଚ ପରି ତାଙ୍କ ଝିଅମାନେ ବି ରାତିରେ ଏକାଠି ହୋଇ ନାଚିଲେ, ପୁଅମାନେ ବାଜା ବଜେଇଲେ, ନାଚିଲେ, ତାଙ୍କ ସଂସ୍କୃତିରେ ମିଶିଗଲା ଆଦିବାସୀ ସଂସ୍କୃତିରୁ କେତେ ଅଂଶ ।

ଗାଁରେ ଚାଲିଲା ସେମାନଙ୍କର ନାନା ବୃତ୍ତି, ଲୁଗା ବୁଣା, ଟୋକେଇ ବୁଣା, ମସିଣା ବୁଣା, ମୁଆଁ ତିଆରି, ଖଇ ଭଜା, ହାଣ୍ଡି କୁଣ୍ଡେଇ ଗଢ଼ା, କାଠ ଜିନିଷ ତିଆରି, ମଦ ରନ୍ଧା । ଜିନିଷ ଧେଇ ଡମ୍ବମାନେ ଗାଁ ଗାଁ ବୁଲନ୍ତି, ହାଟକୁ ବି ଯା'ନ୍ତି ବିକନ୍ତି, ତା ବଦଳରେ ଆଣନ୍ତି ଜିନିଷ । ବ୍ୟବସାୟ ବି ଚାଲିଲା, ସହରରୁ ନାନା ଜିନିଷ କିଣିଆଣି କନ୍ଧଙ୍କୁ ଦେଇ ତା ବଦଳରେ ଫସଲ ନେବା, କେବେ କେବେ ଆଗଭଳି ବନ୍ଧାରେ ଡୋଟାବାଡ଼ି ରଖିବା ।

କିନ୍ତୁ ମୁଣ୍ଡାମାନଙ୍କ ବଦଳି ହେବା ପରେ ସେମାନଙ୍କ ମନରେ ଆଶଙ୍କା ଆସିଥିଲା । ସେମାନେ ବୁଝିପାରିଥିଲେ, ସମସ୍ତ ଦରାପ, ଆଖିବୁଜି ସବୁ ଶୋଷିନେଲେ କନ୍ଧ ରାଗିବେ, ତା'ପରେ କିଏ ଜାଣିଛି ? ହୁଏତ ମୂଳରୁ ସବୁ ଯିବ, ତଡ଼ିଦେବେ, ପ୍ରାଣରୁ ମାରିଦେଇପାରନ୍ତି । ତେଣୁ, ନିଜ ଭିତରେ ପରାମର୍ଶ କରି ବିବେଚନା ବଦଳର ଧାରା ଠିକ୍ କରନ୍ତି—ଆଗପରି ଉଚିତ ମୂଲ୍ୟର କୋଡ଼ିଏ ଗୁଣ ତିରିଶ ଗୁଣ ନେବେନାହିଁ, ଦଶଗୁଣ ପନ୍ଦରଗୁଣ ନେବେ, ଅବସ୍ଥା ଦେଖି ନେବେ । ଉଦ୍ଦେଶ୍ୟ ସ୍ପଷ୍ଟ ଥିବ—କନ୍ଧ ଦେଉଥିବ, ଅଥଚ ନିଜେ ଉପାସରେ ରହିବ ନାହିଁ, ଖଟି ଖାଇବାକୁ କନ୍ଧର ଅଭାବ ରହିବ ନାହିଁ, ଯାହା ସେ ପାଇତି ରଖନ୍ତା, ସେତିକ ଡମ୍ବ ନେଇଯିବ । କିନ୍ତୁ ଡମ୍ବକୁ କନ୍ଧ ଖୁସି ରଖିଥିବ, ସବୁବେଳେ କହିବ ଭାବୁ—ଏଇ ମୋର ପରମ ଉପକାରୀ ବନ୍ଧୁ, ସବୁ କଥାକୁ ମୋ ପାଖରେ ଠିଆ ।

ବଡ଼ କଠିନ କାମ ସେ, ଖାଲି ବଞ୍ଚେଇ ରଖି ନୁହେଁ, ଜିଅନ୍ତା ରଖି, ହସେଇ ହସେଇ, ଭୁଲେଇ, ଫୁସୁଲେଇ, ଦେହରୁ ମାଂସ ଓଟାରି ନେଲାପରି । ସେଥିପାଇଁ ଲାଗୁଥିବ ବୁଦ୍ଧି, ଗୁଣ, ଅଭିନୟ, କେତେକେତେ ଦକ୍ଷତା । "ଏତିକ ଶରଧାରେ

ଦେଲି, ମାଶଣାରେ ଦେଲି," "ଏତେ ଋଣ ବୋଝ, ତତେ କଷ୍ଟ ହେବ, ଗୁଣ୍ଡ଼ଦେଲ, ଚୋର ହେଲେ ଭୁ ଦେବୁ ନାହିଁକ ?" "କେଉଥା, ପଛେ ଶୁଝିବୁ, ଯେତେବେଳେ ହେଉଥିବ ସେତେବେଳେ ଶୁଝୁଥିବୁ", କେତେ ପ୍ରକାରେ ତା ଗତ । କନ୍ତୁ କନ୍ଧ କେବେ ବିରକ୍ତ ନହେଉ ।

ଏକାଠି ହେଲେ ସେମାନେ ନଜ ନିଜ ଅଭିଜ୍ଞତା କହନ୍ତି, ଅଡ଼ୁଆ ଥିଲେ ପରାମର୍ଶ ଦଆନଆ ହୁଅନ୍ତି । ବାଗ ଜାଣିଥିବା ଲୋକେ ନଜାଣିଥିବା ଲୋକଙ୍କୁ ତାଲିମ୍ ଦଅନ୍ତି । ମାଇପେ ମିଶିସେ ସମସ୍ତେ ତାଲିମ୍ ପାଆନ୍ତି ।

ମୁଣ୍ଡାମାଝିମାନଙ୍କ ତକରା ପାଇ ବାଳକମାନେ ତରତର ହୋଇ ଗୁଲିଯାଆନ୍ତି, ଯାହାକୁ କହିଲେ ଡାକଆଣନ୍ତି, ଯାହା ବରଗିଲେ କରଦଅନ୍ତି, ଅଳ୍ପଦନରେ ସେମାନେ ବିଶ୍ୱାସୀ ବୋଲି ସେନା ହେଲେ, ସତେ ଯେପରି କେଉଁ କାଳର ଚାକର, କେବେ ତାଙ୍କ ଆନୁଗତ୍ୟରେ ଝୁଟି ମିଳେନାହିଁ, ଜଗି ରଖି କଥା କହନ୍ତି, ଉପରେ ପଡ଼ି ଉପଦେଶ ଦଅନ୍ତି ନାହିଁ ।

ଅନ୍ୟ ଡମ୍ବଙ୍କ ଉପରେ ସେହମାନେ ଦୃଷ୍ଟି ରଖିଥାନ୍ତି, କେହ ଯେପରି ଏଭଳି କଛୁ ନକରୁ ଯହିଁରେ କେ କନ୍ଧତ ହେବ ଓ ତାପାଇଁ ଡମ୍ବମାନଙ୍କ ବରୁଦ୍ଧରେ କନ୍ଧମାନେ କହିବେ । "କେହ ସେମିତ ଉତ୍ପାତ କଲେ ଆମେ ନେକେ ତାକୁ ଶାସ୍ତି ଦେଇ ତଡ଼ିଦେବୁ," ସେମାନେ ତାକତ୍ କରଥାନ୍ତି, "ଏ ରାଜ୍ୟରେ ସେ ଆଉ ମୁହଁ ଦେଖାଇ ପାରିବ ନାହିଁ ।"

କୁଆଡ଼ୁ କ'ଣ ହେଲା କନ୍ଧମାନେ ବୁଝିପାରଲେ ନାହିଁ, ଏତକ ବୁଝିଲେ ଯେ ଡମ୍ବଠୁ କଣିବା ଜନଷର ଦାମ୍ ଆଗଠୁଁ କମିଯାଇଛି, ଡମ୍ବ ହୋଇଯାଇଛି ଆଗଠୁଁ ବଳି ସ୍ନେହୀ ଓ ଆପଣାର ।

ପୁରୁଣା ମୁଣ୍ଡାମାଝିଙ୍କ ପାଇଁ କେହ ଝୋପାଏ ଲୁହ ଢାଳିଲେ ନାହିଁ । ସେମାନେ ମୁଣ୍ଡାମାଝି ପଦରୁ ଗଲାପରେ ତାଙ୍କ କଥା ଆଉ ପଡ଼େନାହିଁ । ତାଙ୍କ ପ୍ରତ ଅହନ୍ତା ବ କାହାର ନାହିଁ । ସେମାନେ ନଜ ନଜ ଗାଁରେ ଥାନ୍ତି, ଛକ ରହଥାନ୍ତି, କାଳେ କେଉଁ ବିପଦ ପଡ଼ିବ, ଆଉ କେହ ସେପରି ବି ଭାବେ ନାହିଁ ।

ବଣ ପର୍ବତ ରାଜ୍ୟରେ ଆଗେ ଯେମିତ ଚାଲୁଥିଲା, ଏବେ ବି ସେମିତ ଚାଲେ, ଲୋକେ ନିଜ ଧନ୍ଦା କରନ୍ତି, ଗାଁ କଥା ଗାଁ ସଭା କରେ, କଳିଗୋଳ ଲାଗେ ନାହିଁ, ଦୁଇ ଗାଁ ମଝିରେ କି ପାଖରେ କେଉଁଠି ବଣ ହାଣିଲେ ଗୋଟିଏ ଗାଁ ଆପତ୍ତି କଲେ କାମ ଅଟକେ, ଆଉ ଦି ତିନି ଖଣ୍ଡ ଗାଁ ପଞ୍ଚାଏତ୍‌କୁ ଡାକି ପଞ୍ଚାଏତ୍ ମଝି କରି ତୁଟାଇ ଦିଆଯାଏ । କନ୍ଧମାନଙ୍କର ବୃତ୍ତିରେ କିଛି ପରିବର୍ତ୍ତନ ନାହିଁ, ଶିକାର, ଚାଷ, ବଣରୁ କିଛି ଖାଦ୍ୟ ସଂଗ୍ରହ, ସାଧାରଣ ଘରକରଣାରେ ଦରକାରୀ ହେଲାଭଳି କିଛି କାମ । ଆଗପରି ବଣ ହଣା, ତୋଟା ଲଗାଇବା, ଫସଲ ଲଗାଇବା, ଜମି ହୁପାଜିତ୍ କାମ, ନୂଆକାମ କିଛି ନାହିଁ । ଲୋକେ ଗାଁ ଗାଁକେ ଭେଦାକରି ପ୍ରତି ଗାଁରୁ ନିଜ ଖୁସିରେ ମୁଣ୍ଡାମାଝି ମଣ୍ଡଳର କୋଠପାଇଁ କିଛି କିଛି ଫସଲ ପଠାଇଦିଅନ୍ତି, ଖଜଣା ନାହିଁ, ପାଲୁ ନାହିଁ, କୌଣସି ପ୍ରକାର ମାଗଣ ନାହିଁ, ସେଥିପାଇଁ ସେମାନେ ଖୁସି । ମୁଣ୍ଡାମାଝିମାନେ ମଝିରେ ମଝିରେ ଗାଁ ଗାଁ ବୁଲନ୍ତି, ଲୋକଙ୍କ ସଙ୍ଗେ ସୁଖ-ଦୁଃଖ ହୁଅନ୍ତି, ମୁଣ୍ଡାମାଝି-ମଣ୍ଡଳ ବସେ ମାସକୁ ଥରେ, ପାରିଲେ ଦୂରରୁ ଦୂରରୁ ଗାଁ ମୁଣ୍ଡିଆଳମାନେ ଆସନ୍ତି, ଦୁଃଖ-ସୁଖ ପଡ଼େ, ନୂଆକଥା କିଛି ନାହିଁ । ବାରିକ୍‌ମାନଙ୍କ ଛଡ଼ା ଆଉ କେହି କର୍ମଚାରୀ ନାହାନ୍ତି, ଥାଟପଟ ଦଳପତି ବି ନାହାନ୍ତି, ଥାଟ ବି ନାହିଁ ।

ପଦାରୁ ଦିଶେ ମାଳମାଳ ଡେଉଡେଉକା ପର୍ବତମାନ, ଅଗନାଗି ବନସ୍ତ, ଭିତରେ ଥାଏ ଆପଣା ଆପେ ନିୟନ୍ତ୍ରିତ ମଣିଷ ସମାଜ, ନିଜ ସୁଖେ-ଦୁଃଖେ ସେ ବଞ୍ଚିବାକୁ ଚାହେଁ । ବଞ୍ଚିଥାଏ । ପଦାର ଦୁନିଆଁ ସଙ୍ଗେ ଯୋଗସୂତ୍ର ରକ୍ଷିଥାନ୍ତି ଡମ୍ବ ବେପାରୀ, ସେମାନେ ଆଗପରି ପଦାରୁ ନାନା ଜିନିଷ କିଣି ଆଣି ବିକନ୍ତି, ଘର ଘର ଜିନିଷ ବଣ ରାଜ୍ୟ ଭିତରୁ ପଦାକୁ ବୁହାଇ ନେଇ ପଦାରେ ସାହୁକାରମାନଙ୍କୁ ବିକନ୍ତି, ସୁନା କିଣି ଲୁଚାଇ ରଖନ୍ତି, ନିଜ ଚଳଣି ସାଦାସିଧା, କେହି ଯେପରି ନଭାବୁ ସେମାନେ ଧନୀ ବୋଲି ।

